ବୀ: ବ୍ରଣୀଚଣୀମାଳା

# ଭକ୍ତକବି ମଧୁସୂଦନ

ଲେଖକ—
ଶ୍ରୀ କାଳିନ୍ଦୀଚରଣ ପାଣିଗ୍ରାହୀ ବି. ଏ.

ପ୍ରକାଶକ—
ସମ୍ପାଦକ, ଓଡ଼ିଆ-ସାହିତ୍ୟପ୍ରଚାର ସଂଘ,
କଟକ

ବୀରଜୀବନୀମାଳା

# ଭକ୍ତକବି ମଧୁସୂଦନ

ଲେଖକ—
ଶ୍ରୀ କାଳିନ୍ଦୀଚରଣ ପାଣିଗ୍ରାହୀ ବି, ଏ,

ପ୍ରକାଶକ—
ସମ୍ପାଦକ, ଓଡ଼ିଆ-ସାହିତ୍ୟପ୍ରଚାର ସଂଘ,
କଟକ

...ଘ କର୍ତ୍ତୃକ ପ୍ରକାଶିତ

...ବଳୀ ।

| | | |
|---|---|---|
| | | ଟ ୦ ।/ |
| | ...ଶୀଚେନ୍ଦ୍ର | ଟ ୦ ୷/ |
| । | ମାର୍ଟିନ୍ ଲୁଥର | ଟ ୦ ।/୭ |
| ୪ । | ବୁକାର ୱାଶିଂଟନ | ଟ ୦ ।୵ |
| ୫ । | ସ୍ୱାମୀ ବିବେକାନନ୍ଦ | ଟ ୦ । |
| ୬ । | ଫକୀରମୋହନ ସେନାପତି | ଟ ୦ ୳୵ |
| ୭ । | କୃଷିତତ୍ତ୍ୱ | ଟ ୧୳ |
| ୮ । | ପଦ୍ମପାଖୁଡ଼ା | ଟ ୦ ୳୵ |
| ୯ । | ପ୍ରବନ୍ଧ ପ୍ରକାଶ | ଟ ୦ ୳୵ |
| ୧୦ । | ଦୟାନନ୍ଦ | ଟ ୦ ୳ |
| ୧୧ । | ରାମାୟଣ କାହାଣୀ | ଟ ୦ ।୵ |
| ୧୨ । | ସୀତାବନବାସ | ଟ ୦ ୳ |
| ୧୩ । | ମହମ୍ମଦ | ଟ ୦ । |
| ୧୪ । | ମହାରାଜା ଶ୍ରୀରାମଚନ୍ଦ୍ର (ଦ୍ୱିତୀୟ ସଂସ୍କରଣ) | ଟ ୦ ୳ |
| ୧୫ । | ରବିନ୍‌ସନ କ୍ରୁଶୋ | ଟ ୦ । |

*First Edition—1000 copies.*

# ଭକ୍ତକବି ମଧୁସୂଦନ ।



ଲେଖକ—
ଶ୍ରୀ କାଳିନ୍ଦୀଚରଣ ପାଣିଗ୍ରାହୀ ବି. ଏ.

ପ୍ରକାଶକ—
ସମ୍ପାଦକ, ଓଡ଼ିଆ ସାହିତ୍ୟ ପ୍ରଚାର ସଂଘ,
କଟକ ।

ପ୍ରଥମ ସଂସ୍କରଣ

**Printed by V. Kar.**
THE UTKAL SAHITYA PRESS,
**Cuttack.**
**1928.**

ମୂଲ୍ୟ ୫ ୦ ୯

ଭବିଷ୍ୟତ୍‌ର ଉତ୍କଳର କୁଞ୍ଜେ କୁଞ୍ଜେ ଯେଉଁ ଭକ୍ତ ଓ କବିମାନଙ୍କର ଆବିର୍ଭାବରେ ମଧୁର କୁହୁରବ ମୁଖରିତ ହୋଇ ଉଠିବ, ସେହିମାନଙ୍କର ପବିତ୍ର କରପଲ୍ଲବରେ ଏହି କ୍ଷୁଦ୍ର ଲେଖକର ଦୁର୍ବଳ ଚେଷ୍ଟା ଶ୍ରଦ୍ଧା ଓ ପ୍ରୀତି ସହକାରେ ଅର୍ପିତ ହେଲା ।

# ନିବେଦନ ।

ଲେଖକର ଶ୍ରଦ୍ଧେୟ ବନ୍ଧୁ ଶ୍ରୀମାନ୍ ଅଲେଖପ୍ରସାଦ ଦାସଙ୍କ ଦ୍ୱାରା ଭକ୍ତକବିଙ୍କ ଜୀବନଚରିତ ପ୍ରଥମେ ଲିଖିତ ହୋଇଥିଲା । ସେହି ଲେଖାର ଅବଲମ୍ବନରେ ଓ ୰ ପଣ୍ଡିତ ମୃତ୍ୟୁଞ୍ଜୟ ରଥ କାବ୍ୟତୀର୍ଥଙ୍କର "ବ୍ରହ୍ମଜ୍ଞ ମଧୁସୂଦନ" ଓ "ଉତ୍କଳ ସାହିତ୍ୟ"ରେ ପ୍ରକାଶିତ ଅନ୍ୟାନ୍ୟ ଲେଖକମାନଙ୍କଦ୍ୱାରା କବିଙ୍କର ଜୀବନ ସମ୍ବନ୍ଧରେ ଲିଖିତ ପ୍ରବନ୍ଧାଦିର ଅନୁସରଣରେ ଭକ୍ତକବିଙ୍କର ଚରିତ ଭାଗ ଲିଖିତ ହୋଇଅଛି । ଉକ୍ତ ଲେଖକମାନଙ୍କ ନିକଟରେ ଓ ପୁସ୍ତକ ପ୍ରଣୟନରେ ପ୍ରବର୍ତ୍ତକ ଓଡ଼ିଆ ସାହିତ୍ୟପ୍ରଚାର-ସଙ୍ଘର ସମ୍ପାଦକ ସମ୍ମାନାସ୍ପଦ ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ପଟ୍ଟନାୟକ ଏମ୍. ଏ. ଭି. ଙ୍କ ନିକଟରେ ରଚୟିତା ଆନ୍ତରିକ କୃତଜ୍ଞତା ପ୍ରକାଶ କରୁଅଛି ।

ପୁରୀ
୨୮।୧୨।୨୭ } କାଳନ୍ଦୀ

# ସୂଚୀ ।


| ପରିଚ୍ଛେଦ | | ବିଷୟ | ପୃଷ୍ଠା |
|---|---|---|---|
| ୧ମ | ,, | ଜନ୍ମ | ୧ |
| ୨ୟ | ,, | ବିଦ୍ୟାରମ୍ଭ—ବିବାହ—ନଅଙ୍କ | ୮ |
| ୩ୟ | ,, | ରାଧାନାଥ ଓ ମଧୁସୂଦନ—ମଣିକାଞ୍ଚନ—ପଣ୍ଡିତ ହରିହର ଦାସ | ୧୨ |
| ୪ର୍ଥ | ,, | ଉଚ୍ଚଶିକ୍ଷା—କଲେଜରେ ଅଧ୍ୟୟନ ... | ୨୪ |
| ୫ମ | ,, | ବ୍ରହ୍ମୋପାସନା ... ... | ୨୯ |
| ୬ଷ୍ଠ | ,, | ମଧୁସୂଦନ ଓ ପ୍ୟାରୀମୋହନ— ପି. ଏମ୍. ଏକାଡେମି | ୩୮ |
| ୭ମ | ,, | ଚାକିରି ଗ୍ରହଣ—ପୁରୀରେ ଶିକ୍ଷକତା—ଯାଜପୁରରେ ଶିକ୍ଷକତା—ବାଲେଶ୍ୱରରେ ଶିକ୍ଷକତା—କଲେଜିଏଟ୍ ସ୍କୁଲରେ ନିଯୁକ୍ତି | ୫୦ |
| ୮ମ | ,, | ଶିକ୍ଷୋନ୍ନତି—କଟକ ଜିଲ୍ଲାରେ ଡେପୁଟି ଇନ୍‌ସପେକ୍ଟର— କଲେଜିଏଟ୍ ସ୍କୁଲରେ ହେଡମାଷ୍ଟର—ନର୍ମାଲ ଟ୍ରେନିଂ ସ୍କୁଲରେ ଶିକ୍ଷକତା ... ... | ୫୨ |
| ୯ମ | ,, | ଛାତ୍ରମାନଙ୍କ ସହିତ ମିଳାମିଶା ଓ ବିଭିନ୍ନ ଉଦ୍ୟମରେ ଯୋଗ ଦାନ ... | ୬୨ |
| ୧୦ମ | ,, | ସ୍କୁଲ ଇନ୍‌ସ୍ପେକ୍ଟର ... ... | ୬୮ |
| ୧୧ଶ | ,, | ଦେଶ ବିଦେଶରେ ସମ୍ମାନ ... | ୭୨ |
| ୧୨ଶ | ,, | ପାରିବାରିକ ଜୀବନ—ଦୈନନ୍ଦିନ କର୍ମ | ୭୪ |

| ପରିଚ୍ଛେଦ | | ବିଷୟ | ପୃଷ୍ଠା |
|---|---|---|---|
| ୧୩ଶ | ,, | ମାତାପିତାଙ୍କ ପ୍ରତି ଭକ୍ତି ... | ୮୨ |
| ୧୪ଶ | ,, | କନିଷ୍ଠମାନଙ୍କ ପ୍ରତି ସ୍ନେହ—ଭ୍ରାତୃସ୍ନେହ, ଅପତ୍ୟସ୍ନେହ ... ... | ୮୮ |
| ୧୫ଶ | ,, | ଭୃତ୍ୟ ଓ ଅପର ବ୍ୟକ୍ତିମାନଙ୍କ ପ୍ରତି ବ୍ୟବହାର—ଅତିଥିସେବା ... | ୯୩ |
| ୧୬ଶ | ,, | ସମାଜ, ଧର୍ମ ଓ ଶିକ୍ଷା ସଂସ୍କାର ... | ୯୮ |
| ୧୭ଶ | ,, | ଅନ୍ତିମ ଶଯ୍ୟା ... ... | ୧୦୫ |
| ୧୮ଶ | ,, | ଗ୍ରନ୍ଥପରିଚୟ ... ... | ୧୧୩ |
| ୧୯ଶ | ,, | ଶିଶୁଗୀତିକା ... ... | ୧୧୮ |
| ୨୦ଶ | ,, | ବର୍ଣ୍ଣନାତ୍ମକ କବିତା ... | ୧୨୭ |
| ୨୧ଶ | ,, | ବସନ୍ତଗାଥା ... ... | ୧୩୪ |
| ୨୨ଶ | ,, | ଉତ୍କଳ ଗାଥା ... ... | ୧୪୨ |
| ୨୩ଶ | ,, | ଭାବନାତ୍ମକ ଓ ଧର୍ମବିଷୟକ କବିତା—କୁସୁମାଞ୍ଜଳି ... ... | ୧୪୭ |
| ୨୪ଶ | ,, | ଶ୍ରେଷ୍ଠତମ ସୃଷ୍ଟି ... ... | ୧୫୫ |
| ୨୫ଶ | ,, | ଧର୍ମ ଓ ନୀତିବିଷୟକ କବିତା ... | ୧୬୫ |
| ୨୬ଶ | ,, | ସଙ୍ଗୀତମାଳା ଓ ଅନ୍ୟାନ୍ୟ କବିତା | ୧୭୧ |
| ୨୭ଶ | ,, | ଉତ୍କଳରେ ମଧୁସୂଦନଙ୍କର ସ୍ଥାନ ... | ୧୭୭ |
| | | ପରିଶିଷ୍ଟ ... | ୧୮୩ |

# ଉତ୍କଳକବି ମଧୁସୂଦନ ।

## ପ୍ରଥମ ପରିଚ୍ଛେଦ ।

### ଜନ୍ମ ।

ଶୀତକ୍ଳିଷ୍ଟ, ଜଡ଼ୀଭୂତ ଧରଣୀ ଯେଉଁ ଦିନ ସଞ୍ଜୀବିତ ହୋଇ ଉଠେ, ଜରାଜୀର୍ଣ୍ଣ ତରୁଲତା ଗୁଳ୍ମରାଜି ଯେଉଁ ଦିନ ନୂତନ ଯୌବନମନ୍ତ୍ରରେ ଦୀକ୍ଷିତ ହୋଇ ଉତ୍‌ଫୁଲ୍ଲ ହୋଇ ଉଠେ, ସମଗ୍ର ବିଶ୍ୱପ୍ରକୃତିର ଅବସାଦ ଦୂରୀଭୂତ ହୋଇ ନବ ଜୀବନର ସଞ୍ଚାର ହୁଏ, ସେହି ଦିନଟିକୁ ଭାରତର କବିମାନେ ଶ୍ରୀପଞ୍ଚମୀ ନାମ ଦେଇଅଛନ୍ତି । ଭାରତର ଋଷିମାନେ ସେହି ଦିନଟିକୁ ବେଦଜନନୀ କାବ୍ୟରୂପା ବାଣୀଙ୍କର ଜନ୍ମତିଥିରୂପେ ନିର୍ଦ୍ଦେଶ କରିଅଛନ୍ତି । ସେହି ଦିନ ଉତ୍କଳର ପ୍ରତିଭାବ ମଧୁସୂଦନ ସର୍ବପ୍ରଥମେ ଏ ଧରଣୀକୁ ସ୍ପର୍ଶ କରିଥିଲେ । ମଧୁସୂଦନ ରାଜା, ଜମିଦାର ଗୃହରେ ଜାତ ହେବାର ସୌଭାଗ୍ୟ ଲାଭ କରି ନ ଥିଲେ । ସେଥିଲାଗି ତାଙ୍କର ଜନ୍ମଦିବସରେ ପିତା ମାତା ଆତ୍ମୀୟମାନଙ୍କ ବ୍ୟତୀତ ଅନ୍ୟ କେହି ଆନନ୍ଦ ଉତ୍ସବ କରି ନ ଥିଲେ । ତଥାପି ସମଗ୍ର ବିଶ୍ୱର ଆନନ୍ଦରେ ଯୋଗ ଦେବାପାଇଁ ଯେ ତାଙ୍କର ଆବିର୍ଭାବ ହୋଇଥିଲା, ଏହା ତାଙ୍କର ଜନ୍ମତିଥିରେ ଯେପରି ସୂଚିତ ହେଲା, ପରବର୍ତ୍ତୀ ଜୀବନରେ ମଧ୍ୟ ସେହିପରି ପ୍ରମାଣିତ ହୋଇଅଛି ।

"ମଧୁ-ଜନ୍ମ-ତିଥି ମଧୁମୟୀ ଶ୍ରୀପଞ୍ଚମୀ,
ଯାର ଆଗମନେ ଜାଗେ ଧରଣୀ ଉଲ୍ଲାସେ,
ଶୀତ ଦୂର୍ଭିକ୍ଷ ବିନାଶଇ ବିଶ୍ୱପ୍ରାଣ ରମି,
ବହଇ ମଳୟ, ଗାଏ କୋକିଳ ଉଲ୍ଲାସେ ।"

ଉତ୍କଳର ସାହିତ୍ୟକୁଞ୍ଜରେ ଏହି ଦିନ ଯଥାର୍ଥରେ ବସନ୍ତର ଆବିର୍ଭାବ ହେଲା । ଅବଶ୍ୟ ମଧୁସୂଦନଙ୍କ ପିକକଣ୍ଠରେ ଏହା ଧ୍ୱନି ମୁଖରିତ ହୋଇ ଉଠିବ ବୋଲି ଜନ୍ମତିଥିରୁ କାହାରି ଗୋଚର ନ ଥିଲା ।

ମଧୁସୂଦନ ମରହଟ୍ଟାବଂଶସମ୍ଭୂତ । ମରହଟ୍ଟାମାନେ ଇଂରେଜ ରାଜତ୍ୱ ପୂର୍ବରୁ ବଙ୍ଗ ଉତ୍କଳ ଜୟ କରି ଲୋକମାନଙ୍କ ଉପରେ ନାନା ଅତ୍ୟାଚାର କରୁଥିଲେ ବୋଲି ଇତିହାସରେ ଉଲ୍ଲେଖ ଅଛି । ଏବେ ମଧ୍ୟ ମାତାମାନେ ଶିଶୁକୁ ଭୁଲାଇବା ପାଇଁ ବର୍ଗୀ ଆସିବାର ଭୟ ଦେଖାଇ-ଥାନ୍ତି । ମରହଟ୍ଟାମାନେ ଉତ୍କଳ ଜୟ କରି ଶାସକର ଆସନରେ ଆସୀନ ହୋଇଥିଲେ । ପରେ ସେମାନଙ୍କ ଶାସନ କାଳର ଅବସାନ ହେବାରୁ ଶାସକର ଆସନରୁ ଅବତୀର୍ଣ୍ଣ ହୋଇ ସେମାନଙ୍କୁ ଉତ୍କଳବାସିଙ୍କ ସହିତ ବନ୍ଧୁଭାବରେ ବାସ କରିବାକୁ ହେଲା । ସେମାନଙ୍କ ମଧ୍ୟରୁ କେତେକ ପରିବାର ସ୍ୱଦେଶକୁ ପ୍ରସ୍ଥାନ କଲେ, ଆଉ କେତେକ ଏହି ଦେଶରେ ବସତି ସ୍ଥାପନ କରି କାଳକ୍ରମେ ଏଠାର ଭାଷା ଓ ରୀତିନୀତିକୁ ନିଜର କରି ନେଲେ । ଶକ, ହୁନ୍, ଗ୍ରୀକ୍, ମୁସଲମାନ ପ୍ରଭୃତି ଏହିପରି ଅନେକ ଭାରତ ଜୟ କରିବାକୁ ଆସି ତତ୍ପରେ ଭାରତବାସି-ମାନଙ୍କ ସହିତ ସଖ୍ୟ ଭାବରେ ବାସ କରି ଭାରତକୁ ନିଜର ଦେଶ କରି ନେଇଅଛନ୍ତି । ଭାରତବାସିମାନଙ୍କ ସହିତ ସେମାନଙ୍କ ରକ୍ତର ସମ୍ମିଶ୍ରଣ ହୋଇ ଯାଇଅଛି । କେହି ବର୍ତ୍ତମାନ ଗର୍ବ କରି କହି ନ ପାରେ ଯେ, ତାର ଧମନୀରେ ଜାତିସ୍ୱ ରକ୍ତ ଅମିଶ୍ର ହୋଇ ବହୁଅଛି । ଆକବରଙ୍କ ରାଜତ୍ୱ କାଳରେ ହିନ୍ଦୁ ମୁସଲମାନ ମଧ୍ୟରେ କେତେକ ବୈବାହିକ ସମ୍ପର୍କ ଚଳିଥିବାର ଇତିହାସ ସାକ୍ଷ୍ୟ ଦିଏ । ଏହିପରି ପ୍ରତ୍ୟକ୍ଷ ଅବା ପରୋକ୍ଷ ଭାବରେ ହିନ୍ଦୁ, ମୁସଲମାନ, ଶକ, ହୁନ୍ ଆଦି କେହି ରକ୍ତର ବିଶୁଦ୍ଧତା ରକ୍ଷା କରି ପାରି ନାହାନ୍ତି । ଏହି ସମସ୍ତ କାରଣରୁ ଉତ୍କଳର ମରହଟ୍ଟାମାନେ ବର୍ତ୍ତମାନ ଓଡ଼ିଆ ହୋଇ ଯାଇଅଛନ୍ତି ।

ବିଶେଷତଃ ମଧୁସୂଦନ ଉତ୍କଳର ଜଣେ ସୁପ୍ରତିଷ୍ଠ କବି ଓ ଲେଖକ ହୋଇ ସେମାନଙ୍କୁ ସମ୍ପୂର୍ଣ୍ଣରୂପେ ଓଡ଼ିଆ କରି ଦେଇ ଯାଇଅଛନ୍ତି ।

ମରହଟ୍ଟାମାନଙ୍କ ମଧ୍ୟରୁ ପ୍ରାୟ ୫୦ ଗୋଟି ପରିବାର ଉତ୍କଳରେ ବସତି ସ୍ଥାପନ କରିଥିଲେ । କଟକର ସନ୍ନିକଟବର୍ତ୍ତୀ ଚଉଦ୍ୱାର ନିକଟରେ ବର୍ଗୀପଡ଼ା ବୋଲି ଗୋଟିଏ ଗ୍ରାମ ଅଛି । ଏହାର ବାସିନ୍ଦାମାନେ ଏହି ମରହଟ୍ଟାମାନଙ୍କର ବଂଶଧର । ବର୍ତ୍ତମାନ ସେମାନଙ୍କର ତରବାରି ଲଙ୍ଗଳରେ ପରିଣତ ହୋଇଅଛି । ଏହି ମରହଟ୍ଟାମାନଙ୍କର ପୂର୍ବପୁରୁଷମାନେ ସମସ୍ତେ ସପରିବାରରେ ଓଡ଼ିଶାରେ ବାସ କରିଥିଲେ ବୋଲି କୌଣସି ସଠିକ ପ୍ରମାଣ ନାହିଁ ଏବଂ ସେହିହେତୁରୁ ସେମାନଙ୍କ ମଧ୍ୟରୁ କେହି କେହି ଉତ୍କଳରେ ବୈବାହିକ ସମ୍ପର୍କ ସ୍ଥାପନ କରିଥିବା ବିଚିତ୍ର ନୁହେ । ସେମାନଙ୍କ ମଧ୍ୟରୁ କେହି ଅକ୍ଷମତାବଶତଃ, କେହି ଅବା ବିଷୟବୃତ୍ତି ଲାଭ ହେତୁରୁ, ଅନ୍ୟ କେହି ଅବା ଉତ୍କଳକୁ ହିନ୍ଦୁର ତୀର୍ଥସ୍ଥାନ ମନେ କରି ଏ ଦେଶରେ ବାସ କରିଥିବା ସମ୍ଭବ ।

ମଧୁସୂଦନଙ୍କ ବଂଶଧରମାନେ ଶେଷୋକ୍ତ କାରଣରୁ ଉତ୍କଳରେ ବାସ କରିଥିବାର ଶୁଣାଯାଏ । ଯେହେତୁ ତାଙ୍କର ପିତାମହ ସଦାଶିବ ରାଓ ବଡ଼ ଧର୍ମପ୍ରାଣ ବ୍ୟକ୍ତି ଥିଲେ ଏବଂ ତାଙ୍କର ମାତାମହ ମଧ୍ୟ ଏହି ଧର୍ମପ୍ରାଣତା ଯୋଗୁଁ ପୁରୁଷୋତ୍ତମ କ୍ଷେତ୍ରରେ ବାସ କରୁଥିଲେ । ଏମାନଙ୍କ ପ୍ରଭାବ ମଧୁସୂଦନଙ୍କ ଜୀବନରେ ସୁସ୍ପଷ୍ଟ ପ୍ରତିଭାତ ହୋଇଅଛି । ମଧୁସୂଦନଙ୍କ ପିତା ଭଗୀରଥ ରାଓ ସଦାଶିବଙ୍କର ଏକମାତ୍ର ସନ୍ତାନ ଥିଲେ । ଅମ୍ବିକା ବାଈଙ୍କ ସହିତ ତାଙ୍କର ଦାମ୍ପତ୍ୟ ଜୀବନ ଅତ୍ୟନ୍ତ ସୁଖମୟ ଥିଲା ।

୧୮୫୩ ଖ୍ରୀଷ୍ଟାବ୍ଦ ଜାନୁଆରୀ ମାସ ୨୧ ତାରିଖ ସୋମବାର ଦିନ ମଧୁସୂଦନ ଇହଧାମରେ ଅବତୀର୍ଣ୍ଣ ହୋଇ ବସନ୍ତର ପ୍ରଥମ ଉଷାଲୋକ ସନ୍ଦର୍ଶନ କରିଥିଲେ । ତାଙ୍କର ଅଢ଼େଇ ବର୍ଷ ବୟଃକ୍ରମ

କାଳରେ ତାଙ୍କର କନିଷ୍ଠ ସହୋଦର ଜଗନ୍ନାଥ ରାଓ ଜନ୍ମ ଲଭିଥିଲେ । ମଧୁସୂଦନଙ୍କୁ ଯେତେବେଳେ ମାତ୍ର ପାଞ୍ଚ ବର୍ଷ ବୟସ, ସେତେବେଳେ ତାଙ୍କର ସ୍ନେହମୟୀ ଜନନୀ ଗୋଟିଏ କନ୍ୟା ପ୍ରସବ କରି ସୂତିକା-ଗୃହରେ ମୃତ୍ୟୁ ଲଭିଲେ । କନ୍ୟାଟି ମଧ ତାଙ୍କର ସହଗାମିନୀ ହେଲା । ମୃତ୍ୟୁଶଯ୍ୟାରେ ଅମ୍ବିକା ବାଈ ପୁତ୍ର ଦୁଇଟିଙ୍କୁ ଚାହିଁ ସାଶ୍ରୁ ଲୋଚନରେ ସ୍ୱାମିଙ୍କୁ କହି ଯାଇଥିଲେ, "ଜଗନ୍ନାଥଟି ବଡ଼ ସାନ, ତାକୁ ମୋ ସାନ ଭାଇଙ୍କି ଦେବ, ମଧୁକୁ ମଧ ସେହିଠାରେ ଛାଡ଼ି ଆସିବ ।"

ଏହି ଘଟଣାର ସୂଚନା ମଧୁସୂଦନଙ୍କର ପରବର୍ତ୍ତୀ କାଳର ଲେଖା "ମୋ ଜନନୀ" କବିତାରେ ଦୃଷ୍ଟ ହୁଏ ।

"ଏ କି ରେ ଦାରୁଣ ଦୃଶ୍ୟ ଦେଖଇ ନୟନ ହେ,
ଜନନୀ ମୋହର
ଧରି ମୋ ପିତାଙ୍କ ପଦ କହନ୍ତି ମା ଗଦଗଦ,
ରଖ ରଖ ଏହି ଧନ ମୋର ହୃଦୟର ହେ,
ମୋର ହୃଦୟର ।
ଏହା କହି ସମର୍ପିଣ ସନ୍ତାନ ଦୁଇଟି ହେ
ପିତାଙ୍କ ଚରଣେ,
ଆହା ପୁଣ୍ୟ ଅଶ୍ରୁଜଳେ ଧୋଇ ବଦନକମଳେ
ମୁଦିଲେ ନୟନ ମାତା ଅନ୍ତିମ ଶୟନେ ହେ,
ଅନ୍ତିମ ଶୟନେ ।"

ମଧୁସୂଦନ ଏହି ଅଳ୍ପ ବୟସରୁ ମଧ ଯେତେବେଳେ ଜାଣି ପାରିଲେ ଯେ ଜୀବନରେ ତାଙ୍କୁ ଆଉ 'ମା' ସମ୍ବୋଧନ କରିବାକୁ ହେବ ନାହିଁ ଏବଂ ଜନନୀର କୋମଳକ୍ରୋଡ଼ରେ ବସିବାର ସ୍ନେହାଧିକାରରୁ ସେ ବଞ୍ଚିତ ହୋଇଅଛନ୍ତି, ସେତେବେଳେ ସେ ଅଧୀର ହୋଇ କ୍ରନ୍ଦନ କରିବାକୁ ଲାଗିଲେ । ଏତେ ଅଳ୍ପ ବୟସରେ ତାଙ୍କୁ-

ମୃତ୍ୟୁଜନିତ ବିଚ୍ଛେଦ ଦୁଃଖ—ସେ ପୁଣି ଜନନୀର ବିଚ୍ଛେଦ ଦୁଃଖ—ସହ୍ୟ କରିବାକୁ ହୋଇଥିଲା । ଅତି ଶୈଶବରୁ ସେ ସଂସାରର ସର୍ବଶ୍ରେଷ୍ଠ ସ୍ନେହ କୋମଳତାରୁ ବଞ୍ଚିତ ହୋଇଥିଲେ । ତଥାପି ଆଜୀବନ ସେ ଯେ ଏତେଦୂର ଶାନ୍ତ, ସଂଯତ ଓ ନମ୍ରସ୍ୱଭାବପନ୍ନ ହୋଇ ପାରିଥିଲେ, ଏହା ଶୈଶବରୁ ମାତୃହୀନ ଅଳ୍ପଲୋକଙ୍କଠାରେ ଦେଖା ଯାଇଥାଏ ।

ପିତା ଭଗୀରଥ ଗୁପ୍ତ ଅମ୍ବିକା ବାଈଙ୍କର ମୃତ୍ୟୁ ସମୟକୁ ପୁରୀ ଅଠରନଳା ଘାଟରେ ଜମାଦାର କାର୍ଯ୍ୟ କରୁଥିଲେ । ଜଗନ୍ନାଥ-ଯାତ୍ରୀମାନଙ୍କଠାରୁ ଘାଟସଥା ( ଶୁଳ୍କ ) ଆଦାୟ କରିବା ତାଙ୍କର କାର୍ଯ୍ୟ ଥିଲା । କିନ୍ତୁ ଏହି ବର୍ଷ ୧୮୫୮ ଖ୍ରୀଷ୍ଟାବ୍ଦରେ ଇଂରେଜ ସରକାର ଏପ୍ରକାର ଶୁଳ୍କ ଆଦାୟ କରିବାର ପ୍ରଥା ବନ୍ଦ କରିଦେଲେ । ସୁତରାଂ ଭଗୀରଥ ବାବୁଙ୍କୁ କର୍ମହୀନ ଅବସ୍ଥାରେ ପଡ଼ି ରହିବାକୁ ହେଲା । ସ୍ତ୍ରୀଙ୍କ ବିୟୋଗବ୍ୟଥା ଏ ସମୟରେ ଗାଢ଼ତର ହୋଇ ତାଙ୍କୁ ଯନ୍ତ୍ରଣା ଦେଲା । ସ୍ତ୍ରୀଙ୍କ ବିୟୋଗକାଳୀନ ଅନୁରୋଧ ମନେ ପଡ଼ିବାରୁ ସେ ଅଗତ୍ୟା ଦୁଇ ପୁତ୍ରଙ୍କୁ ମାତୁଳାଳୟରେ ଛାଡ଼ି ଦେଇ ଆସିଲେ ।

କିଛି ଦିନ ପରେ ଭଗୀରଥ ଗୁପ୍ତ ଗୋପ ଥାନାର ଜମାଦାର-ରୂପେ ନିଯୁକ୍ତ ହୋଇ ଥିବାର ସମ୍ବାଦ ପାଇଲେ । ଯଥାସମୟରେ ସେ କାର୍ଯ୍ୟଭାର ଗ୍ରହଣ କଲେ । ସେ ବଡ଼ କର୍ତ୍ତବ୍ୟପରାୟଣ ଥିଲେ, ସେଥିରେ ପୁଣି ପୁଲିସ୍ ବିଭାଗରେ କାର୍ଯ୍ୟ କରୁଅଛନ୍ତି । ସୁତରାଂ ସ୍ତ୍ରୀ-ବିୟୋଗ ଦୁଃଖ ସଙ୍ଗେ ପୁତ୍ର ଦୁହିଙ୍କର ବିଚ୍ଛେଦ ଭାବନା ନ ଭାବି ସେ କର୍ତ୍ତବ୍ୟରେ ନିବିଷ୍ଟମନା ରହିଲେ । ପୁତ୍ର ଦୁହେଁ ସେମାନଙ୍କ ମାତୁଳାଳୟରେ ରହିଅଛନ୍ତି, ଏହାହିଁ ତାଙ୍କର ସାନ୍ତ୍ୱନା । କିନ୍ତୁ ସଂସାରରେ ଅଳ୍ପ ପରିବାର ଅଛନ୍ତି, ଯେଉଁମାନେ ବନ୍ଧୁ ସ୍ୱଜନମାନଙ୍କୁ ନିଜର କରି ଦେଖନ୍ତି । ଦୁଃଖର କଥା, ମଧୁସୂଦନଙ୍କ ମାତୁଳ ପରିବାର ଏହି ଅଳ୍ପ ମଧ୍ୟରେ ନ ଥିଲେ । ଆର୍ଥିକ ଅସ୍ୱାଚ୍ଛନ୍ଦ୍ୟ ମଧ୍ୟ ଏହାର ଏକ ବଡ଼ କାରଣ

ହୋଇ ପାରେ । ସୁତରାଂ ମଧୁସୂଦନଙ୍କୁ ଏହି ସମ୍ବନ୍ଧରେ ବହୁ ଅବହେ ଓ ଅନାଦରରେ ଅତିବାହିତ କରିବାକୁ ହୋଇଥିଲା । କିନ୍ତୁ ଏହାର ସୂଚନା ତାଙ୍କ ଲେଖା ମଧ୍ୟରେ କେଉଁଠାରେ ସେ ଦେଇଥିବା ପରି ମନେ ହୁଏ ନାହିଁ । ତାଙ୍କ ଚରିତ୍ରରେ ଏହା ସ୍ୱାଭାବିକ ।

ଭଗୀରଥ ରାଓ ସବୁ ଭାବନା ଭୁଲି କର୍ତ୍ତବ୍ୟରେ ମନ ଦେଇ-ଥାନ୍ତି । କିନ୍ତୁ ଦିନେ ରାତିରେ ସ୍ୱପ୍ନ ଦେଖିଲେ, ତାଙ୍କର ସ୍ତ୍ରୀ ତାଙ୍କ ସମ୍ମୁଖରେ ଦଣ୍ଡାୟମାନ ହୋଇ କହୁଅଛନ୍ତି, "ମୁଁ ତୁମ ପାଖରେ ମୋର ପ୍ରାଣପିତୁଲି ଦିଓଟିଙ୍କି ଛାଡ଼ି ଆସିଥିଲି, ସେମାନେ କଣ ଏପରି ହତାଦର ହେବେ ବୋଲି ? ତୁମେ ଯଦି ନ ଦେଖିବ, ତେବେ ମୁଁ ଢିଙ୍କାଅଣିକୁ ନେଇ ଯିବି ।" ଭଗୀରଥ ରାଓଙ୍କର ନିଦ୍ରା ଭଙ୍ଗ ହେଲା । ସେହି ସ୍ୱପ୍ନ କଥା ଭାବି ଭାବି ରାତିରେ ଆଉ ନିଦ୍ରା ଆସିଲା ନାହିଁ, ଶୀଘ୍ର ପୁରୀ ଯାଇ ପୁଅ ଦୁହିଁଙ୍କୁ ଅନ୍ତତଃ ଥରେ ଦେଖି ଆସିବା ପାଇଁ ତାଙ୍କର ଚିତ୍ତ ବ୍ୟଗ୍ର ହୋଇ ଉଠିଲା । ଭଗୀରଥ ରାଓ ବଡ଼ ସରଳବିଶ୍ୱାସୀ ଓ ନିଷ୍ଠାପର ଧାର୍ମିକ ଥିଲେ ଏବଂ ଏ ସକଳ ସ୍ୱପ୍ନକୁ ସେ ସତ୍ୟ ବୋଲି ଜ୍ଞାନ କରୁଥିଲେ । ମଧୁସୂଦନ ନିଜେ ମଧ୍ୟ ସ୍ୱପ୍ନରେ ବିଶ୍ୱାସ କରୁଥିଲେ ଏବଂ ଏହିପରି କେତେଗୋଟି ସ୍ୱପ୍ନ ତାଙ୍କ ଜୀବନକୁ ନିୟନ୍ତ୍ରିତ କରିଥିଲା ବୋଲି ମନେ ହୁଏ ।

ଭଗୀରଥ ବାବୁ କୌଣସିମତେ ପୁରୀ ଯାଇ ପୁଅ ଦୁହିଁଙ୍କର କୁଶଳବାର୍ତ୍ତା ବୁଝି ଆସିବାପାଇଁ ସ୍ଥିର କଲେ । ସେ ସମୟରେ ଟୋପ ଥାନାରେ ଜଣେ ବଙ୍ଗାଳୀ ଦାରୋଗା (Inspector) ଥିଲେ । ଭଗୀରଥଙ୍କ ନିଷ୍ଠାପରତାରେ ଦାରୋଗା ବାବୁ ବଡ଼ ସନ୍ତୁଷ୍ଟ ଥିଲେ । କିନ୍ତୁ ତାଙ୍କ ସମକ୍ଷରେ ସ୍ୱପ୍ନବୃତ୍ତାନ୍ତ ବିବୃତ କରି ପୁରୀ ଯିବା ଲାଗି ଭଗୀରଥ ବାବୁ ଯେତେବେଳେ ଅନୁମତି ମାଗିଲେ, ସ୍ୱପ୍ନବୃତ୍ତାନ୍ତ ମିଥ୍ୟା ବୋଲି କହି ସେ ତାଙ୍କୁ ଶାନ୍ତ କରିବାକୁ ଚେଷ୍ଟା କଲେ । ମାତ୍ର ପୁଅ ଦୁହିଁଙ୍କ

ଚିନ୍ତାରେ ଭଗୀରଥି ବାବୁଙ୍କ ମନ ବ୍ୟାକୁଳ ହୋଇ ଉଠିଲା । ସେ କୌଣସିମତେ ଅନୁମତି ନେଇ ପୁରୀ ଯାତ୍ରା କଲେ । ପୁତ୍ର ଦୁହିଙ୍କ ଚେହେରା ଦେଖି ପିତାଙ୍କ ହୃଦୟ ବିଦୀର୍ଣ୍ଣ ହୋଇଗଲା । ମଧୁ ଅତ୍ୟନ୍ତ ଶୀର୍ଣ୍ଣ ହୋଇ ପଡ଼ିଅଛନ୍ତି ଏବଂ ଜଗନ୍ନାଥ ରୁଗ୍ନ । ପୁତ୍ର ଦୁହିଙ୍କୁ ସଙ୍ଗରେ ନେଇ ଯିବାହିଁ ସେ ସର୍ବାପେକ୍ଷା ନିରାପଦ ମନେ କଲେ ।

ବଳଦ ଗାଡ଼ିରେ ଦୁର୍ବଳ ଶିଶୁ ଦୁଇଟିଙ୍କୁ ନେବା ସୁବିଧାଜନକ ନୁହେଁ ମନେ କରି ଗୋଟିଏ ଭାରୁଆ ସାହାଯ୍ୟରେ ଦୁଇ ପାର୍ଶ୍ୱରେ ଦୁଇ ପୁତ୍ରଙ୍କୁ ବସାଇ ଭଗୀରଥି ବାବୁ ଗୋପ ପ୍ରତ୍ୟାବର୍ତ୍ତନ କଲେ । ମାତୁଳାଳୟର ଅଯତ୍ନ ଓ ଦୁଃଖରୁ ମୁକ୍ତିଲାଭ କରି ପିତାଙ୍କ ନିକଟରେ ଦୁଇ ପୁତ୍ର ଅତି ଆନନ୍ଦରେ ବାସ କଲେ । ଭଗୀରଥି ବାବୁଙ୍କ ବେତନ ସାହାଯ୍ୟରେ ପିତା ପୁତ୍ର ତିନି ଜଣଙ୍କର ଜୀବନଯାତ୍ରା ସ୍ୱଚ୍ଛନ୍ଦରେ ଚଳିଲା । ପୁତ୍ର ଦୁହିଙ୍କ ପ୍ରତି କେବଳ ଜନକୋଚିତ ସ୍ନେହର ଅଭାବ ମନେ ପଡ଼ିଲେ ଭଗୀରଥି ବାବୁଙ୍କ ଚକ୍ଷୁ ଲୋତକପୂର୍ଣ୍ଣ ହୋଇ ଉଠୁଥିଲା । ସେମାନଙ୍କ ପ୍ରତି ପିତା ମାତା ଉଭୟଙ୍କର କର୍ତ୍ତବ୍ୟ ତାଙ୍କୁ ସମ୍ପନ୍ନ କରିବାକୁ ପଡୁଥିଲା । ସେମାନଙ୍କ ଚରିତ୍ର ଉପରେ ସେ ସର୍ବାପେକ୍ଷା ଅଧିକ ତୀକ୍ଷ୍ଣ ଦୃଷ୍ଟି ରଖିଥାନ୍ତି । କେବେହେଲେ ସେମାନଙ୍କୁ ସେ ଦୃଷ୍ଟିରୁ ଅନ୍ତର କରୁ ନ ଥିଲେ । ଗୃହରେ ଆହାରାଦି କରିବା ପରେ ମଧୁସୂଦନଙ୍କୁ ପିତାଙ୍କ ସହିତ ଯାଇ ଥାନାରେ ବସି ରହିବାକୁ ହେଉଥିଲା । ଅପରିଚିତ ସ୍ଥାନ ଯୋଗୁଁ ଅନ୍ୟ ପିଲାମାନଙ୍କ ସଙ୍ଗରେ ମିଶି ଖେଳିବାକୁ ମଧୁସୂଦନ ସୁବିଧା ପାଇ ନ ଥିଲେ । ସୁତରାଂ ଥାନା ବାରଣ୍ଡାରେ ବୁଲି ଥାନା ବାବୁ-ମାନଙ୍କ ସହିତ କଥୋପକଥନ କରିବାହିଁ ମଧୁସୂଦନଙ୍କର ପ୍ରଧାନ କାର୍ଯ୍ୟ ଥିଲା ।

---

# ଦ୍ୱିତୀୟ ପରିଚ୍ଛେଦ ।

## ବିଦ୍ୟାରମ୍ଭ ।

ଟିକିଏ ଅଧିକ ବୟସରେ ମଧୁସୂଦନଙ୍କର ବିଦ୍ୟାରମ୍ଭ କରା ଯାଇଥିଲା । ଗୋପରେ ସେତେବେଳେ ସରକାରୀ ସ୍କୁଲ ବସି ନ ଥିଲା । ଅବଧାନ ନିକଟରେହିଁ ବାଳକ ବାଳିକାମାନେ ବିଦ୍ୟାଶିକ୍ଷା କରୁଥିଲେ । ଅବଧାନମାନେ ଯେଉଁ ରୀତିରେ ପାଠ ପଢ଼ାଉଥିଲେ, ତାହା ଆଧୁନିକ ଶିକ୍ଷାରୀତିରୁ ସମ୍ପୂର୍ଣ୍ଣ ପୃଥକ୍ । ଶିଶୁଶିକ୍ଷାପାଇଁ ଛବିର ମସ୍ତିଷ୍କପ୍ରସୂତ ସୁଚିନ୍ତିତ କୌଣସି ପ୍ରଣାଳୀ ସେତେବେଳେ ନ ଥିଲା । ଅବଧାନ-ଙ୍କଠାରେ ପାଠ ପଢ଼ି ଶିଶୁମାନଙ୍କୁ ଅନର୍ଥକ ମସ୍ତିଷ୍କ ଚାଳନା ଓ ସମୟର ଅପବ୍ୟୟ କରିବାକୁ ପଡ଼ୁଥିଲା । ମଧୁସୂଦନଙ୍କର ବିଦ୍ୟାରମ୍ଭ କିନ୍ତୁ ଏହି ଅବଧାନ ନିକଟରେହିଁ ହୋଇଥିଲା ।

ଭଗୀରଥ ବାବୁଙ୍କର ପୁଲିସ ଥାନା ନିକଟରେ ଗୋଟିଏ ଚଟାଶାଳୀ ଥିଲା । ସେହିଠାରେ ପୁଅ ଦୁହିଙ୍କୁ ପଢ଼ାଇବା ସେ ଯୁକ୍ତିଯୁକ୍ତ ଜ୍ଞାନ କଲେ । କାରଣ ତାହାହେଲେ ପୁଅ ଦୁହେଁ ସବୁବେଳେ ନଜର ଉପରେ ରହିବେ । ଆଜିକାଲି ନିମ୍ନ ପ୍ରାଥମିକ ବିଦ୍ୟାଳୟଠାରୁ ସେତେବେଳର ଅବଧାନ ଶିକ୍ଷା ପୃଥକ୍ ଥିଲା । ଅବଧାନ ଟଙ୍କା ପ୍ରତି ଦୃଷ୍ଟି ରଖୁ ନ ଥିଲେ । ଚାଉଳ ଗଉଣିଏ, ନଡ଼ିଆ ହଳକଡ଼ା, ମୁଗ ଅଧପା ପାଇଲେ ସେ ସନ୍ତୁଷ୍ଟ ରହୁଥିଲେ । ସୁତରାଂ ପୁଅମାନଙ୍କର ଶିକ୍ଷାବ୍ୟୟ ପାଇଁ ଭଗୀରଥ ବାବୁଙ୍କୁ ଭାବିବାକୁ ପଡ଼ୁ ନ ଥିଲା ।

ଚଟାଶାଳୀରେ ପିଲାମାନଙ୍କୁ ପ୍ରାୟ ସାତ ଆଠ ବର୍ଷ ପଢ଼ିବାକୁ ହେଉଥିଲା । ଏହି ସମୟ ମଧ୍ୟରେ ପଣକିଆ, କଡ଼ାଗଣ୍ଡା, ଗୋଧି, ଓଡ଼ାଙ୍କ, ଦରସ୍ତୁଣ, ଦେଖିଣିକି, ବନ୍ଧୁଗଣିକି, ନଳ, ଭଆଣି, କୁଠା,

ବଜାରହିସାବ ଓ ବଳଦଅ ହିସାବ ଆଦି ଶିକ୍ଷା ଦିଆଯାଉଥିଲା । ଏ ତ ଗଲା ଅଙ୍କଶାସ୍ତ୍ରର କଥା । ତତ୍ପରେ ରାସକ୍ରୀଡ଼ା, ଗୋପୀଭାଷା, ମଥୁରା-ମଙ୍ଗଳ ଓ ଭାଗବତ ଆଦି ସାହିତ୍ୟରୂପରେ ପଢ଼ା ଯାଉଥିଲା । ଏକ କଥାରେ କହିବାକୁ ଗଲେ ପ୍ରାଥମିକଶିକ୍ଷାର ଉଦ୍ଦେଶ୍ୟ ଯାହା ଅତ୍ୟନ୍ତ ଆବଶ୍ୟକ, ତାହା ଜାଣିବା । ଅଙ୍କଶାସ୍ତ୍ରର ସୂତ୍ର ମଧ୍ୟରୁ କୌଣସି କୌଣସି ବିଷୟ ଆଧୁନିକ ଶିକ୍ଷିତମାନଙ୍କୁ ଅଦ୍ଭୁତ ବୋଧ ହୋଇ ପାରେ, କିନ୍ତୁ ମନେ ରଖିବାକୁ ହେବ ଯେ, ସେ ସମସ୍ତ ଆମ୍ଭମାନଙ୍କର ଖାଣ୍ଟି ଓଡ଼ିଆ ପାଠ । ଜମି ମାପ କରିବା, ଧାନ କୁଣ୍ଟା ପକାଇ ଗୁଡ଼ଜଳ ଅସ୍ଥଲ କରିବା, ଦେଢ଼ି କରଜ ଆଦିର ହିସାବ ରଖିବା, ବଜାର ହିସାବ ଜାଣିବା ଆଦି ପ୍ରତିଦିନର ଅତ୍ୟାବଶ୍ୟକ କାର୍ଯ୍ୟଗୁଡ଼ିକ ସମ୍ପୂର୍ଣ୍ଣରୂପେ ବୁଝି ପାରିବା ସେ କାଳର ଶିକ୍ଷାର ଉଦ୍ଦେଶ୍ୟ ଥିଲା । ଛାତ୍ରମାନେ ଚାଟଶାଳୀରୁ ବାହାରି ବିଭିନ୍ନ ଶିକ୍ଷାକେନ୍ଦ୍ରମାନଙ୍କରେ ଜ୍ୟୋତିଷ, ଆୟୁର୍ବେଦ, ସାହିତ୍ୟ ଆଦି ଉଚ୍ଚାଙ୍ଗର ଶିକ୍ଷା ଲାଭ କରି ପାରୁଥିଲେ । ଯେଉଁମାନେ ଉକ୍ତ ଅଙ୍ଗର ଶିକ୍ଷା ଲାଭ କରୁଥିଲେ, ବର୍ତ୍ତମାନ ପରି ଅର୍ଥୋପାର୍ଜନ ସେମାନଙ୍କର ପ୍ରଧାନ ଲକ୍ଷ୍ୟ ନ ଥିଲା । ଏହି ଚାଟଶାଳୀରୁ ବାହାରି ଉପେନ୍ଦ୍ର, ଅଭିମନ୍ୟୁ, ଦୀନକୃଷ୍ଣ, ପଠାଣି ସାମନ୍ତ ଆଦି ତିଆରି ହୋଇଥିଲେ । ଶିକ୍ଷା ସାହାଯ୍ୟରେ ଅର୍ଥୋପାର୍ଜନ ଏମାନଙ୍କର କୌଣସି ଦିନ ଲକ୍ଷ୍ୟ ହୋଇ ନାହିଁ । ଆଧୁନିକ ଶିକ୍ଷାଠାରୁ ସେ କାଳର ଶିକ୍ଷା ଏହି ଗୁଣରେ ଉତ୍କୃଷ୍ଟତର । ସ୍ଥୂଳରେ କହିବାକୁ ଗଲେ ବର୍ତ୍ତମାନ ଶିକ୍ଷାପଦ୍ଧତିର ଉଦ୍ଦେଶ୍ୟ—ତୁମେ କଣ ପାଇ ପାରିବ ଏବଂ ସେ କାଳ ଶିକ୍ଷାର ଉଦ୍ଦେଶ୍ୟ ଥିଲା—ତୁମେ କଣ ହୋଇ ପାରିବ । ଅର୍ଥାତ୍ ବର୍ତ୍ତମାନ ଶିକ୍ଷାର ଗତି ବାହାରଟାକୁ ବିସ୍ତୃତ କରିବା—ଦୈହିକ ସୁଖସ୍ୱାଚ୍ଛନ୍ଦ୍ୟକୁ ବୃଦ୍ଧି କରିବା—ଗାଡ଼ି, ଘୋଡ଼ା, କୋଠା ଇତ୍ୟାଦି । କିନ୍ତୁ ସେତେବେଳର ଉଦ୍ଦେଶ୍ୟ ଥିଲା—ଭିତରଟାକୁ ମହତ୍ କରିବା, ଯଥାର୍ଥ ଜ୍ଞାନ ଓ ଆଧ୍ୟାତ୍ମିକ ଉନ୍ନତି ଲାଭ କରିବା ।

ଯାହାହେଉ ମଧୁସୂଦନ ଯେତେବେଳେ ବିଦ୍ୟାରମ୍ଭ କଲେ, ସେତେବେଳକୁ ପୁରାତନ ଶିକ୍ଷାପଦ୍ଧତିର ପୂର୍ଣ୍ଣ ଅଧୋଗତି ଘଟି ସାରିଥିଲା । ଇଂରେଜ ଶାସନାଧୀନ ଥାଇ ନୂତନ ରୂପରେ ଭାରତର ଆତ୍ମପ୍ରକାଶ କରିବାର ସମୟ ସେ ।

ବାଲ୍ୟାବସ୍ଥାରୁହିଁ ମଧୁସୂଦନ ତୀକ୍ଷ୍ଣ ମେଧାବୀ ଓ ସ୍ମରଣଶକ୍ତିସମ୍ପନ୍ନ ଥିଲେ ବୋଲି ଜଣା ପଡ଼ି ଯାଇଥିଲେ । ଅବଧାନେ ଯାହା ତାଙ୍କୁ ଥରେ ପଢ଼ାଇ ଦେଉଥିଲେ, ସେ ସହଜରେ ତାହା ଭୁଲୁ ନ ଥିଲେ । ନିୟମିତରୂପେ ଗୃହଶାଳୀରେ ପଢ଼ିଥିବା ତାଙ୍କର ଏହି ସମୟରେ ଅଉ ଏକ ପ୍ରଧାନ ଗୁଣ ଥିଲା ।

ଭଗୀରଥି ବାବୁ ଗୋପ ଥାନାରୁ ଭୁବନେଶ୍ୱରକୁ ବଦଳି ହୋଇ ଆସିଲେ । ସୁତରାଂ ଗୋଟିଏ ବର୍ଷ ମାତ୍ର ମଧୁସୂଦନଙ୍କୁ ଗୋପ ଗୃହଶାଳୀରେ ବିଦ୍ୟାଶିକ୍ଷା କରିବାକୁ ହୋଇଥିଲା । ଏହି ବର୍ଷକ ମଧ୍ୟରେ ସେ ଗୃହଶାଳୀର ଶିକ୍ଷା ପ୍ରାୟ ଶେଷ କରି ପକାଇଥିଲେ । କାରଣ ସେତେବେଳେ ବର୍ତ୍ତମାନ ପରି ସବୁ ପିଲାଙ୍କୁ ଗୋଟିଏ ନିକଟରେ ପକାଇ ସେମାନଙ୍କପାଇଁ ଶ୍ରେଣୀବିଭାଗ କରି ଦେବାର ପ୍ରଥା ନ ଥିଲା । ଶିକ୍ଷକ ଛାତ୍ରର ବୁଦ୍ଧିବୃତ୍ତି ବିଚାର କରି ତାକୁ ଅଧିକ କିମ୍ବା ଅଳ୍ପ ଶିକ୍ଷା ପ୍ରଦାନ କରୁଥିଲେ ।

ଭୁବନେଶ୍ୱରରେ ସେତେବେଳକୁ ଗୋଟିଏ ସରକାରୀ ମଧ୍ୟ-ଶ୍ରେଣୀର ବିଦ୍ୟାଳୟ ସ୍ଥାପିତ ହୋଇଥିଲା ଏବଂ ଆଧୁନିକ ରୀତିରେ ସେଠାରେ ଶିକ୍ଷା ପରିବର୍ତ୍ତନ କରାଯାଇଥିଲା । କିନ୍ତୁ ଦୁଃଖର କଥା ଏହି ଯେ, ସେତେବେଳକୁ କି ଉଚ୍ଚ ଇଂରେଜୀ ବିଦ୍ୟାଳୟ, କି ମଧ୍ୟ-ଶ୍ରେଣୀର ବିଦ୍ୟାଳୟ ସବୁଠାରେ ଓଡ଼ିଆ ପରିବର୍ତ୍ତେ ବଙ୍ଗଳା ଭାଷା ସାହାଯ୍ୟରେ ଶିକ୍ଷା ଦିଆଯାଉଥିଲା । ସ୍କୁଲ ମାଷ୍ଟର ଅଧିକାଂଶ ବଙ୍ଗାଳି ଥିଲେ ଏବଂ ଓଡ଼ିଆରେ ସେପର୍ଯ୍ୟନ୍ତ ପାଠ୍ୟପୁସ୍ତକ ଲେଖାଯାଇ ନ ଥିଲା ।

ଓଡ଼ିଶାରେ ପୁରୀ, କଟକ ଓ ବାଲେଶ୍ୱର ଏହି ତିନଗୋଟି ମାତ୍ର ଜିଲ୍ଲା-ସଦରରେ ଗୋଟିଏ ଗୋଟିଏ ଉଚ୍ଚ ଇଂରେଜୀ ବିଦ୍ୟାଳୟ ସ୍ଥାପିତ ହୋଇଥିଲା । ପଶ୍ଚିମବଙ୍ଗର ଇନ୍‌ସ୍ପେକ୍ଟର ଏ ସ୍କୁଲମାନ ପରିଦର୍ଶନ କରିବାପାଇଁ ବର୍ଷକ ମଧ୍ୟରେ ଥରେ ଦୁଇ ଥର ଓଡ଼ିଶାକୁ ଆସୁଥିଲେ ।

ଭୁବନେଶ୍ୱର ମଧ୍ୟମ-ଶ୍ରେଣୀ ବିଦ୍ୟାଳୟରେ ମଧୁସୂଦନ ବଡ଼ ବୁଦ୍ଧିମାନ୍ ଛାତ୍ର ବୋଲି ଶୀଘ୍ର ଜଣା ପଡ଼ିଲେ । ଗୃହଶାଳାରେ ସେ ଯେପରି ଅଙ୍କ ଶିକ୍ଷା କରିଥିଲେ, ସ୍କୁଲରେ ପଢ଼ିବା ସମୟରେ ତାହା ତାଙ୍କୁ ଯଥେଷ୍ଟ ସାହାଯ୍ୟ ପ୍ରଦାନ କରିଥିଲା । ମଧୁସୂଦନ ସ୍ୱୀୟ ଅଧ୍ୟବସାୟ ଓ ମେଧାଶକ୍ତି ବଳରେ ନିଜ ଶ୍ରେଣୀର ଛାତ୍ରମାନଙ୍କ ମଧ୍ୟରେ ସର୍ବପ୍ରଥମ ସ୍ଥାନ ଅଧିକାର କଲେ । ବଙ୍ଗଳା ବହି ଅତି ସୁନ୍ଦରରୂପେ ପାଠ କରିବାରୁ ସେ ତାଙ୍କ ଶିକ୍ଷକମାନଙ୍କର ଅତି ଆଦରଣୀୟ ହୋଇ ଉଠିଲେ । ସ୍କୁଲର ହେଡ଼ମାଷ୍ଟର ଶ୍ରୀହରି ଉଚ୍ଚାଗ୍ରସିଂ ତାଙ୍କର ଶିକ୍ଷୋନ୍ନତି ଦେଖି ଉତ୍ତମରୂପେ ବୁଝି ପାରିଥିଲେ ଯେ, ସେ ଉଚ୍ଚତର ଶିକ୍ଷା ପାଇବାର ଯୋଗ୍ୟ । କେବଳ ସ୍କୁଲଶିକ୍ଷା ମଧ୍ୟରେହିଁ ତାଙ୍କର ଅଧ୍ୟୟନ ଆବଦ୍ଧ ହୋଇ ନ ଥିଲା, ଯେ କୌଣସି ପୁସ୍ତକ ଦେଖିଲେ ତହିଁରୁ କିୟଦଂଶ ପାଠ କରି ସେ ନିଜର କୌତୂହଳ ନିବୃତ୍ତି କରୁଥିଲେ । ଏହା ବ୍ୟତୀତ ସେ କାହାରି ଜ୍ଞାନରେ, ଚରିତ୍ରରେ ଉତ୍କୃଷ୍ଟ ବୋଲି ଅନ୍ୟମାନଙ୍କ ଦ୍ୱାରା ପ୍ରଶଂସିତ ହେବେ, ସେଥିଲାଗି ସେ ସବୁବେଳେ ନିଜ ଉପରେ ତୀକ୍ଷ୍ଣ ଦୃଷ୍ଟି ରଖିଥାନ୍ତି । ତାଙ୍କର ସରଳ ସାଧୁ ଚରିତ୍ର ଓ ମିଷ୍ଟାଳାପରେ ସହାଧ୍ୟାୟୀମାନେ ମଧ୍ୟ ମୁଗ୍ଧ ହୋଇ ଯାଇଥିଲେ ।

ପ୍ରଶଂସାର ସହିତ ଉତ୍ତୀର୍ଣ୍ଣ ହୋଇ ମଧୁସୂଦନ ଯେତେବେଳେ ପ୍ରଥମଶ୍ରେଣୀରେ ଅଧ୍ୟୟନ କରୁଥାନ୍ତି, ସେତେବେଳେ ଗୋଟିଏ ଘଟଣା ବଳରେ ତାଙ୍କ ଶିକ୍ଷାର ମାର୍ଗ ପୂର୍ବାପେକ୍ଷା ସୁଗମ ହୋଇ ପଡ଼ିଥିଲା ।

ଓଡ଼ିଶା ବିଭାଗର ସ୍କୁଲ ଇନ୍‌ସ୍ପେକ୍ଟର ହଡେ୍ର ସାହେବ ଥରେ ପ୍ରସିଦ୍ଧ ଐତିହାସିକ ସ୍ଥାନ ଖଣ୍ଡଗିରି ଦେଖିବା ପାଇଁ ଆସିଥିଲେ । ଖଣ୍ଡଗିରି ଭୁବନେଶ୍ୱରର ନିକଟବର୍ତ୍ତୀ । ସୁତରାଂ ସେହି ସୁଯୋଗରେ ଭୁବନେଶ୍ୱର ସ୍କୁଲଟି ପରିଦର୍ଶନ କରିବାକୁ ମଧ୍ୟ ସାହେବ ମନ ବଳାଇଲେ । ଅନ୍ୟ କୌଣସି ସୁବିଧା ସ୍ଥାନ ନ ଥିବାରୁ ଥାନାରେ ରହି ସାହେବ ମହୋଦୟ ଭଗୀରଥ ବାବୁଙ୍କର ଆତିଥ୍ୟ ଗ୍ରହଣ କରିଥିଲେ ଏବଂ ତାଙ୍କର ବ୍ୟବହାରରେ ଅତ୍ୟନ୍ତ ଆପ୍ୟାୟିତ ହୋଇ ପଡ଼ିଥିଲେ । ସ୍କୁଲ ପରିଦର୍ଶନ ସମୟ ମଧ୍ୟରେ ମଧୁସୂଦନଙ୍କ ପ୍ରଶାନ୍ତ ମୂର୍ତ୍ତି ଦେଖି ଓ ତାଙ୍କର ବଙ୍ଗଳା ଗଦ୍ୟ ପାଠ କରିବାର ଶୁଣି ସେ ଅତ୍ୟନ୍ତ ମୁଗ୍ଧ ହୋଇ ଯାଇଥିଲେ । ପରେ ତାଙ୍କୁ ଭଗୀରଥ ବାବୁଙ୍କର ପୁତ୍ର ବୋଲି ଜାଣି ପାରି ସେ ତାଙ୍କୁ କହିଲେ, "ଆପଣ ଏ ପୁଅଟିକୁ ପୁରୀ ଜିଲ୍ଲା ସ୍କୁଲକୁ ପଠାନ୍ତୁ ।" କିନ୍ତୁ ଭଗୀରଥ ବାବୁଙ୍କ ସଂସାର ସେପରି ସ୍ୱଚ୍ଛଳ ନୁହେଁ, ଏହା ଜାଣି ପାରି ଇନ୍‌ସ୍ପେକ୍ଟର ସାହେବ ପ୍ରସନ୍ନ ହୋଇ ନିଜ ଇଚ୍ଛାରେ ଖଣ୍ଡିଏ ସାର୍ଟିଫିକେଟ୍ ଲେଖିଦେଲେ ଯେ, ଭଗୀରଥ ରାଓଙ୍କ ପୁତ୍ର ମଧୁସୂଦନ ରାଓ ପୁରୀ ଜିଲ୍ଲା ସ୍କୁଲରେ ବିନା ବେତନରେ ପାଞ୍ଚ ବର୍ଷ ପଢ଼ି ପାରିବେ ।

ପୁଅକୁ ପଢ଼ାଇବାର ଏହି ସୁଯୋଗ ପାଇ ଭଗୀରଥ ବାବୁ ସାତିଶୟ ଆନନ୍ଦିତ ହେଲେ । ମଧୁସୂଦନଙ୍କୁ ଯେତେବେଳେ ମାତ୍ର ନଅ ବର୍ଷ ବୟସ, ସେତେବେଳେ ସେ ଭୁବନେଶ୍ୱର ସ୍କୁଲ ପରିତ୍ୟାଗ କରି ପୁରୀ ଜିଲ୍ଲା ସ୍କୁଲରେ ଅଧ୍ୟୟନ ଲାଗି ଯାତ୍ରା କଲେ । ଏଥର ଅବଶ୍ୟ ତାଙ୍କୁ ମାତୁଳାଳୟର ଅବହେଳା ଆଉ ସହ୍ୟ କରିବାକୁ ପଡ଼ି ନ ଥିଲା । ବର୍ତ୍ତମାନ ତାଙ୍କର ଶିକ୍ଷାର କ୍ଷେତ୍ର ବହୁ ବିସ୍ତୀର୍ଣ୍ଣ । ଭୁବନେଶ୍ୱର ଅପେକ୍ଷା ପୁରୀ ସ୍କୁଲର ଛାତ୍ରସଂଖ୍ୟା ଅନେକ ବେଶି ଏବଂ ଶିକ୍ଷକସଂଖ୍ୟା ମଧ୍ୟ ସେହି ଅନୁପାତରେ ଅଧିକ ।

ମଧୁସୂଦନ ଏହି ସମୟରୁହିଁ ବଡ଼ ଅଧ୍ୟବସାୟୀ ବୋଲି ପରିଚିତ ହୋଇଥିଲେ । ଯେ କୌଣସି ସମୟରେ ଯେଉଁ ଲୋକ ଖ୍ୟାତନାମା ହୋଇ ପାରିଅଛନ୍ତି, ସେମାନଙ୍କ ମୂଳରେ ଅଧ୍ୟବସାୟ ଓ ଐକାନ୍ତିକତା ସର୍ବଦା ବର୍ତ୍ତମାନ ରହିଅଛି । ଅବଶ୍ୟ ସ୍ଥାନବିଶେଷରେ ଏହା ଅଳ୍ପ ବେଶି ପରିଲକ୍ଷିତ ହୋଇଥାଏ । କିନ୍ତୁ ଯେତେ ପ୍ରତିଭାବାନ୍ ଓ ତୀକ୍ଷ୍ଣବୁଦ୍ଧି ଲୋକ ହେଲେହେଁ ବିନା ଅଧ୍ୟବସାୟରେ ଜୀବନରେ କୃତକାର୍ଯ୍ୟ ହେବା ଅସମ୍ଭବ । ମଧୁସୂଦନ ଛାତ୍ରାବସ୍ଥାରୁ ପ୍ରଗାଢ଼ ଅଧ୍ୟବସାୟୀ ଥିଲେ । ଏପରି କି, ଅଧିକ ଯେଉଁ ସମୟରେ ଶୋଇକୁ ଆସି ନ ଥାନ୍ତି ଏବଂ ଅପର ଛାତ୍ରମାନେ ନାନା ହାସ୍ୟାମୋଦରେ ରତ ଥାନ୍ତି, ମଧୁସୂଦନ ସେ ସମୟତକ ପୁସ୍ତକପାଠରେ ମନୋନିବେଶ କରିଥାନ୍ତି । ଫଳସ୍ୱରୂପ ସେ ପ୍ରଥମ ବର୍ଷ ଶ୍ରେଣୀରେ ସର୍ବପ୍ରଥମ ସ୍ଥାନ ଅଧିକାର କରି ଉତ୍ତୀର୍ଣ୍ଣ ହେଲେ ଏବଂ ଶିକ୍ଷକ ଓ ସହାଧ୍ୟାୟୀ ଛାତ୍ର ଉଭୟଙ୍କର ଦୃଷ୍ଟି ଆକର୍ଷଣ କଲେ । ଦ୍ୱିତୀୟ ବର୍ଷ ମଧ୍ୟ ସେ ଏହିପରି ପ୍ରଥମ ସ୍ଥାନ ଅଧିକାର କରି ଏକା ବର୍ଷରେ ଦୁଇଗୋଟି ଶ୍ରେଣୀ ଉତ୍ତୀର୍ଣ୍ଣ ହୋଇଗଲେ । ଏହି ବର୍ଷ ସେ ମାଇନର ଶିକ୍ଷା ସାଙ୍ଗ କରି ଏଣ୍ଟ୍ରାନ୍ସର ନିମ୍ନତମ ଶ୍ରେଣୀରେ (ବର୍ତ୍ତମାନର ୮ମ ଶ୍ରେଣୀ) ଉନ୍ନୀତ ହେଲେ । ପ୍ରତି ବର୍ଷ ଏହିପରି ପ୍ରଥମ ସ୍ଥାନ ଅଧିକାର କରି ସେ ଅନେକଗୁଡ଼ିଏ ପୁସ୍ତକ ପୁରସ୍କାରସ୍ୱରୂପ ଲାଭ କରୁଥିଲେ ଏବଂ ସେଗୁଡ଼ିକ ଉପର ଶ୍ରେଣୀର ପାଠ୍ୟପୁସ୍ତକ ଥିବାରୁ ରଘୁନାଥ ବାବୁ ପୁତ୍ରର ବେତନ ସଙ୍ଗେ ସଙ୍ଗେ ପାଠ୍ୟପୁସ୍ତକ କ୍ରୟ କରିବାର ବ୍ୟୟରୁ ମଧ୍ୟ ଅବ୍ୟାହତି ପାଉଥିଲେ ।

## ବିବାହ ।

ମଧୁସୂଦନଙ୍କୁ ଯେତେବେଳେ ମାତ୍ର ଏକାଦଶ ବର୍ଷ ବୟସ, କୌଳିକ ପ୍ରଥା ଅନୁସାରେ ତାଙ୍କୁ ଗୋଟିଏ ନବମବର୍ଷୀୟା ବାଳିକାଙ୍କୁ ପାଣିଗ୍ରହଣ କରିବାକୁ ହୋଇଥିଲା । ତାଙ୍କ ନାମ ପଦ୍ମା ବାଈ । ଏହି ଭାଗ୍ୟବତୀ ନାରୀ ତାଙ୍କର ଆଜୀବନ ସଙ୍ଗିନୀ ହୋଇ ତାଙ୍କ ଅନନ୍ତ

ବଖାଦର ଅଂଶୀଦାର ହୋଇ ଆସିଅଛନ୍ତି । ମଧୁସୂଦନଙ୍କ ଶ୍ୱଶୁରକୁଳ ଏପର୍ଯ୍ୟନ୍ତ ପୁରୀଠାରେ ଅବସ୍ଥିତ; କିନ୍ତୁ ତାଙ୍କର ଶ୍ୱଶୁର ବଂଶଧରମାନେ କଟକ ପ୍ରଭୃତି ନାନା ସ୍ଥାନରେ ବସବାସ କରି ଗଲେଣି । ଏତେ ଅଳ୍ପ ବୟସରେ ମଧୁସୂଦନ ବିବାହର ମର୍ମ କିଛି ବୁଝି ପାରି ନ ଥିଲେ । ସୁତରାଂ ବିବାହଦ୍ୱାରା ତାଙ୍କ ଜୀବନର କୌଣସି ଉତ୍କର୍ଷ ବା ଅପକର୍ଷ ହୋଇଅଛି ବୋଲି ବୋଲାଯାଇ ନ ପାରେ ।

ଏହି ସମୟରେ ଜନ୍ ବକ୍ସ୍‌ୱେଲ୍ ପୁରୀର ମ୍ୟାଜିଷ୍ଟ୍ରେଟ୍ ଥିଲେ । ସେ ଅତ୍ୟନ୍ତ ବିଦ୍ୟୋତ୍ସାହୀ ଓ ସୁପଣ୍ଡିତ ଥିଲେ, ପୁରୀ ଜିଲ୍ଲା ସ୍କୁଲକୁ ପ୍ରତି ବର୍ଷ ପ୍ରତ୍ୟେକ ଗୁରୁଗୋଟି ବିଷୟରେ ପାଞ୍ଚ ଗୋଟି ଲେଖାଏଁ ପ୍ରଶ୍ନ ଦେଉଥିଲେ ଏବଂ ପ୍ରତ୍ୟେକ ପ୍ରଶ୍ନ ନିମିତ୍ତ ପୁରସ୍କାରସ୍ୱରୂପ ପାଞ୍ଚ ଟଙ୍କା ନିର୍ଦ୍ଦିଷ୍ଟ ଥିଲା । ମଧୁସୂଦନ ତିନି ବର୍ଷ ବାର୍ଷିକ ଏକଶତ ଟଙ୍କା ଲେଖାଏଁ ଏହି ପୁରସ୍କାର ଲାଭ କରିଥିଲେ ଏବଂ ରେବା ରାଜାଙ୍କ ମେଡ଼େଲ ମଧ୍ୟ ପାଇଥିଲେ । ଶେଷୋକ୍ତ ରାଜା ମହୋଦୟ ଏଣ୍ଟ୍ରାନ୍ସ ଶ୍ରେଣୀରେ ପ୍ରଥମ ଛାତ୍ର ନିମିତ୍ତ ପଚିଶ ଭରି ରୁପାର ଗୋଟିଏ ମେଡ଼େଲ ପ୍ରତି ବର୍ଷ ଘୋଷଣା କରୁଥିଲେ । ମଧୁସୂଦନ ଅସ୍ୱଚ୍ଛତା ନିବନ୍ଧନ ଦୁଇ ବର୍ଷ ପ୍ରଥମ ଶ୍ରେଣୀରେ ଥାଇ ଦୁଇଥର ମେଡ଼େଲ ପାଇଥିଲେ । ସେଥିରେ ଏହି ନିୟମ ଥିଲା ଯେ, ପ୍ରଥମ ଶ୍ରେଣୀର ଯେଉଁ ଛାତ୍ର ସବୁ ବିଷୟରେ ପ୍ରଥମ ହେବ, ସେ ଏହି ପଦକ ପାଇବ, କିନ୍ତୁ ସାତ ଦିନ ଧରେ ରଖି ସ୍କୁଲକୁ ଫେରାଇ ଦେବ; ମାତ୍ର ତିନିବର୍ଷ ପାଇଲେ ସେ ପଦକ ତାହାର ହେବ । ଦୁଇ ବର୍ଷ ଏହି ପଦକ ପାଇ ତୃତୀୟ ବର୍ଷରେ ମଧୁସୂଦନ ପ୍ରବେଶିକା ପରୀକ୍ଷାରେ ସ୍କୁଲର ସର୍ବ ପ୍ରଥମ ଛାତ୍ରରୂପେ ଉତ୍ତୀର୍ଣ୍ଣ ହେଲେ । ସ୍କୁଲରୁ ଚାଲିଯିବାରୁ ଏ ପଦକ ତାଙ୍କୁ ଦିଆଯିବ କି ନା ନିର୍ଦ୍ଧାରଣ କରୁ କରୁ ଏକ ବର୍ଷ ଅତିବାହିତ ହୋଇଗଲା । ପର ବର୍ଷ ହରିକୃଷ୍ଣ ଦାସ ନାମକ ଜଣେ ଛାତ୍ର ଦ୍ୱିତୀୟ ବିଭାଗର ଟ ୧୫୯ ବୃତ୍ତି ପାଇବାରୁ ଉକ୍ତ ପଦକପାଇଁ ଦାବୀ କଲେ, କିନ୍ତୁ ଗୁଣଗ୍ରାହୀ ବକ୍ସ୍‌ୱେଲ୍ ସାହେବଙ୍କ ଯୋଗୁଁ

ଉତ୍ସାହିତ କମିଟି ସେ ପଦକ ମଧୁସୂଦନଙ୍କୁ ପ୍ରଦାନ କରିବା ସ୍ଥିର କଲେ । ୧୮୬୦ ଖ୍ରୀଷ୍ଟାବ୍ଦରେ ଏହି ଘଟନା । ଯେଉଁଦିନ ମଧୁସୂଦନ ସେ ପଦକ ଆଣିବାର କଥା, ସେ ଦିନ କୌଣସି ମାତୃଶୂନ୍ୟ ଛାତ୍ର ଈର୍ଷ୍ୟାପରବଶ ହୋଇ ସ୍କୁଲଗୃହରେ ଅଗ୍ନି ସଂଯୋଗ କରି ପଦକ ସହିତ ସ୍କୁଲର ସମସ୍ତ ଉପକରଣ ଭସ୍ମୀଭୂତ କରିଦେଲା ।

ନଅଙ୍କ ।

ମଧୁସୂଦନ ଏଣ୍ଟ୍ରାନ୍ସ ପ୍ରଥମ ଶ୍ରେଣୀରେ ପାଠ କରୁଥିବା ସମୟରେ ଉତ୍କଳରେ ନଅଙ୍କ ଦୁର୍ଭିକ୍ଷର ଆବିର୍ଭାବ । ଦୁର୍ଭିକ୍ଷ ପାଇଁ ଉତ୍କଳର ଚିରକାଳ ପ୍ରସିଦ୍ଧି ଅଛି । ବିମ୍ସ୍ ପ୍ରଭୃତି ତାତ୍କାଳିକ ସହୃଦୟ ଇଂରେଜ ପଣ୍ଡିତମାନେ ଉତ୍କଳର ଏହି ଅସମ୍ଭାବିତ ଘଟନା ପାଠ ଓ ଶ୍ରବଣ କରି ଶଙ୍କିତ ହୋଇ ଯାଇଥିଲେ । ଦେବତାର ବାସଯୋଗ୍ୟ ଏହି ଉତ୍କଳ ଦେଶ ସେ ସମୟରେ ଏକ ବିରାଟ ଶ୍ମଶାନରେ ପରିଣତ ହୋଇଥିଲା । 'ନଅଙ୍କ' କଥାଟି ଉତ୍କଳରେ ଘରେ ଘରେ ପରିଚିତ । ଏହାର ଅର୍ଥ କେହି 'ବର୍ଷ' ବୋଲି ହଠାତ୍ ବୁଝନ୍ତି ନାହିଁ । କେବଳ ଗୋଟାଏ ଭୀଷଣ ଦୁର୍ଭିକ୍ଷର ନାମ ବୋଲି ଲୋକମାନଙ୍କର ଧାରଣା ଜନ୍ମେ ।

ଚତୁର୍ଦ୍ଦିଗରେ କଙ୍କାଳ ମୃତଦେହର ଛବି ଓ 'ହା ଅନ୍ନ' 'ହା ଅନ୍ନ' ଚିତ୍କାରରେ କୋମଳମତି ଯୁବକଙ୍କ ଅନ୍ତର ଦ୍ରବୀଭୂତ ହୋଇ ଯାଇ-ଥିଲା । କିନ୍ତୁ ମନୋମତ ଗୋଟିଏ କାର୍ଯ୍ୟ ଲାଭ କରି ସେ କଥଞ୍ଚିତ୍ ସାନ୍ତ୍ୱନା ପାଇଥିଲେ । ମହାନ୍ତ ନାରାୟଣ ଦାସ ନାମକ ତଦାନୀନ୍ତନ ପୁରୀର ଜଣେ ସୁପଣ୍ଡିତ ଲୋକପ୍ରିୟ ମଠାଧୀଶ ଏ ଦୁର୍ଦ୍ଦିନରେ ମନ ପ୍ରାଣ ଢାଳି ଆର୍ତ୍ତସେବାରେ ନିଯୁକ୍ତ ଥିଲେ ଏବଂ ତାଙ୍କର ଅନୁରୋଧକ୍ରମେ ବକ୍ଲ୍ୟାଣ୍ଡ୍ ସାହେବ ମଧୁସୂଦନଙ୍କୁ ଦଳେ ସ୍ୱେଚ୍ଛାସେବକଙ୍କ ଅଗ୍ରଣୀ ହୋଇ ଶୃଙ୍ଖଳା ବାନ୍ଧିବାର ଭାର ପ୍ରଦାନ କରିଥିଲେ । ଛାତ୍ରମାନେ ଏ ଦାୟିତ୍ୱପୂର୍ଣ୍ଣ ସେବାବ୍ରତ ଗ୍ରହଣ କରିବା ସେକାଳର ଲୋକଙ୍କ ବନ୍ଧ

ନୂତନ ବୋଧ ହେଉଥିଲା । ମଧୁସୂଦନ ଏହି ଦରିଦ୍ର ବ୍ରାହ୍ମଣଙ୍କ ସେବା କରି ଜୀବନକୁ ଧନ୍ୟ ମନେ କରିଥିଲେ ଏବଂ ଏହିଠାରେ ତାଙ୍କର 'ଜୀବେ ଦୟା' ଶିକ୍ଷାର ସୂତ୍ରପାତ ହୋଇଅଛି । ଏହି ଚତୁର୍ଦ୍ଦଶ ବୟସର ବାଳକ ଅନ୍ତରରେ କରୁଣାର ଏପରି ଉଦ୍ରେକ ହୋଇଥିଲା ଯେ, ସେ ଏହି ସମୟରୁ ଯାବଜ୍ଜୀବନ ମତ୍ସ୍ୟ ମାଂସ ଭକ୍ଷଣ ତ୍ୟାଗ କରିଥିଲେ ।



## ତୃତୀୟ ପରିଚ୍ଛେଦ ।

### ମଣିକାଞ୍ଚନ—ରାଧାନାଥ ଓ ମଧୁସୂଦନ ।

ସ୍କୁଲରେ ଅଧ୍ୟୟନ କରିବା କାଳରେ ଆକସ୍ମିକ ଭାବରେ ଉତ୍କଳରେ ଅଧୁନାତନ ଯୁଗର କବିଶ୍ରେଷ୍ଠ ରାଧାନାଥଙ୍କ ସହିତ ମଧୁସୂଦନଙ୍କର ପରିଚୟ ହେଲା । ପୁରୀ ଜିଲ୍ଲା ସ୍କୁଲରେ ଶିକ୍ଷକତା ପୂର୍ବରୁ ରାଧାନାଥ ଥରେ ଜଗନ୍ନାଥ ଦର୍ଶନ ଉଦ୍ଦେଶ୍ୟରେ ପୁରୀ ଆସିଥିଲେ ଏବଂ ସ୍କୁଲ ଦେଖିବା ପାଇଁ ଯାଇ ସେ ପ୍ରତ୍ୟେକ ଶ୍ରେଣୀ ବୁଲି ବୁଲି ଦେଖୁଥିଲେ । ମଧୁସୂଦନଙ୍କ ଶ୍ରେଣୀରେ କୌଣସି ଶିକ୍ଷକ ନ ଥିବାରୁ ଛାତ୍ରମାନେ ଗଳ୍ପ କୌତୁକ କରୁଥାନ୍ତି, ଅଥଚ ମଧୁସୂଦନ ନିବିଷ୍ଟଚିତ୍ତରେ ଅଧ୍ୟୟନରେ ରତ ଥାନ୍ତି । ଏହି ସମୟରେ ନଫର ନାମକ ଗୋଟିଏ ଛାତ୍ର ମଧୁସୂଦନଙ୍କ ଧରି ଟାଣି ଟାଣି କରି କହିବାରୁ ସେ ବିରକ୍ତ ହୋଇ କହିଲେ, "Don't bother me now"—'ଯା, ଏଖଣି ମତେ ବିରକ୍ତ କର ନା ।' ରାଧାନାଥଙ୍କୁ ଆଉ ବୁଝିବାକୁ ବାକି ରହିଲା ନାହିଁ ଯେ, ଏତେ ତାରା ମଧ୍ୟରେ ଏହି ଗୋଟିକ ଚନ୍ଦ୍ର । ସେ ତତ୍‌କ୍ଷଣାତ୍ ମଧୁସୂଦନଙ୍କୁ ବାହାରକୁ ଡାକି ଆଣି ତାଙ୍କର ପରିଚୟ ଗ୍ରହଣ କଲେ । କେତେକ ମାସ ପରେ ରାଧାନାଥ ବାବୁ ଉକ୍ତ ସ୍କୁଲକୁ

ଦ୍ୱିତୀୟ ଶିକ୍ଷକ ପଦରେ ନିଯୁକ୍ତ ହୋଇ ଆସିଲେ ଏବଂ ତାଙ୍କ ଉପରେ ଭୂଗୋଳ ଓ ଇତିହାସ ଅଧ୍ୟାପନାର ଭାର ପ୍ରଦତ୍ତ ହେଲା ।

ଅସ୍ୱସ୍ଥତାବଶତଃ ମଧୁସୂଦନ ପ୍ରଥମ ବର୍ଷ ପରୀକ୍ଷା ଦେଇ ନ ପାରି ଯାହା ହରାଇଲେ, ତାହାଠାରୁ ଅନେକ ଅଧିକ ବସ୍ତୁ ଲାଭ କଲେ । ତାହା ରାଧାନାଥ ବାବୁଙ୍କ ସହିତ ବନ୍ଧୁତ୍ୱ । ଉତ୍ତର କାଳରେ ଏହି ଯୁବକଟି ରାଧାନାଥଙ୍କ ସହିତ କବି ଆସନରେ ସମାସୀନ ହେବାର ଯୋଗ୍ୟ ହୋଇ ପାରିଥିଲେ ଏବଂ କର୍ମୀ ହିସାବରେ ରାଧାନାଥଙ୍କ ଅପେକ୍ଷା ଅନେକ ବେଶି କରି ପାରିଥିଲେ । ଯାହା ହେଉ ରାଧାନାଥଙ୍କ ସାହଚର୍ଯ୍ୟ ତାଙ୍କ ଜୀବନର ଗୋଟାଏ ବଡ଼ ଲାଭ । ତୃତୀୟ ବର୍ଷ ପ୍ରବେଶିକା ପରୀକ୍ଷା ପୂର୍ବରୁ ମଧୁସୂଦନ ଯେତେବେଳେ ପୂର୍ବବତ୍ ପୀଡ଼ିତ ହେଲେ, ସେତେ-ବେଳେ ତାଙ୍କର ଦୁଃଖ ଅତି ପ୍ରବଳ ହୋଇ ଉଠିଲା । କୋମଳପ୍ରାଣ ରାଧାନାଥ ପ୍ରତି ଦିନ ତାଙ୍କର ପ୍ରିୟ ଯୁବକକୁ ଦେଖିବାକୁ ଆସନ୍ତି । ମଧୁସୂଦନ ଧୈର୍ଯ୍ୟ ଧରି ନ ପାରି ପରୀକ୍ଷାର ଅଳ୍ପ ବିଳମ୍ବ ଏହି ଉପସ୍ଥିତ ଦୁଃଖ ଜଣାଇ ରାଧାନାଥଙ୍କ ନିକଟରେ କ୍ରନ୍ଦନ କରିବାକୁ ଲାଗିଲେ । ରାଧାନାଥ ତାଙ୍କୁ ପରୀକ୍ଷାରେ ସମ୍ପୂର୍ଣ୍ଣରୂପେ କୃତକାର୍ଯ୍ୟ ହେବାର ଆଶା ଦେବାରୁ ସେ ତାଙ୍କୁ କେବଳ ଅଙ୍କଶିକ୍ଷା ଦାନ ଲାଗି ଅନୁରୋଧ କଲେ । ରାଧାନାଥ ଆଗ୍ରହରେ ସମ୍ମତି ପ୍ରଦାନ କରି ପ୍ରତି ଦିନ ତାଙ୍କ ଗୃହକୁ ଆସି ଶିକ୍ଷାଦାନ କଲେ । କ୍ରମେ ତାଙ୍କ ପ୍ରତି ରାଧାନାଥଙ୍କର ସ୍ନେହ ଗାଢ଼ତର ହେବାକୁ ଲାଗିଲା । କେବଳ ସ୍କୁଲପାଠ୍ୟ ନେଇ ଉଭୟଙ୍କ ମଧ୍ୟରେ ଶିକ୍ଷକ ଛାତ୍ରର ସମ୍ବନ୍ଧ ନ ଥିଲା । ଓଡ଼ିଆ ଓ ସଂସ୍କୃତ ସାହିତ୍ୟର ଚର୍ଚ୍ଚା ମଧ୍ୟ ଉଭୟେ ପରମ ଆଗ୍ରହରେ କରୁଥିଲେ ।

## ପଣ୍ଡିତ ହରିହର ଦାଶ ।

ବୟସରେ ମଧୁସୂଦନ ରାଧାନାଥଙ୍କ ଅପେକ୍ଷା ପାଞ୍ଚ ବର୍ଷ ଜ୍ୟେଷ୍ଠ ଥିଲେ । କିନ୍ତୁ ଏହି ସମ୍ବନ୍ଧରୁ ସେ ରାଧାନାଥଙ୍କ ସହିତ ଧର୍ମ, ଦର୍ଶନ

ଅନ୍ଧ ଭକ୍ତମାନଙ୍କର ବକ୍ତବ୍ୟ ସବୁ ଅନୁଭବ କରୁଥିଲେ । ସେ ସମୟରେ ହରିହର ଦାଶ ନାମକ ପୁରୀରେ ଜଣେ ସୁବିଖ୍ୟାତ ସଂସ୍କୃତଜ୍ଞ ଓ ପ୍ରଧାନ ନୈୟାୟିକ ଥିଲେ । ଗୁଣଗ୍ରାହୀ ରାଧାନାଥ ମଧୁସୂଦନଙ୍କ ସହିତ ଉକ୍ତ ପଣ୍ଡିତ ମହୋଦୟଙ୍କ ନିକଟକୁ ପ୍ରତ୍ୟହ ଯାଇ ଦର୍ଶନଚର୍ଚ୍ଚା କରୁଥିଲେ ଓ କଠିନ କଠିନ ସଂସ୍କୃତ ଶ୍ଳୋକମାନଙ୍କର ଅର୍ଥ ବୁଝୁଥିଲେ । ହରିହର ଦାଶ ଜଣେ ବଡ଼ ତେଜସ୍ୱୀ ପୁରୁଷ ଥିଲେ । ତାଙ୍କର ଅଗାଧ ପାଣ୍ଡିତ୍ୟର ପରିଚୟ ଯେ ଥରେ ପାଇଅଛି, ସଂସ୍କୃତ ଭାଷାରେ ତାଙ୍କର ତେଜସ୍ୱିତାବ୍ୟଞ୍ଜକ ଅନର୍ଗଳ ବକ୍ତୃତା ଯେ କେବେ ଶୁଣି ପାରିଅଛି, ସେ ଚମତ୍କୃତ ହୋଇ ଯାଇଅଛି । ତାଙ୍କର କୌଣସି ନିର୍ଦ୍ଦିଷ୍ଟ ମତ-ବାଦ ନ ଥିଲା । ଖ୍ରୀଷ୍ଟାନ୍ ସହିତ ଖ୍ରୀଷ୍ଟାନ୍, ମୁସଲମାନ ସହିତ ମୁସଲମାନ ଓ ହିନ୍ଦୁ ସହିତ ହିନ୍ଦୁ ହୋଇ ସେ କୌଣସି ନିର୍ଦ୍ଦିଷ୍ଟ ମତବାଦର ବଶବର୍ତ୍ତୀ ନ ଥିଲେ ଏବଂ ତର୍କ ପ୍ରଭାବରେ ଆସ୍ତିକ ମତ ଖଣ୍ଡନ କରି ସେ ସମ୍ପୂର୍ଣ୍ଣ ନାସ୍ତିକ ହୋଇ ପଡ଼ିଥିଲେ । ପୁରୀର ମ୍ୟାଜିଷ୍ଟ୍ରେଟ୍ ବକ୍ସ-ଓଏଲ୍ ସାହେବ ତାଙ୍କରି ପ୍ରରୋଚନାରେ ସଂସ୍କୃତ ଅଧ୍ୟୟନ କରି ସେ ଭାଷାରେ ବ୍ୟୁତ୍ପତ୍ତି ଲାଭ କରି ପାରିଥିଲେ ଏବଂ ମଧୁସୂଦନ ତାଙ୍କୁ ନିଜର ଜ୍ଞାନଦାତାରୂପେ ସ୍ୱୀକାର କରିଥିଲେ । "ଶ୍ମଶାନ" କବିତାରେ "ମୃତ ଜ୍ଞାନଦାତା ପୁଣି ମୃତ ପରିଜନ, ନୟନ ଅଗ୍ରତେ ଯେତେକ୍ଷେ ନାଚିଲେ ତକ୍ଷଣ ।" ଏହି ପଂକ୍ତିରେ 'ମୃତ ଜ୍ଞାନଦାତା' ବୋଲି ଏହି ପଣ୍ଡିତଙ୍କୁ ଲକ୍ଷ୍ୟ କରାଯାଇଅଛି । କିନ୍ତୁ ପଣ୍ଡିତ ମହୋଦୟଙ୍କ ନାସ୍ତିକତାକୁ ସେ ଆନ୍ତରିକ ଘୃଣା କରୁଥିଲେ । ନିଦର୍ଶନସ୍ୱରୂପ ସେ ଏକ ସ୍ଥାନରେ ଏହି ପଣ୍ଡିତଙ୍କୁହିଁ ଲକ୍ଷ୍ୟ କରି କହିଅଛନ୍ତି—

"ହେ ପଣ୍ଡିତ କ୍ଷୁଦ୍ର ତବ ବୁଦ୍ଧି ମାନଦଣ୍ଡେ
ବିଶ୍ୱରୂପ ମାପିବ ହେ ଅନନ୍ତ ଅପାରେ,
ତୀକ୍ଷ୍ଣ ତର୍କ କ୍ଷୁରଧାରେ ଖଣ୍ଡିଣ ଅଖଣ୍ଡେ
ମାତିବ ହେ ଜଟ୍ୟୋଲ୍ଲାସେ ବୌଦ୍ଧ ଅହଂକାରେ !

ଦୂରେ ଫିଙ୍ଗି ଅଭିମାନ ପ୍ରମାଣ ପ୍ରମାଦ
ପଡ଼ ଆସି ସେ ଅନନ୍ତ ପାଦପଦ୍ମ ତଳେ,
ହେ ଚତୁର ସୁଧୀ, ଗୂଢ଼ ବିଶ୍ୱର-ଚାତୁରୀ
ଭୁଞ୍ଜ ମହାନନ୍ଦେ ମହା ବିଶ୍ୱାସ ମାଧୁରୀ ।"

ନିଜର ଯେ ଜ୍ଞାନଦାତା, ତାଙ୍କୁ ଏପରି ଉପଦେଶ ଦେବାର ଅଧିକାର ମଧୁସୂଦନଙ୍କର ଅବଶ୍ୟ ଥିଲା । କାରଣ ନ୍ୟାୟ ଦର୍ଶନାଦିରେ ପଣ୍ଡିତ ମହୋଦୟ ମଧୁସୂଦନଙ୍କର ଗୁରୁ ହେଲେହେଁ ଭକ୍ତି ଏବଂ ବିଶ୍ୱାସ ପାଇଁ ମଧୁସୂଦନ ତାଙ୍କର ବହୁ ଊର୍ଦ୍ଧ୍ୱରେ । ପଣ୍ଡିତ ମହୋଦୟଙ୍କର ନାସ୍ତିକତା ମଧୁସୂଦନଙ୍କ ପ୍ରାଣରେ ଏତେଦୂର ବାଜିଥିଲା ଯେ, ସେ ପଣ୍ଡିତଙ୍କ ମୃତ୍ୟୁର ଅଳ୍ପକାଳ ପୂର୍ବେ ସ୍ୱପ୍ନରେ ଦେଖିଥିଲେ ଯେ, ପଣ୍ଡିତ ମହୋଦୟ ଏକ ଜ୍ୱଳନ୍ତ କାଷ୍ଠଫଳକ ସ୍କନ୍ଧରେ ଧରି ବ୍ୟାକୁଳଭାବରେ ବଡ଼ଦାଣ୍ଡରେ (ପୁରୀ) ଧାବମାନ ହେଉଅଛନ୍ତି ଏବଂ ପାର୍ଶ୍ୱରେ ଯାହାକୁ ଦେଖୁଅଛନ୍ତି, ତାହା ଉପରକୁ ଅଗ୍ନିଖଣ୍ଡ ନିକ୍ଷେପ କରୁଅଛନ୍ତି । କିନ୍ତୁ ଯେତେ ନିକ୍ଷେପ କଲେହେଁ ତାହା ସ୍କନ୍ଧଦେଶରୁ ଛାଡ଼ୁ ନାହିଁ, ଅଥଚ ପାର୍ଶ୍ୱବର୍ତ୍ତୀ ଲୋକମାନେ ଅଗ୍ନିରେ ଜଳି ଯାଉଅଛନ୍ତି । ଏହିପରି ଧାବମାନ ହୋଇ ଶେଷରେ ପଣ୍ଡିତ ମହୋଦୟ ନରେନ୍ଦ୍ର ପୁଷ୍କରିଣୀରେ ନିମଗ୍ନ ହୋଇ ଶାନ୍ତି ଲାଭ କଲେ । ଏହି ସ୍ୱପ୍ନର ଅଳ୍ପଦିନ ପରେ ପଣ୍ଡିତ ମହୋଦୟ ସେହିପରି ଦଗ୍ଧ ହୋଇ ଅକାଳରେ ପ୍ରାଣ ହରାଇଲେ । ଏହି କୈଶୋର ଅବସ୍ଥାରୁ ମଧୁସୂଦନଙ୍କ ପ୍ରାଣରେ ନାସ୍ତିକତାର ବିଷମୟ ପରିଣାମର ଏହି ଭୀଷଣ ଚିତ୍ରଟି ଅଙ୍କିତ ହୋଇଗଲା ଏବଂ ଭଗବତ୍‌-ପ୍ରୀତିରେ ତାଙ୍କ ଚିତ୍ତ ଦୃଢ଼ତରରୂପେ ନିବଦ୍ଧ ହେଲା । ପଣ୍ଡିତ ମହୋଦୟଙ୍କର ମତ ଯାହାହେଉ, ତାଙ୍କର ଦ୍ୱାରା ମଧୁସୂଦନଙ୍କ ଜ୍ଞାନରାଜ୍ୟ ସର୍ବାଦୌ ମାର୍ଜିତ ହୋଇଥିଲା । ପୁରୀ ସଂସ୍କୃତ ବିଦ୍ୟାଳୟର ପ୍ରଥମ ଉଦ୍ୟୋକ୍ତା ଓ ଭିତ୍ତିସ୍ଥାପକ ହୋଇ ପଣ୍ଡିତ ମହୋଦୟ ନିଖିଳରେ ଜନସାଧାରଣଙ୍କର ସ୍ମରଣୀୟ ହୋଇଅଛନ୍ତି । ବଳରାମପୁରର ମହାରାଜାଙ୍କୁ ପ୍ରବର୍ତ୍ତାଇ ସେ ଏ କାର୍ଯ୍ୟଟି ସମ୍ପନ୍ନ କରିଥିଲେ । ଏହି ସ୍କୁଲଟି ଆଜି

କଲେଜଟିର ପରିଣତ ହୋଇ ପାରିଅଛି, ଏହା ବଡ଼ ଆନନ୍ଦର ବିଷୟ ।

ରାଧାନାଥଙ୍କ ସହିତ ମଧୁସୂଦନଙ୍କର ପରିଚୟ ଯଥାର୍ଥରେ ମଣିକାଞ୍ଚନର ସଂଯୋଗ । ରାଧାନାଥଙ୍କ ଅନ୍ତିମ କାଳ ପର୍ଯ୍ୟନ୍ତ ମଧୁସୂଦନଙ୍କର ତାଙ୍କ ସହିତ ଯେ ନିବିଡ଼ ସମ୍ବନ୍ଧ ପ୍ରତିଷ୍ଠିତ ହୋଇଥିଲା, ତାହା କୌଣସି ଦିନ ଶିଥିଳ ହୋଇ ନାହିଁ । ରାଧାନାଥଙ୍କୁ ଯଥାର୍ଥରେ ସେ "ପୂଜ୍ୟପାଦ କୈଶୋର ଗୁରୁ, ପରମାତ୍ମୀୟ ଯୌବନସଖା, ଚିର ଜୀବନର ପରମ ହିତୈଷୀ, ପବିତ୍ର ସାହିତ୍ୟ-ସେବାବ୍ରତରେ ପଥପ୍ରଦର୍ଶକ, ଚିରନମସ୍ୟ କବି" ରୂପେ ବନ୍ଦନା କରୁଥିଲେ । ରାଧାନାଥ ମଧ୍ୟ ତାଙ୍କୁ ପୁତ୍ରବତ୍ ସ୍ନେହ କରୁଥିଲେ । ନିଜ ଗୃହରେ ମଧୁସୂଦନଙ୍କର ସ୍ମୃତିରକ୍ଷା ଲାଗି ସେ ସ୍ୱୀୟ ପୁତ୍ର ଶ୍ରୀଯୁକ୍ତ ଶଶିଭୂଷଣ ରାୟଙ୍କର ଡାକନାମ "ମଧୁ" ରଖିଥିଲେ ଏବଂ ଏପର୍ଯ୍ୟନ୍ତ ତାଙ୍କ ପରିବାରରେ ଶଶି ବାବୁଙ୍କୁ 'ମଧୁ' ନାମରେ ସମସ୍ତେ ଡାକଥାନ୍ତି । ରାଧାନାଥଙ୍କ ପ୍ରତି ମଧୁସୂଦନଙ୍କର ଐକାନ୍ତିକୀ ଭକ୍ତିର ବହୁ ପ୍ରମାଣ ଦେଖା ଯାଇଅଛି । ତାଳଚେରରେ 'କିଶୋରଚନ୍ଦ୍ର-ସାହିତ୍ୟ-ସଭା'ରେ ରାଧାନାଥ ଯେତେବେଳେ ସଭାପତିର ଆସନ ଗ୍ରହଣ କରିଥିଲେ, ମଧୁସୂଦନ ତାଙ୍କ ସମୀପରେ ଦଣ୍ଡାୟମାନ ହୋଇ ସର୍ବସମକ୍ଷରେ କହିଥିଲେ, "ବର୍ତ୍ତମାନ ସଭାପତି ମହୋଦୟଙ୍କ ଚରଣତଳେ ମୋହର ଅନେକ ଶିଖିବାର ରହିଅଛି ଏବଂ ତାହାଙ୍କ ଚରଣସେବା କରୁ କରୁ ଅନେକ ଶିଖି ପାରିବ ।" ପୁରୀରେ ପଟ-ଘଣ୍ଟାରେ ମଧୁସୂଦନ ଯେତେବେଳେ ପୀଡ଼ିତ ଥିଲେ, ରାଧାନାଥ ବାବୁ ତାଙ୍କୁ ପ୍ରତ୍ୟହ ଦେଖିବାକୁ ଯାଆନ୍ତି । ଏ କଥା ପୂର୍ବରୁ ଉଲ୍ଲେଖ କରା ଯାଇଅଛି । ରାଧାନାଥ ବାବୁ ସ୍ୱୀୟ ସ୍ୱଭାବାନୁଯାୟୀ ତାଙ୍କୁ ବରାବର "ଆପଣ" ସମ୍ବୋଧନ କରୁଥିଲେ । କିନ୍ତୁ ଦିନେ ମଧୁସୂଦନ ତାଙ୍କୁ କହିଲେ, "ମୋତେ ଆପଣଙ୍କର 'ଆପଣ' କହିବା ଅସୁନ୍ଦର । ଆପଣ ଏହା ଛାଡ଼ନ୍ତୁ ।" ଯେଉଁ ରାଧାନାଥ ଶିଶୁଶ୍ରେଣୀର ଛାତ୍ରଙ୍କୁ ମଧ୍ୟ 'ଆପଣ'

ସମ୍ବୋଧନ କରୁଥିଲେ, ସେହିଦିନ ସେ ତାଙ୍କୁ 'ମଧୁ' ବୋଲି ଡାକିବାକୁ ଆରମ୍ଭ କଲେ । ଦିନେ ରାଧାନାଥ ପଚାରିଲେ, "ମଧୁ, ଏପରି ସୁନ୍ଦର ଇଂରାଜୀ କିପରି ଶିଖିଲ ?" ଅନୁସନ୍ଧାନ କରି ସେ ଜାଣିଲେ ଯେ, ତତ୍ପୂର୍ବରୁ ପ୍ରବେଶିକା ପରୀକ୍ଷାର ସମସ୍ତ ପାଠ୍ୟପୁସ୍ତକ ମଧୁସୂଦନ ଅଧ୍ୟୟନ କରି ସାରିଥିଲେ । ମଧୁସୂଦନଙ୍କ ଇଂରାଜୀ ଜ୍ଞାନରେ ରାଧାନାଥ ଏତେଦୂର ସନ୍ତୁଷ୍ଟ ହୋଇ ଯାଇଥିଲେ ଯେ, ପରବର୍ତ୍ତୀ କାଳରେ କର୍ମ-କ୍ଷେତ୍ରରେ ଅଧିକାଂଶ ପ୍ରାଦେଶିକ ରିପୋର୍ଟର ଡ୍ରାଫ୍ଟ ମଧୁସୂଦନଙ୍କ ଦ୍ୱାରା କରାଇ ନେଉଥିଲେ ଏବଂ ସ୍ୱୀୟ ପ୍ରାଦେଶିକ ରିପୋର୍ଟରେ ମଧୁସୂଦନଙ୍କ ଜିଲ୍ଲା ରିପୋର୍ଟର ଉତ୍କୃଷ୍ଟ ଅଂଶମାନ ଉଦ୍ଧାରପୂର୍ବକ କର୍ତ୍ତୃପକ୍ଷଙ୍କର ଦୃଷ୍ଟି ମଧୁସୂଦନଙ୍କର ଅସାଧାରଣ ଦକ୍ଷତା ଓ ଯୋଗ୍ୟତା ପ୍ରତି ଆକର୍ଷଣ କରୁଥିଲେ ।

୧୯୦୮ ଖ୍ରୀଷ୍ଟାବ୍ଦର ଚୈତ୍ର ପୂର୍ଣ୍ଣିମା ଦିନ ନୀରବ ନିଶୀଥରେ ଧୀର ବିନମ୍ରୀ କବି ରାଧାନାଥ ଯେତେବେଳେ ଦେହ ତ୍ୟାଗ କଲେ, କାର୍ଯ୍ୟୋ-ପଲକ୍ଷରେ ମଧୁସୂଦନ ସେତେବେଳେ ପୁରୀରେ ଅବସ୍ଥାନ କରୁଥିଲେ । ପରଦିନ 'ଉତ୍କଳ ସମ୍ମିଳନୀ'ର ପଞ୍ଚମ ଅଧିବେଶନ ପୁରୀଠାରେ ହେବାର ସ୍ଥିର ହୋଇଅଛି । ଉତ୍କଳବାସୀ ପରମ ଉତ୍ସାହରେ ଦୁଇଦିନପାଇଁ ନାନା କାର୍ଯ୍ୟରେ ଲାଗି ପଡ଼ିଅଛନ୍ତି । ସେଦିନ ଗୁରୁବାର ୯ ଘଟିକା ସମୟରେ ମଧୁସୂଦନ ଏହି ଦାରୁଣ ସମ୍ବାଦ ଉତ୍କଳ-ସାହିତ୍ୟକ୍ଷେତ୍ରରେ ସୁପରିଚିତ ସ୍ୱର୍ଗୀୟ ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କଠାରୁ ଶୁଣି ପାରିଲେ । ଏ ସମ୍ବାଦ ପାଇ ତାଙ୍କ ଅନ୍ତର କିପରି ଭାବରେ ଉଦ୍‌ବେଳିତ ହୋଇ ଉଠିଲା, ସେହି ଏକା ଜାଣନ୍ତି । କିନ୍ତୁ ମୃତ୍ୟୁଞ୍ଜୟ ବାବୁ ନିଜ ଦେଖିବା କଥା ଲେଖିଅଛନ୍ତି, "ଯେତେବେଳେ ସେ ଏହି ଦୀନ ଲେଖକଠାରୁ ଏ ଦାରୁଣ ସମ୍ବାଦ ପାଇଲେ, ସେ ଗୋଟିଏ ପ୍ରକୋଷ୍ଠରେ ନୀରବରେ ଦ୍ୱାର ବନ୍ଦ କରି ବସି ରହିଲେ । ସମ୍ମିଳନୀ ମଣ୍ଡପରେ ଅନେକେ ତାଙ୍କର ଉପସ୍ଥିତି ପ୍ରତୀକ୍ଷା କରୁଥିଲେ, କିନ୍ତୁ ସନ୍ଧ୍ୟା ପର୍ଯ୍ୟନ୍ତ ଜଣା ଯାଇଅଛି

ଯେ, ସେ ଭକ୍ତ ପ୍ରକୋଷ୍ଠରୁ ବାହାରକୁ କେବେ ଯାଇ ନାହାନ୍ତି ।" ଏହି ଘଟଣାରେ ସେ ଲେଖିଅଛନ୍ତି—

"ସହସ୍ର ସ୍ମୃତିର ଅଶ୍ରୁ-ମିଶା ଆତୁରତା
ବହୁ ବରଷର ହର୍ଷ ବିଷାଦବାରତା
ଆଲୋଡ଼ିଇ ଏବେ ଏହି ଶୋକାର୍ତ୍ତ ଅନ୍ତର,
କି ଲେଖିବ ? ଚଳୁ ନାହିଁ ଲେଖନୀ ମୋହର !"

ରାଧାନାଥଙ୍କ ସହିତ ତାଙ୍କର ସମ୍ପର୍କ କେତେଦୂର ଘନିଷ୍ଠ ଥିଲା, ତାହା ନିମ୍ନୋକ୍ତ ପଂକ୍ତିଗୁଡ଼ିକରୁ ପ୍ରତୀୟମାନ ହେବ ।

"କବି ମାତ୍ର ରାଧାନାଥ ସାଧାରଣଙ୍କର,
କିନ୍ତୁ ଦେବ, ଜାଣୁ ତୁହି କି ଥିଲେ ମୋହର,
କୈଶୋରର ଶିକ୍ଷାଗୁରୁ ସଦା ସୁବତ୍ସଳ,
ଯୌବନର ପ୍ରାଣବନ୍ଧୁ ଏକାନ୍ତ ସରଳ,
ସାହିତ୍ୟସାଧନା କ୍ଷେତ୍ରେ ଶିକ୍ଷାଦାତା ସଖା ।"

ଏ ଘଟଣାଟି ସାମାନ୍ୟ ବୋଲି ମନେ କରିବାକୁ ହେବ ନାହିଁ । ଆଧୁନିକ ଯୁଗରେ ବନ୍ଧୁ ବନ୍ଧୁ ମଧ୍ୟରେ, ବିଶେଷ ଗୁରୁ ଶିଷ୍ୟ ମଧ୍ୟରେ ଏ ଧରଣର ସମ୍ପର୍କ ସମ୍ପୂର୍ଣ୍ଣ ବିରଳ । ଏହା ଅଲୌକିକ, ସ୍ୱର୍ଗୀୟ । ଏହି ଘଟଣାରେ ସେ ପ୍ରବଳ ଶୋକାବେଗରେ ସ୍ଥାନାନ୍ତରରେ ଲେଖିଥିଲେ ।

"ଏକାନ୍ତେ ଚରଣତଳେ ସୁଖେ ବସିବାର
କାହିଁଗଲା ମୋର ସେହି ପୁଣ୍ୟ ଅଧିକାର ?"

ରାଧାନାଥଙ୍କ ଚରଣତଳେ ବସିବାକୁ ସେ ଯଥାର୍ଥରେ ନିଜର ଏକ ପୁଣ୍ୟ ଅଧିକାର ବୋଲି ଜ୍ଞାନ କରୁଥିଲେ । ଏପରି କି, ରାଧାନାଥ ବାବୁଙ୍କର ମୃତ୍ୟୁ ପରେ ସେ ବହୁବାର ତାଙ୍କ ଗୃହକୁ ଯାଇ ତାଙ୍କର ବିଧବା ସହଧର୍ମିଣୀଙ୍କ ଚରଣଧୂଳି ମସ୍ତକରେ ଗ୍ରହଣ କରୁଥିଲେ । ମାତ୍ର କୌଣସି ଦିନ ଯୋତା ପିନ୍ଧି ସେଠାକୁ ଯିବାର

ଦେଖା ଯାଇ ନାହିଁ । ଶଶି ବାବୁ ଏ ସମ୍ପର୍କରେ ଲେଖିଅଛନ୍ତି, "କେତେଥର ତୁମ୍ଭଙ୍କୁ ଯୋତା ଆଣିବାକୁ ଅନୁରୋଧ କରିଅଛି, ମାତ୍ର ପ୍ରତିଥର ତୁମ୍ଭେ ଅତି ବିନୀତ ଭାବରେ ମୋହର ଅନୁରୋଧ ପ୍ରତ୍ୟାଖ୍ୟାନ କରିଅଛ ।" ଏ ପ୍ରଗାଢ଼ ଗୁରୁଭକ୍ତିର ନିଦର୍ଶନ କେଉଁଠାରେ ମିଳେ ?

ଶିକ୍ଷକତା କରୁଥିବା ସମୟରେ ରାଧାନାଥ ବୁଝି ପାରିଥିଲେ ଯେ, ମଧୁସୂଦନଙ୍କର ସାହିତ୍ୟ ପ୍ରତି ଯଥେଷ୍ଟ ଅନୁରାଗ ଅଛି । ସେହି ସମୟରେ "ମେଘଦୂତ"ର ଅନୁବାଦ କରି ସେ ମଧୁସୂଦନଙ୍କୁ ତାହା ବାରମ୍ବାର ଶୁଣାଉଥିଲେ ଏବଂ ମଧୁସୂଦନ ପ୍ରାଚୀନ ଓଡ଼ିଆ ସାହିତ୍ୟ ଚର୍ଚ୍ଚା କରିବାପାଇଁ ରାଧାନାଥଙ୍କୁ ଗୁରୁ ରୂପରେ ଲାଭ କରି କୃତ-କୃତ୍ୟ ହୋଇଥିଲେ । ଦୀନକୃଷ୍ଣ, ଅଭିମନ୍ୟୁ ପ୍ରଭୃତି କବିମାନଙ୍କର ଲଳିତ ମଧୁର ପଦାବଳୀ ସେ ଅତି ଆନନ୍ଦରେ ପାଠ କରୁଥିଲେ । ଅନେକ ସମୟରେ ଗୁରୁ ଶିଷ୍ୟ ଦୁହେଁ ସମୁଦ୍ର ତୀର ପ୍ରଭୃତି ପୁରୀର ପ୍ରାକୃତିକ ରମଣୀୟ ସ୍ଥାନ ସକଳ ସନ୍ଦର୍ଶନ କରୁଥିଲେ । ଜ୍ୟୋତ୍ସ୍ନାପ୍ଲାବିତ ସାଗରର ସୁନୀଳ ଜଳରାଶିରୁ ଉତ୍ଥିତ ଉଦ୍ଦାମ ଗମ୍ଭୀର ସଙ୍ଗୀତ ଶ୍ରବଣ କରି ବାଳକ ମଧୁସୂଦନ ଆନନ୍ଦରେ ଅଭିଭୂତ ହୋଇ ପଡ଼ୁଥିଲେ । ତାଙ୍କର ସୁବୋଧ ପ୍ରାଞ୍ଜଳ ଅନେକ କବିତାରେ ଅତ୍ୟନ୍ତ ସରଳ ଭାବରେ ଏହି ପ୍ରକୃତିର ବର୍ଣ୍ଣନା ଦେଖିବାକୁ ମିଳେ । ସନ୍ଧ୍ୟା କବିତାଟିରେ ଏହି ସାରଲ୍ୟ ଓ ପ୍ରକୃତିପର୍ଯ୍ୟବେକ୍ଷଣରେ ନିପୁଣତା ସୁସ୍ପଷ୍ଟ ଦେଖାଯାଇଅଛି ।

ଅସ୍ତ ହେଲେ ଦିନମଣି ହେଲା ଦିନ ଶେଷ,
ଆସଇ ରଜନୀ ରାଣୀ ଧରି କଳାବେଶ ।
ସନ୍ଧ୍ୟା ହେଲା ସନ୍ଧ୍ୟା ହେଲା ବୋଲି ପକ୍ଷିଗଣ
ରବ ଦେଇ ଯେଝା ବାସେ କରନ୍ତି ଗମନ ।
ଧୂଳି ଉଡ଼ାଇଣ ଦାଣ୍ଡେ କରି ହମ୍ବାରଡ଼ି
ଯାଉଛନ୍ତି ଗୋରୁପଲ ଗୋଠରୁ ବାହୁଡ଼ି ।

ଏତେଦୂର ଶାନ୍ତ ସଂଯତ ସହଜ ଭାବରେ ସନ୍ଧ୍ୟାର ରୂପବର୍ଣ୍ଣନାକୁ ଏପରି ହୃଦୟଗ୍ରାହୀ କରିବା ନିତାନ୍ତ ସାଧାରଣ କବି ପକ୍ଷରେ ସମ୍ଭବ ନୁହେଁ।

—✻C✻—

## ଚତୁର୍ଥ ପରିଚ୍ଛେଦ ।

### ଉଚ୍ଚଶିକ୍ଷା ।

### କଲେଜରେ ଅଧ୍ୟୟନ ।

ଏଣ୍ଟ୍ରାନ୍‌ସ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ମଧୁସୂଦନ ପୁରୀ ଜିଲ୍ଲା ସ୍କୁଲର ସର୍ବପ୍ରଥମ ସ୍ଥାନ ଅଧିକାର କଲେ । ଫଳତଃ ତାଙ୍କୁ ମାସିକ ଦଶଟଙ୍କା ଲେଖାଏଁ ବୃତ୍ତି ମିଳିଥିଲା । ଏହି ପରୀକ୍ଷାର କୃତକାର୍ଯ୍ୟତା ଲାଗି ମଧୁସୂଦନ ବହୁପରିମାଣରେ ଗୋପୀନାଥଙ୍କଠାରେ ଋଣୀ ଥିଲେ । ଏଣ୍ଟ୍ରାନ୍‌ସ ପରୀକ୍ଷାରେ ସେ ୧୮୬୧ ଖ୍ରୀଷ୍ଟାବ୍ଦରେ ଉତ୍ତୀର୍ଣ୍ଣ ହେଲେ । ତତ୍ପରେ ସେ ମାତୃସମା ମାତୃଷ୍ୱସା ଏବଂ ପ୍ରାଣପ୍ରିୟ ସହୋଦର ଜଗନ୍ନାଥଙ୍କୁ ସଙ୍ଗରେ ନେଇ ଅଧ୍ୟୟନ ଅର୍ଥରେ କଟକ ଯାତ୍ରା କଲେ । ଭଗୀରଥି ବାବୁ ଦ୍ୱିତୀୟବାର ଦାରପରିଗ୍ରହ କରିଥିଲେ ଏବଂ ମଧୁସୂଦନଙ୍କର ବିମାତାଙ୍କର ଭଗିନୀ ଏହି ମାତୃଷ୍ୱସା ମଧୁସୂଦନ ଓ ଜଗନ୍ନାଥଙ୍କୁ ତାଙ୍କର ସହୋଦରଙ୍କ ଗର୍ଭଜାତ ସନ୍ତାନମାନଙ୍କ ଅପେକ୍ଷା ବହୁ-ପରିମାଣରେ ଭଲ ପାଉଥିଲେ ।

ସେ ସମୟରେ କଟକରେ ରେଭେନ୍‌ସା କଲେଜ ସ୍ଥାପିତ ହୋଇ ନ ଥିଲା । କଟକ ହାଇ ସ୍କୁଲରେ ( ବର୍ତ୍ତମାନର କଲେଜରେ ) ଏଫ୍. ଏ. ପରୀକ୍ଷା ଦେବାପାଇଁ ଦୁଇଗୋଟି ଅତିରିକ୍ତ ଶ୍ରେଣୀ ସଂଲଗ୍ନ ଥିଲା । ୰ଚଣ୍ଡୀଚରଣ ବନ୍ଦ୍ୟୋପାଧ୍ୟାୟ ସ୍କୁଲର ପ୍ରଧାନ ଅଧ୍ୟାପକ ଥିଲେ ଏବଂ ତାଙ୍କ ଅଧୀନରେ ୰ ରାଜକିଶୋର ବନ୍ଦ୍ୟୋପାଧ୍ୟାୟ ଓ ୰ହରିନାଥ ଭଟ୍ଟାଚାର୍ଯ୍ୟ ପ୍ରଭୃତି କେତେକ ଜଣ ଅଧ୍ୟାପକ ଥିଲେ । ସେମାନଙ୍କ

ମଧ୍ୟରେ ରାଜକିଶୋର ବାବୁ ବଙ୍ଗଳାରେ ଜଣେ ସୁଲେଖକ ଓ ଇଂରେଜୀରେ ସୁପଣ୍ଡିତ ଥିଲେ । 'ନିବନ୍ଧକଳାପ' ଓ 'କାବ୍ୟକଳାପ' ନାମକ ବଙ୍ଗଳା ଗ୍ରନ୍ଥଦ୍ୱୟ ଏହାଙ୍କ ଦ୍ୱାରା ରଚିତ ହୋଇଥିଲା । ସେ ଏମ୍. ଏ., ବି. ଏଲ୍, ପାଶ୍ କରି ରାୟଚାନ୍ଦ, ପ୍ରେମଚାନ୍ଦ ବୃତ୍ତି ପରୀକ୍ଷାରେ ସଫଳତା ଲାଭ କରିଥିଲେ । ଦର୍ଶନାଧ୍ୟାପକ ହରିନାଥ ଭଟ୍ଟାଚାର୍ଯ୍ୟ ଯେପରି ସୁପଣ୍ଡିତ, ସେହିପରି ମଧ୍ୟ ବଡ଼ ଚରିତ୍ରବାନ୍ ପୁରୁଷ ଥିଲେ । ସହାଧ୍ୟାୟୀରୂପେ ମଧୁସୂଦନ ଯେଉଁମାନଙ୍କୁ ଲାଭ କରିଥିଲେ, ସେମାନଙ୍କ ମଧ୍ୟରେ ପାଞ୍ଚ ଜଣଙ୍କର ନାମ ଉଲ୍ଲେଖଯୋଗ୍ୟ । ଭଗବତୀଚରଣ ଚଟ୍ଟର୍ଯ୍ୟା ( ଗଞ୍ଜାମର ଭୂତପୂର୍ବ ଡେପୁଟୀ ଇନ୍‌ସ୍ପେକ୍ଟର ), ବିପ୍ରଚରଣ ଚଟ୍ଟର୍ଯ୍ୟା (ଗଞ୍ଜାମର ଭୂତପୂର୍ବ ସରକାରୀ ଉକିଲ), ଚତୁର୍ଭୁଜ ପଟ୍ଟନାୟକ ( ଭୂତପୂର୍ବ ଓଡ଼ିଆ ଟ୍ରାନ୍ସଲେଟର୍ ) ବଳରାମ ଦାସ (ପେନ୍‌ସନ୍ ପ୍ରାପ୍ତ ଡେପୁଟୀ ମାଜିଷ୍ଟ୍ରେଟ) ଏବଂ ପ୍ୟାରୀମୋହନ ଆଚାର୍ଯ୍ୟ (ଏକାଡେମିର ପ୍ରତିଷ୍ଠାତା) । "ବିପ୍ରଚରଣ ପରିହାସକୁଶଳ, ଜ୍ୟେଷ୍ଠ ଭଗବତୀ ଭାବଗମ୍ଭୀର, ଚତୁର୍ଭୁଜ ଚଳଚଞ୍ଚଳ ବା କ୍ଷିପ୍ରଭାବାପନ୍ନ, ବଳରାମ ରସିକତାପୂର୍ଣ୍ଣ, ପ୍ୟାରୀମୋହନ ଅଗ୍ନିସମ ତେଜସ୍ୱୀ ଏବଂ ମଧୁସୂଦନ ଉନ୍ନତରୁଚି ଏବଂ ଉଚ୍ଚକଥାପ୍ରିୟ ଥିଲେ ।" ଏପରି ବିଭିନ୍ନ ରୁଚିର ହୋଇ ମଧ୍ୟ ସେମାନଙ୍କର ପରସ୍ପର ମଧ୍ୟରେ ସ୍ନେହସୌହାର୍ଦ୍ଦ ଅକ୍ଷୁଣ୍ଣ ରହିଥିଲା !

ଅଧ୍ୟାପକ ରାଜକିଶୋର ବାବୁ ଛାତ୍ରମାନଙ୍କ ସହିତ ଘନିଷ୍ଠଭାବରେ ସଂଶ୍ଳିଷ୍ଟ ଥିଲେ । ନାନାଭାବରେ ତାଙ୍କର ବ୍ୟକ୍ତିତ୍ୱ ଛାତ୍ରମାନଙ୍କୁ ପ୍ରଭାବାନ୍ୱିତ କରି ପାରିଥିଲା । ଛାତ୍ରମାନଙ୍କ ପ୍ରତି ତାଙ୍କର କର୍ତ୍ତବ୍ୟ କେବଳ ଅଧ୍ୟାପନାରେହିଁ ଆବଦ୍ଧ ନ ଥିଲା । କେତେବେଳେ ସେମାନଙ୍କ ସହିତ ହାସ୍ୟାଳାପ, କେତେବେଳେ ସେମାନଙ୍କୁ ଘେନି ପ୍ରକୃତି ମଧ୍ୟରେ ନିଷ୍କାମ ଭ୍ରମଣ ଇତ୍ୟାଦିଦ୍ୱାରା ସେ ଏକାଧାରରେ

ଛାତ୍ରମାନଙ୍କର ଅଧ୍ୟାପକ ଓ ବନ୍ଧୁ ଥିଲେ । ତାଙ୍କର ଅଧ୍ୟାପନା ମଧ୍ୟ ବିଶିଷ୍ଟଭାବର ଥିଲା । ତାହା ତୁଳନା ଓ ସମାଲୋଚନାମୂଳକ, ହୋମରଙ୍କ ସହିତ ବାଲ୍ମୀକି, ବ୍ୟାସଙ୍କ ସହିତ ମିଲ୍ଟନ୍, କାଳିଦାସଙ୍କ ସଙ୍ଗେ ସେକ୍ସପିୟର ପ୍ରଭୃତିଙ୍କର ତୁଳନା କରି ଶିକ୍ଷା ଦେବାଦ୍ୱାରା ଛାତ୍ରମାନଙ୍କର ଜ୍ଞାନବୃତ୍ତିକୁ ପ୍ରଶସ୍ତତର କରିବାରେ ସେ ସଦା ସଚେଷ୍ଟ ଥିଲେ । ରାମାୟଣ ଓ ମହାଭାରତ ତାଙ୍କର ଅତି ପ୍ରିୟ ଗ୍ରନ୍ଥ ଥିଲା ଏବଂ ସେଥିଲିଖିତ କଥାମାନ ଅତି ସ୍ପଷ୍ଟଭାବରେ ତାଙ୍କର ସ୍ମରଣରେ ଥିଲା । ଅନେକ ସମୟରେ ସେ ଛାତ୍ରମାନଙ୍କୁ ଏହି ଦୁଇ ମହାକାବ୍ୟ ସମ୍ବନ୍ଧରେ ସୂକ୍ଷ୍ମ ପ୍ରଶ୍ନମାନ ପଚାରିବା ପାଇଁ ଆଦେଶ କରୁଥିଲେ ଏବଂ ନିଜେ ଅତି ବିଚକ୍ଷଣତା ସହ ସେ ସବୁର ସମାଧାନ କରୁଥିଲେ । ମଧୁସୂଦନ ନିଜେ ଶିକ୍ଷକତା କରୁଥିବା ସମୟରେ ମଧ୍ୟେ ମଧ୍ୟେ ଛାତ୍ରମାନଙ୍କ ସମକ୍ଷରେ ହାସ୍ୟାଳାପ କରି ସେମାନଙ୍କ ଚିତ୍ତବିନୋଦନ କରୁଥିବାର ଯେ ଶୁଣାଯାଏ, ତାହା ଏହି ଅଧ୍ୟାପକଙ୍କର ପ୍ରଭାବଜନିତ ବୋଲି ଅନୁମିତ ହୁଏ ।

ଦର୍ଶନାଧ୍ୟାପକ ହରିନାଥ ଭଟ୍ଟାଚାର୍ଯ୍ୟଙ୍କର ସ୍ୱଚ୍ଛ ନିର୍ମଳ ଚରିତ୍ର ମଧୁସୂଦନଙ୍କଠାରେ ସମ୍ପୂର୍ଣ୍ଣ ପ୍ରତିଫଳିତ ହୋଇଥିଲା ଏବଂ ଏହି ସମୟରୁ ତାଙ୍କର ବ୍ରାହ୍ମଧର୍ମ ପ୍ରତି ଆସ୍ଥା ଜାଗ୍ରତ ହୋଇଥିଲା । ହରିନାଥଙ୍କ ପ୍ରଶାନ୍ତ ଭାବ ଦର୍ଶନରେ ଛାତ୍ରମାନଙ୍କ ଚିତ୍ତରେ ଯୁଗପତ୍ ଭୟ ଓ ଭକ୍ତିର ସଞ୍ଚାର ହୋଇଥିଲା । ସେ ଶ୍ରେଣୀରେ ପ୍ରବେଶ କରିବା ମାତ୍ରକେ ତାହା ସମ୍ପୂର୍ଣ୍ଣ ନିସ୍ତବ୍ଧତା ଧାରଣ କରୁଥିଲା । ମଧୁସୂଦନଙ୍କ ଶିକ୍ଷକତା କାଳରେ ତାଙ୍କର ଛାତ୍ରମାନେ ଏହି ଭାବ ସନ୍ଦର୍ଶନ କରିଅଛନ୍ତି ।

ସବୁ ଛାତ୍ରମାନଙ୍କ ମଧ୍ୟରେ ମଧୁସୂଦନ କି ଚରିତ୍ର, କି ଅଧ୍ୟୟନ ସକଳ ବିଷୟରେ ଅଗ୍ରଣୀ ଥିଲେ । ଫଳସ୍ୱରୂପ ସେ ୧୮୭୧ ଅବ୍ଦରେ ସୁଖ୍ୟାତିସହକାରରେ ଏଫ୍. ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ଏବଂ

ତତ୍ପରେ ବି. ଏ. ପଢ଼ିବା ପାଇଁ ମନ ବଳାଇଲେ । ବି. ଏ. ପଢ଼ିବା ପାଇଁ ମଧୁସୂଦନଙ୍କର ଆର୍ଥିକ ଭାବନା ବିଶେଷ ନ ଥିଲା । କାରଣ ଏଫ୍. ଏ. ପରୀକ୍ଷାରେ ସେ ମାସିକ ଟ ୨୦୲ ବୃତ୍ତି ପାଇଲେ । ବି. ଏ. ପଢ଼ିବା ପାଇଁ ସେ ପୂର୍ବରୁ ସମ୍ପୂର୍ଣ୍ଣରୂପେ ପ୍ରସ୍ତୁତ ଥିଲେ । ଏଣ୍ଟ୍ରାନ୍ସ ପଢ଼ିବା କାଳରେ ସେ ଏଫ୍.ଏ. ଶ୍ରେଣୀର ପାଠ୍ୟ ଯେପରି ଅଧ୍ୟୟନ କରି ସାରିଥିଲେ, ବର୍ତ୍ତମାନ ସେହିପରି ବି. ଏ. ର ପାଠ୍ୟପୁସ୍ତକମାନ ଅଧ୍ୟୟନ କରିଥିଲେ । କିନ୍ତୁ ତାହା ପିତାଙ୍କର ଇଚ୍ଛାବିରୁଦ୍ଧ କାର୍ଯ୍ୟ ହେବ ବୋଲି ସେ ସେ ସଂକଳ୍ପରୁ ବିରତ ହୋଇଥିଲେ । ପରବର୍ତ୍ତୀ କାଳରେ କ୍ଷୋଭ ପ୍ରକାଶ କରି ସେ ଅନେକ ଥର କହୁଥିଲେ, "ମୁଁ ଯେବେ କଲିକତା ଯାଇଥାନ୍ତି, ବିଶ୍ୱବିଦ୍ୟାଳୟର ଶ୍ରେଷ୍ଠ ଉପାଧି ସଙ୍ଗେ ସଙ୍ଗେ କର୍ମମୟ ଭାରତରାଜଧାନୀର ଉତ୍ସାହ, କର୍ମଠତା, ସଂସର୍ଗ ଓ ସଦନୁଷ୍ଠାନ ଅନୁକରଣ କରି, ବିଶେଷତଃ ମହର୍ଷି ଦେବେନ୍ଦ୍ରନାଥ ଓ କେଶବଚନ୍ଦ୍ରଙ୍କ ସାନ୍ନିଧ୍ୟ ଲାଭ କରି ଜୀବନକୁ ବଡ଼ କରି ପାରିଥାନ୍ତି ।"

ସେ ଆଜୀବନ କଠୋର ଅଧ୍ୟବସାୟୀ ଥିଲେ । ଯେଉଁବେଳେ ପଢ଼ିବା ଲେଖିବା ଅଥବା କୌଣସି ଉଚ୍ଚ ପ୍ରସଙ୍ଗର ଆଲୋଚନା କରିବା ବ୍ୟତୀତ ସେ ଅନର୍ଥକ ସମୟ ନଷ୍ଟ କରିବାକୁ ଭଲ ପାଉ ନ ଥିଲେ । ସେଥିଲାଗି ସେ ବଡ଼ ଦମ୍ଭସହକାରେ କହି ପାରୁଥିଲେ, "ମଧୁସୂଦନ ତା ଜୀବନରେ ବର୍ଣ୍ଣାଶୁଦ୍ଧି କରି ନାହିଁ କିମ୍ବା ଦୈନିକ ପାଠ ପ୍ରସ୍ତୁତ ନ କରି ଶ୍ରେଣୀରେ ଅପ୍ରସ୍ତୁତ ହୋଇ ନାହିଁ ।" ସହାଧ୍ୟାୟୀମାନେ ତାଙ୍କର ବିଦ୍ୟା-ବୁଦ୍ଧି ବିଷୟରେ ଏତେଦୂର ନିର୍ଭରଶୀଳ ଥିଲେ ଯେ, ସେମାନଙ୍କର ଛୁଟି ଦରଖାସ୍ତ ଆଦି ଯେତେବେଳେ ଯାହା ଦରକାର, ସେ ସବୁ ମଧୁସୂଦନଙ୍କ ହାତରେ ଲେଖାଇ ନେଉଥିଲେ । କାରଣ ସେମାନଙ୍କର ବିଶ୍ୱାସ, ମଧୁ-ସୂଦନ ଯାହା ଲେଖି ଦିଅନ୍ତି, ଶିକ୍ଷକ ତାହା ଗ୍ରହଣ କରି ମଞ୍ଜୁର କରନ୍ତି । ମଧୁସୂଦନଙ୍କର ହସ୍ତାକ୍ଷରଗୁଡ଼ିକ ବଡ଼ ସୁନ୍ଦର, ସୁସ୍ପଷ୍ଟ ଥିଲା । ପିଲାମାନଙ୍କ

ପଢ଼ିବା ପାଇଁ ଶିଶୁବୋଧ ନାମକ ଖଣ୍ଡିଏ ବହି ସେ ଲେଖିଥିଲେ । ସେ ଖଣ୍ଡି ଓଡ଼ିଶାର ପ୍ରାଥମିକ ବିଦ୍ୟାଳୟମାନଙ୍କରେ ପଢ଼ା ଯାଉଥିଲା । ହସ୍ତାକ୍ଷର ବିଷୟରେ ସେଥିରେ ଲେଖାଅଛି,

“ହସ୍ତାକ୍ଷର ପ୍ରତି ଯତ୍ନ ଅଧିକ
ନ କଲେ ନ ହେବ ଭଲ ଲେଖକ ।”

ଏଫ୍. ଏ. ଶ୍ରେଣୀରେ ପଢ଼ିବା ସମୟରେ ମଧୁସୂଦନ ଗୋଟିଏ ଗୋଟିଏ ଇଂରେଜୀ କବିତାର ଅନୁବାଦ କରୁଥିଲେ । ତାଙ୍କୁ ଦେଖି ବଳରାମ ବାବୁ କୁମାରସମ୍ଭବର ଅନୁବାଦ କରିଥିଲେ । କିନ୍ତୁ ମଧୁସୂଦନଙ୍କର ଅନୁବାଦଗୁଡ଼ିକ ସର୍ବୋତ୍କୃଷ୍ଟ । ପରବର୍ତ୍ତୀ କାଳରେ ସେ ଯେଉଁ ସବୁ ଅନୁବାଦ କରିଥିଲେ, ନ ଜାଣିଥିବା ଲୋକ ତାକୁ ମୌଳିକ ଲେଖା ବୋଲି ହିଁ ବିଶ୍ୱାସ କରିବ । ବଳରାମ ବାବୁଙ୍କ ସହିତ ପ୍ରାଚୀନ ଓଡ଼ିଆ ସାହିତ୍ୟ ଚର୍ଚ୍ଚା କରିବା ପାଇଁ ମଧୁସୂଦନଙ୍କୁ ବହୁ ସୁଯୋଗ ମିଳି ଯାଇଥିଲା । ତାଳପତ୍ର ପୋଥିରୁ ହିଁ ବୈଦେହୀଶ ବିଳାସ, ବିଦଗ୍ଧଚିନ୍ତାମଣି ଆଦିର ଚର୍ଚ୍ଚା କରିବାକୁ ହେଉଥିଲା । ସେତେବେଳେ ମାତ୍ର ଦୁଇ ଖଣ୍ଡି ଓଡ଼ିଆ ଛପା ବହି ମିସନରିମାନଙ୍କ ଦ୍ୱାରା ମୁଦ୍ରିତ ହୋଇଥିଲା । ତାହା “ନୀତିବୋଧ” ଓ “ହିତୋପଦେଶ” । କିନ୍ତୁ ବଙ୍ଗସାହିତ୍ୟ ସେତେବେଳକୁ ଓଡ଼ିଆ ତୁଳନାରେ ଅନେକ ଦୂର ଅଗ୍ରସର ହୋଇ ଯାଇଥିଲା । ସୁତରାଂ ତାଙ୍କର ଭାଷାଚର୍ଚ୍ଚା ଅଧିକାଂଶରେ ବଙ୍ଗଳା ସାହାଯ୍ୟରେ ହିଁ ହୋଇଥିଲା । ସେ ଅବିଶ୍ରାନ୍ତ ଦିବାରାତି ଲିଖନ ଓ ଅଧ୍ୟୟନରେ ବ୍ୟସ୍ତ ଥିଲେ । ଅଧ୍ୟୟନକାଳରେ ସେ ଅନେକ ସମୟ ଚିତ ହୋଇ ଶୋଇ ରହୁଥିବାରୁ ତାଙ୍କର ଦୃଷ୍ଟିଶକ୍ତିର ହ୍ରାସ ହୋଇ ପଡ଼ିଥିଲା ଏବଂ ଏହି କାରଣରୁ ସେ ତାଙ୍କର ଛାତ୍ରମାନଙ୍କୁ ଏପରି ଭାବରେ ଅଧ୍ୟୟନ କରିବାକୁ ବାରଣ କରୁଥିଲେ ।

—o—

# ପଞ୍ଚମ ପରିଚ୍ଛେଦ

## ବ୍ରହ୍ମୋପାସନା ।

ମଧୁସୂଦନଙ୍କର ବାଲ୍ୟାବସ୍ଥାରୁ ଧର୍ମ ଓ ଈଶ୍ୱରଭକ୍ତିରେ ପ୍ରଗାଢ଼ ବିଶ୍ୱାସ ଥିଲା । ସ୍କୁଲରେ ଅଧ୍ୟୟନକାଳରେ ସେ ପ୍ରତିଦିନ ପୁଷ୍ପ କୁଣ୍ଢାଇବେଣ୍ଟ ସାହି ବାନାବର ମହାଦେବଙ୍କ ପୁଷ୍ପ ନୈବେଦ୍ୟ ଦେଇ ଭକ୍ତିଉଦ୍‌ଗତଚିତ୍ତରେ "କେଉଁ କର୍ମସ୍ଥାନ କରଇ ଜଣାଣ ବାଲୁକେଶ୍ୱରଙ୍କ ଗୁହ୍ନି" ଏହି ସ୍ତୋତ୍ରଟି ଆମୂଳଚୂଳ ଆବୃତ୍ତି କରି ନ ସେଇବା ପର୍ଯ୍ୟନ୍ତ କଦାପି ଜଳ ଗ୍ରହଣ କରୁ ନ ଥିଲେ । ପୁରୀ ଅବସ୍ଥାନ କାଳରେ ଅନ୍ୟ ଏକ ହରିଦାସଙ୍କ ସହିତ ତାଙ୍କର ପରିଚୟ ହୋଇଥିଲା । ସେ ଜଣେ ଭଗବଦ୍‌ଭକ୍ତିପରାୟଣ ବାବାଜୀ, ସିଂହଦ୍ୱାର ସମୀପସ୍ଥ ମଠରେ ଅବସ୍ଥାନ କରୁଥିଲେ । ଜଗନ୍ନାଥ ଦର୍ଶନ କରିବାକୁ ଯାଇ ମଧୁସୂଦନ ପ୍ରତିଦିନ ତାଙ୍କ ସହିତ ଆଳାପ କରନ୍ତି । ବାବାଜୀ ଗୋଟିଏ ଅଳ୍ପବୟସ୍କ ବାଳକର ଏପରି ସାଧୁସମାଦର ଓ ଧର୍ମଭାବ ସନ୍ଦର୍ଶନ କରି ପରମ ପ୍ରୀତି ଲାଭ କରିଥିଲେ । ତେଣୁ ତାଙ୍କୁ ଦେଖିବା ମାତ୍ରେ ସେ ସସ୍ନେହରେ ତାଙ୍କ ମସ୍ତକରେ ହସ୍ତ ଚାଳନ କରି ଆଶୀର୍ବାଦ କରୁଥିଲେ ଏବଂ ମଧ୍ୟେ ମଧ୍ୟେ ତାଙ୍କ ମୁଖରୁ ଗୀତିଶ୍ଳୋକମାନ ଶ୍ରବଣ କରି ସେ ସକଳର ବ୍ୟାଖ୍ୟା ସହ ଅର୍ଥ ବୁଝାଇ ଦେଉଥିଲେ । ମଧୁସୂଦନ ଉତ୍ତରୋତ୍ତର ଉତ୍ସାହିତ ହୋଇ ନୂତନ ନୂତନ ଶ୍ଳୋକମାନ ନେଇ ତାଙ୍କ ନିକଟରେ ଉପସ୍ଥାପିତ କରୁଥିଲେ ।

ଏହି ସମୟରେହିଁ ଏକେଶ୍ୱରତତ୍ତ୍ୱ ପ୍ରତି ତାଙ୍କର ଚିତ୍ତ ଆକୃଷ୍ଟ ହୋଇଥିଲା । ଶ୍ରେଣୀରେ ଇତିହାସ ଅଧ୍ୟୟନକାଳରେ ବୁଦ୍ଧଚରିତ ପାଠ ଓ ଶ୍ରବଣ କରି ବୌଦ୍ଧଧର୍ମ ପ୍ରତି ତାଙ୍କ ଅନ୍ତର ଆକୃଷ୍ଟ ହୋଇ

ପଡ଼ିଲା ଏବଂ ଶିକ୍ଷକଙ୍କୁ ଏହି ଧର୍ମ ବିଷୟରେ ନାନା ଜଟିଳ ପ୍ରଶ୍ନ ପଶ୍ବର ସେସକଳର ମୀମାଂସାରେ ବ୍ୟାପୃତ ହେଲେ । ପୁରୀ ଜିଲ୍ଲା ସ୍କୁଲରେ ମଧୁସୂଦନଙ୍କ ଶ୍ରେଣୀରେ ସେତେବେଳେ ରାଧାନାଥହିଁ ଇତିହାସ ଅଧ୍ୟାପନା କରୁଥିଲେ । ସୁତରାଂ ଉପଯୁକ୍ତ ଗୁରୁଙ୍କ ନିକଟରେ ଉପଯୁକ୍ତ ଶିଷ୍ୟଙ୍କ ଶିକ୍ଷା ସମ୍ପନ୍ନ ହୋଇଥିଲା । ମଧୁସୂଦନଙ୍କୁ ସାହିତ୍ୟସଂସ୍କାରକ, ଶିକ୍ଷାସଂସ୍କାରକ ଅଥବା ସମାଜସଂସ୍କାରକ ଆଦି ଯେ କୌଣସି ଦିଗରୁ ଦେଖିବାକୁ ଗଲେ ସକଳ ମୂଳରେ ସେହି ଐକାନ୍ତିକୀ ଈଶ୍ୱରଭକ୍ତି, ସେହି ଧୀର ନମ୍ର ସ୍ୱଭାବର ପରିଚୟ ମିଳେ । ସେ ଚିରଦିନ ସତ୍ୟପିପାସୁ ଥିଲେ, କିନ୍ତୁ ସେ ସତ୍ୟ କଠୋର ନ ହୋଇ କୋମଳ ଥିଲା । ଏହା ତାଙ୍କର ନମ୍ରସ୍ୱଭାବର ପରିଚାୟକ । ଦିନେ ସେ ପଣ୍ଡିତ ନୀଳକଣ୍ଠ ଦାସଙ୍କର ଗୋଟିଏ ସାମାଜିକ ଲେଖାକୁ ଲକ୍ଷ୍ୟ କରି କହିଥିଲେ, "ମୁଁ ଏପରି Satire (ବ୍ୟଙ୍ଗ) କେବେ ଦେଖି ନାହିଁ, କିନ୍ତୁ ଲୋକଙ୍କ ପ୍ରାଣରେ ଏଥିରେ ତୀବ୍ର ଆଘାତ ଲାଗିଥିବ ।" ସମାଜର କୁସଂସ୍କାରର ସେ ନିନ୍ଦା କରୁଥିଲେ, କିନ୍ତୁ ତାହା କେବେ ଉଗ୍ର ହେବାର ଦେଖାଯାଇ ନାହିଁ । ନୀଳକଣ୍ଠ ବାବୁ ଦିନେ କଥାପ୍ରସଙ୍ଗରେ ତାଙ୍କ ନିକଟରେ ସମାଜର କେତେକ କୁସଂସ୍କାର ଓ କୁସଂସ୍କାରିମାନଙ୍କର ତୀବ୍ର ନିନ୍ଦା କରିଥିଲେ । ବିନୟର ଅବତାର ମଧୁସୂଦନ ସବୁ ଶୁଣି ଧୀର ଗମ୍ଭୀର ଭାବରେ କହିଲେ, "There is a soul of truth even in superstition ଆମ୍ଭେମାନେ କଦାପି କୁସଂସ୍କାରର ପ୍ରଶ୍ରୟ ଦେବା ନାହିଁ, କିନ୍ତୁ ସମସ୍ତଙ୍କର ଭାବ ପ୍ରତି ଶ୍ରଦ୍ଧା ଓ ଆଦର କରିବା ଉଚିତ ।" ଏଥିରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ, ସେ ହିନ୍ଦୁ ସମାଜ ପରିତ୍ୟାଗ କରିଥିଲେହେଁ ଏହା ପ୍ରତି ତାଙ୍କର ଶ୍ରଦ୍ଧା ବା ଆଦରର ଅଭାବ ନ ଥିଲା । ତାଙ୍କ ପରି ପ୍ରଶସ୍ତ-ହୃଦୟ ବ୍ୟକ୍ତି ପକ୍ଷରେ ଏହା ସ୍ୱାଭାବିକ ।

କୈଶୋର ଅବସ୍ଥାରୁ ତାଙ୍କଠାରେ ପ୍ରବଳ ସତ୍ୟାନୁସନ୍ଧିତ୍ସା ଓ ସତ୍ୟଗ୍ରାହିତା ଆଦି ମହତ୍ ଗୁଣମାନ ପ୍ରକାଶ ଲାଭ କରିଥିଲା । ନାସ୍ତିକ

ପଣ୍ଡିତ ହରିହର ଦାଶଙ୍କୁ ପାଇ ତାଙ୍କର ଧର୍ମବିଶ୍ୱାସ ମାର୍ଜିତ ହୋଇଥିଲା ଏବଂ ଧର୍ମଜ୍ଞାନର ବିକାଶସାଧନ ହୋଇଥିଲା । କିନ୍ତୁ ନାସ୍ତିକତାର ଦ୍ୱାରଦେଶ ପର୍ଯ୍ୟନ୍ତ ସେ ଯାଇ ନାହାନ୍ତି । ପଣ୍ଡିତ ହରିହର ଦାଶଙ୍କଠାରୁ ପ୍ରତିମାପୂଜା ଓ ପଣ୍ଡା ପୁରୋହିତମାନଙ୍କର କ୍ରିୟାକାଣ୍ଡ ବିରୁଦ୍ଧରେ ଯୁକ୍ତି ଶ୍ରବଣ କରି ତାଙ୍କର ସେ ସକଳ ପ୍ରତି ବିତୃଷ୍ଣା ଜାତ ହୋଇଥିଲା ଏବଂ କୈଶୋର ଅବସ୍ଥାରୁ ତାଙ୍କର ହୃଦୟରେ ଏକେଶ୍ୱରତତ୍ତ୍ୱ ପ୍ରତି ଆଗ୍ରହ ଜାତ ହୋଇଥିଲା ।

ମଧୁସୂଦନଙ୍କର ସମଗ୍ର ଜୀବନ ଆଲୋଚନା କଲେ ଦେଖାଯାଏ ଯେ, ତାଙ୍କ ଶୁଦ୍ଧ, ନିର୍ମଳ ଚିତ୍ତରେ କେତେଗୋଟି ସ୍ୱପ୍ନ ପ୍ରତିଫଳିତ ହୋଇ ନାନା ଘଟନାରେ ତାଙ୍କ ଜୀବନକୁ ନିୟନ୍ତ୍ରିତ କରିଅଛି । ପଣ୍ଡିତ ହରିହର ଦାଶଙ୍କ ସ୍ୱପ୍ନରେ ଜ୍ୱଳନ୍ତ ଅଗ୍ନିଖଣ୍ଡ ଦର୍ଶନଠାରୁ ମୃତ୍ୟୁର କିୟତ୍କାଳ ପୂର୍ବେ ଘୋଷମୋହନଙ୍କୁ ସ୍ୱପ୍ନ ଦେଖିବା ପର୍ଯ୍ୟନ୍ତ ସକଳ ସ୍ୱପ୍ନ ତାଙ୍କ ଜୀବନରେ ସତ୍ୟରୂପରେ ପ୍ରତିଭାତ ହୋଇଅଛି । ହରିହର ଦାଶଙ୍କ ସ୍ୱପ୍ନରେ ସେ ନାସ୍ତିକତାର ଭୀଷଣ ପରିଣାମ ଯେପରି ଲକ୍ଷ୍ୟ କରିଥିଲେ, ସେହିପରି ଆଉ ଏକ ରାତିରେ ଏକ ଉତ୍ତୁଙ୍ଗ ପର୍ବତ ଉପରେ ଶିବଲିଙ୍ଗ ଦର୍ଶନ କରି ତାଙ୍କ ଅନ୍ତର ପ୍ରେମାପ୍ଲୁତ ହୋଇ ରୋମାଞ୍ଚ ଜାତ ହୋଇଥିଲା । ଅନ୍ୟ ଏକରାତିରେ ତାଙ୍କର ଧର୍ମୋପାସନା ନିର୍ଦ୍ଦିଷ୍ଟ ହୋଇ ଯାଇଥିଲା । ସେ ସମୟରେ ସେ ଦୋଳାଚଳଚିତ୍ତବୃତ୍ତି ହୋଇ ଭାବୁଥିଲେ, "ହେ ଈଶ୍ୱର ! କେଉଁଠାରେ କିପରି ଅଛ, ମୋତେ ସ୍ୱୟଂ ଦେଖା ଦିଅ । ପଥ ପ୍ରଦର୍ଶନ କର । ଏ ଯେ ଘୋର ସଂସାର ଅରଣ୍ୟ ! କାହିଁ ଯିବି ? ନାନା ମୁନିଙ୍କର ନାନା ମତ, କେଉଁଟି ଗ୍ରହଣୀୟ ?" ଏବେ ରାତିରେ ସେ ସ୍ୱପ୍ନରେ ଦେଖିଲେ, ଉତ୍ତାଳତରଙ୍ଗବିଧୌତ ଜନଶୂନ୍ୟ ବେଳାଭୂମିରେ ସେ ଏକାକୀ ସମାସୀନ । ସମ୍ମୁଖରେ ଭୀମରବରେ ତରଙ୍ଗମାଳା ଲମ୍ଫ ପ୍ରଦାନ କରୁଅଛି । ଭୀତବ୍ୟାକୁଳଚିତ୍ତରେ ଯୁବକ ମଧୁସୂଦନ କର ପ୍ରସାରି ଡାକିଲେ, "ହେ

ପ୍ରଭୋ ! ମୋତେ ରକ୍ଷା କର ।" ସେହି ମୁହୂର୍ତ୍ତରେ ଅଦୂରରେ ଏକ ବିରାଟ ପୁରୁଷ ତାଙ୍କର ଦୃଷ୍ଟିପଥାରୂଢ଼ ହୋଇଥିଲେ । ପୁରୁଷଟି ଜଟା-ବଲ୍କଳଧାରୀ ଏବଂ ସର୍ବାଙ୍ଗ ବିଭୂତିଭୂଷିତ । ମଧୁସୂଦନଙ୍କର ନିକଟବର୍ତ୍ତୀ ହୋଇ ସେହି ବିରାଟ ପୁରୁଷ ତାଙ୍କୁ ଅନୁସରଣ କରିବା ପାଇଁ ମଧୁ-ସୂଦନଙ୍କୁ ହସ୍ତଦ୍ୱାରା ସଙ୍କେତ କଲେ । ଧୀରେ ଧୀରେ ମଧୁସୂଦନ ତାଙ୍କର ଅନୁବର୍ତ୍ତୀ ହେବାକୁ ଲାଗିଲେ । ସେହି ବିରାଟ ପୁରୁଷଙ୍କ ମୁଖରୁ ଅବିରତ ଓଁକାରନାଦ ନିଃସୃତ ହେଉଥାଏ ଏବଂ ସେଥି ସଙ୍ଗେ ସଙ୍ଗେ ଚତୁର୍ଦ୍ଦିଗ ଆଲୋକରେ ଉଦ୍‌ଭାସିତ ହୋଇ ପଡୁଥାଏ । କିଛିଦୂର ଯାଇ ମଧୁସୂଦନ ଦେଖିଲେ, ସେହି ବିରାଟ ପୁରୁଷ ବନ୍ଧ ଦେଉଳର ନିକଟବର୍ତ୍ତୀ ହୋଇ ଅନ୍ତର୍ଦ୍ଧାନ ହୋଇଗଲେ । ସେ ଏ ସ୍ୱପ୍ନକୁ ଭଗବତ୍ ନିର୍ଦ୍ଦିଷ୍ଟ ବୋଲି ଜ୍ଞାନ କରିଥିଲେ ଏବଂ ସୃଷ୍ଟି ସ୍ଥିତି ପ୍ରଳୟର କାରଣ ସେହି ଏକମାତ୍ର ଓଁକୁ (ଅ+ଉ+ମ) ସେ ଏହି ବିଶ୍ୱବ୍ରହ୍ମାଣ୍ଡର ମୂଳାଧାରରୂପେ ଉପଲବ୍ଧି କଲେ । ଏହି ସ୍ୱପ୍ନ ଦର୍ଶନ ଦିନଠାରୁ ମଧୁସୂଦନଙ୍କ ଚିତ୍ତ ଏକେଶ୍ୱର ପୂଜା ପ୍ରତି ସମ୍ପୂର୍ଣ୍ଣରୂପେ ଢଳି ପଡିଥିଲା । "ଯୋ ବୈ ଭୂମା ତତ୍ ସୁଖଂ ନାଳ୍ପେ ସୁଖମସ୍ତି" ଏହି ମହାମନ୍ତ୍ର କ୍ରମେ ତାଙ୍କ ପାଖରେ ଦୃଢ଼ୀଭୂତ ହେବାକୁ ଲାଗିଲା । ସେହିଦିନୁ ସେ ସେହି ନିରାକାର ସତ୍ୟରୂପୀ ମହତୋମହୀୟାନ୍ ପୁରୁଷଙ୍କୁ ଆରାଧନା କରିବାକୁ ଲାଗିଲେ ।

"ମହାମହୀୟାନ ତୁମ୍ଭେ ନିଜ ମହିମାରେ
ପ୍ରତିଷ୍ଠିତ, ବିରାଜିତ ସକଳ ସଂସାରେ,
ପ୍ରଶାନ୍ତ ପ୍ରଶସ୍ତ ନେତ୍ରେ ଚାହିଁଛ ଅନାଇ,
ବିରାଜିତ୍ସ ଦେଉଅଛ ବ୍ରହ୍ମାଣ୍ଡରେ ସାଇଁ,
ଅସତ୍ୟର ଅନ୍ଧକାର ନାଶି ବଜ୍ରାଲୋକେ
ଜାଳୁଛ ସତ୍ୟର ଜ୍ୟୋତି ଦ୍ୟୁଲୋକେ ଭୂଲୋକେ ।"

ସେହି ଜ୍ୟୋତି ତାଙ୍କର ସର୍ବାଙ୍ଗ ସ୍ପର୍ଶ କଲା, ସେହି ଜ୍ୟୋତି ତାଙ୍କର ସକଳ କର୍ମରେ, ଧର୍ମରେ ପଥପ୍ରଦର୍ଶକ ହେଲା ।

କଟକରେ ଏଫ୍. ଏ. ଅଧ୍ୟୟନ କରିବାର ୯-୧୦ ବର୍ଷ ପୂର୍ବେ ପ୍ରାୟ ୧୮୬୦ ଖ୍ରୀଷ୍ଟାବ୍ଦରେ ମହର୍ଷି ଦେବେନ୍ଦ୍ରନାଥଙ୍କ କଟକରେ ଥରେ ତାଙ୍କଦ୍ୱାରା ଗୋଟିଏ ବ୍ରହ୍ମୋପାସନା ସମାଜ ସ୍ଥାପିତ ହୋଇଥିଲା । କିନ୍ତୁ ମଧୁସୂଦନଙ୍କର କଟକ ଆଗମନ କାଳକୁ ଏହି ଅଳ୍ପ ସମୟ ମଧ୍ୟରେ ଏ ସମାଜରେ ଅନେକ କୃତ୍ରିମତା ପ୍ରବେଶ କରିଥିଲା । ଯାହାହେଉ ମଧୁସୂଦନଙ୍କ ନିକଟରେ ଏହା ନୂତନ । ସୁତରାଂ ସେ ଦେବେନ୍ଦ୍ରନାଥଙ୍କ ପ୍ରତିଷ୍ଠିତ ସମାଜରେ ଯୋଗ ଦେବାର ସୁଯୋଗ ଛାଡ଼ି ନ ଥିଲେ । କିନ୍ତୁ ଅଳ୍ପକାଳ ପରେ ଉପାସନାପଦ୍ଧତିର ପ୍ରାଣହୀନତା ଓ ଅସ୍ୱାଭାବିକତା ସନ୍ଦର୍ଶନ କରି ତାଙ୍କର ଏଥି ପ୍ରତି ବିରାଗ ଜାତ ହେଲା । କେବଳ ତ୍ରୈଲୋକ୍ୟନାଥ ମୁଖୋପାଧ୍ୟାୟ ନାମକ ଜଣେ ଲୋକଙ୍କ ପ୍ରତି ତାଙ୍କର ଶ୍ରଦ୍ଧା ଜନ୍ମିଥିବାରୁ ସେ ଏ ସମାଜକୁ ଅତିଶୀଘ୍ର ପରିତ୍ୟାଗ କରି ନ ଥିଲେ । ତ୍ରୈଲୋକ୍ୟନାଥ ବାବୁ ଜଣେ ପୁଲିସ୍ କର୍ମଚାରୀ ଥିଲେ । ପୁରା-ତତ୍ତ୍ୱବିତ୍ ପ୍ରଖ୍ୟାତନାମା ହଣ୍ଟର୍ ସାହେବ ଯେତେବେଳେ ଉତ୍କଳକୁ ଆସିଥିଲେ, ସେ ଏହି ମହୋଦୟଙ୍କଠାରୁ ସାହାଯ୍ୟ ଲୋଡ଼ିଥିଲେ ଏବଂ ତ୍ରୈଲୋକ୍ୟ ବାବୁ ପରେ ବିଲାତର ଗୋଟିଏ ପ୍ରଧାନ ପ୍ରଦର୍ଶନୀକୁ ଭାରତର ପ୍ରତିନିଧିରୂପେ ନିର୍ବାଚିତ ହୋଇ ସେଠାରେ ଆପଣାର ପ୍ରତିପତ୍ତି ପ୍ରଦର୍ଶନ କରିଥିଲେ । ଦେବେନ୍ଦ୍ରନାଥଙ୍କ ସମାଜରେ ଯୋଗ ଦେବା ଦ୍ୱାରା ମଧୁସୂଦନଙ୍କର ଗୋଟିଏ ବଡ଼ ଲାଭ ଏହା ହିଁ ହୋଇଥିଲା ଯେ, ସେ ବ୍ରାହ୍ମଧର୍ମକୁ ଯଥାର୍ଥରୂପେ ହୃଦୟଙ୍ଗମ କରିବାର ସୁଯୋଗ ଲାଭ କରିଥିଲେ ଏବଂ ଉପନିଷଦର ମୂଲ୍ୟବାନ୍ ଶ୍ଳୋକାଦିର ଅନୁଧ୍ୟାନ କରି ତାଙ୍କର ଭଗବତ୍ସ୍ୱରୂପ ଉପଲବ୍ଧି କରିବାର ପନ୍ଥା ସୁଗମ ହୋଇ ଯାଇଥିଲା । ଈଶୋପନିଷଦର

"ଈଶାବାସ୍ୟମିଦଂ ସର୍ବଂ ଯତ୍ କିଞ୍ଚ ଜଗତ୍ୟାଂ ଜଗତ୍
ତେନ ତ୍ୟକ୍ତେନ ଭୁଞ୍ଜୀଥା ମା ଗୃଧଃ କସ୍ୟସ୍ୱିଦ୍ଧନଂ ।"
"ଯତୋ ବା ଇମାନି ଭୂତାନି
ଜାୟନ୍ତେ ଯେନ ଜାତାନି ଜୀବନ୍ତି ।"

ଏହି ସମସ୍ତ ଶ୍ଳୋକ ପାଠ କାଳରେ ମଧୁସୂଦନଙ୍କର ଅନ୍ତର ଦିବ୍ୟ ଅମୃତ-ରସରେ ଆପ୍ଲୁତ ହୋଇ ଉଠୁଥିଲା ଏବଂ ତାଙ୍କର ଯଥାର୍ଥ ବ୍ରହ୍ମୋପାସନା ଏହିରୂପରେ ଆରମ୍ଭ ହୋଇଥିଲା ।

ଉପରୋକ୍ତ ଶ୍ଲୋକ ପାଠ କରି ପ୍ରଥମେ ତାଙ୍କର ପୂର୍ବ ଧର୍ମବିଶ୍ୱାସ କିପରି ଭାବରେ ବିଚଳିତ ହୋଇ ଉଠିଥିଲା, ତାହା ତାଙ୍କ ମୁଖରୁ ଯେ ଶୁଣି ଅଛନ୍ତି, ସେ ସହଜରେ ଭୁଲି ନାହାନ୍ତି । ଏଥିଦ୍ୱାରା ତାଙ୍କର ମର୍ମମୂଳ ଆନ୍ଦୋଳିତ ହୋଇ ପଡ଼ୁଥିଲା ।

ଏହି ସମୟରେ ପୂର୍ବୋକ୍ତ ବ୍ରାହ୍ମ ହରନାଥ ଭଟ୍ଟାଚାର୍ଯ୍ୟ ଦର୍ଶନାଧ୍ୟାପକ ହୋଇ କଟକକୁ ଆସିଥିଲେ । ତାଙ୍କଠାରୁ ମଧୁସୂଦନ ଧର୍ମ ବିଷୟରେ ପ୍ରଭୂତ ଉପକାର ଲାଭ କରିଥିଲେ । ତାଙ୍କଠାରୁ କେଶବଚନ୍ଦ୍ରଙ୍କ ବକ୍ତୃତାଦି ପାଠ କରି ଏକେଶ୍ୱରତତ୍ତ୍ୱରେ ମଧୁସୂଦନଙ୍କର ବିଶ୍ୱାସ ଦୃଢ଼ମୂଳ ହୋଇ ଯାଇଥିଲା ଏବଂ ସେ ସ୍ପଷ୍ଟତଃ ଉପବୀତ ତ୍ୟାଗ କରି ବ୍ରାହ୍ମଧର୍ମରେ ଦୀକ୍ଷିତ ହେଲେ । ସେ ଅବଶ୍ୟ ଏକାକୀ ନ ଥିଲେ । ତାଙ୍କର ଆଜୀବନ ପରମବନ୍ଧୁ ସ୍ୱର୍ଗୀୟ ପୁଣ୍ୟାତ୍ମା ପ୍ୟାରୀମୋହନ ଆଚାର୍ଯ୍ୟପ୍ରମୁଖ ଅନେକ ଯୁବକ ମଧ୍ୟ ହରନାଥ ଭଟ୍ଟା-ଚାର୍ଯ୍ୟଙ୍କ ଦ୍ୱାରା ସ୍ଥାପିତ ସମାଜରେ ଯୋଗ ଦେଇଥିଲେ । କ୍ରମେ ଏ ସମ୍ବାଦ ଅଭିଭାବକମହଲରେ ଘୋଷିତ ହେବାକୁ ଲାଗିଲା । ପାଶ୍ଚାତ୍ୟ ଶିକ୍ଷା ଓ ସଭ୍ୟତା ଉପରେ ଗାଳି ବର୍ଷିତ ହେବାକୁ ଲାଗିଲା । ଯେଉଁ-ମାନେ ଏ ଆନ୍ଦୋଳନରେ ଯୋଗ ଦେଲେ, ସେମାନଙ୍କ ପିତା ଓ ଅଭିଭାବକମାନେ ସେମାନଙ୍କୁ ସମାଜରୁ ଓ ଗୃହରୁ ବାହାରିବାର ଆଶଙ୍କା

କର ଶାସନ କରିବାକୁ ଲାଗିଲେ ଏବଂ ଇଂରାଜୀ ଶିକ୍ଷାର ଦୋଷ ଗାଇ ବୁଲିଲେ । ଯେଉଁମାନଙ୍କର ବାସ୍ତବ କ୍ଷତି କିଛି ନାହିଁ ଅଥଚ ଯେଉଁମାନେ ନିଜକୁ ସମାଜର ଗୋଟିଏ ଗୋଟିଏ ଶ୍ରେଷ୍ଠ ବନ୍ଧୁ ନେତା ବୋଲି କଳ୍ପନା କରନ୍ତି, ସେମାନେ ସମାଜ ଗଲା, ଧର୍ମ ଗଲା, ଅନ୍ଧ ଚିତ୍କାର କରିବାକୁ ଲାଗିଲେ । ବାଳକମାନେ ଏହିମାନଙ୍କର ପ୍ରତିଧ୍ୱନିସ୍ୱରୂପ ରହିଲେ । କିନ୍ତୁ ଉପାସନା ମନ୍ଦିର କ୍ରମେ ଅଧିକସଂଖ୍ୟକ ସଭ୍ୟଙ୍କ ଦ୍ୱାରା ପୂର୍ଣ୍ଣ ହେଲା ।

ଶେଷରେ ଅନନ୍ୟୋପାୟ ହୋଇ ଅଭିଭାବକମାନେ ଏ ସମ୍ବାଦ ତାତ୍କାଳିକ କମିଶନର୍ ରେଭେନ୍ସା ସାହେବଙ୍କର କର୍ଣ୍ଣଗୋଚର କଲେ । ସେ କଲେଜର ପ୍ରିନ୍ସିପାଲଙ୍କୁ ତାଗିଦ କଲେ । ଏଥିମଧ୍ୟରେ ହରନାଥ ବାବୁ ପ୍ରତାପଚନ୍ଦ୍ର ମଜୁମଦାରଙ୍କୁ କଟକକୁ ଡକାଇ ଆଣିଲେ ଏବଂ ସେ ଆସି ବ୍ରାହ୍ମଧର୍ମ ସମ୍ବନ୍ଧରେ କେତେଗୁଡ଼ିଏ ବକ୍ତୃତା ପ୍ରଦାନ କରିଥିଲେ ।

କିନ୍ତୁ ସବୁ ଆନ୍ଦୋଳନର ପରିଣାମ ଯାହା ହୋଇଥାଏ, ଏହାର ମଧ୍ୟ ତାହାହିଁ ହେଲା । ହରନାଥ ବାବୁଙ୍କର ବଦଳି ହୁକୁମ ଆସିବାରୁ ସେ ସ୍ଥାନାନ୍ତରକୁ ଗଲେ । ତାଙ୍କର ପ୍ରସ୍ଥାନ ସଙ୍ଗେ ସଙ୍ଗେ ସଭ୍ୟମାନଙ୍କର ମତଗତ ମଧ୍ୟ ବଦଳି ଗଲା ଏବଂ ଉପାସନାମନ୍ଦିର କ୍ରମେ ଅଳ୍ପସଂଖ୍ୟକ ସଭ୍ୟ ନେଇ ଚଳିବାକୁ ଲାଗିଲା । ଶେଷରେ ମାତ୍ର ତିନି ଜଣ ଯଥାର୍ଥ ବ୍ରାହ୍ମ ହୋଇ ରହିଲେ । ସ୍ୱର୍ଗୀୟ କର୍ମୀ ପ୍ୟାରୀମୋହନ ଆଚାର୍ଯ୍ୟ, ସ୍ୱର୍ଗୀୟ ଦୀନନାଥ ବନ୍ଦ୍ୟୋପାଧ୍ୟାୟ ଏବଂ ଆମ୍ଭମାନଙ୍କର ମଧୁସୂଦନ । କଟକ ଏକାଡେମୀର ପ୍ରତିଷ୍ଠାତା ପ୍ୟାରୀମୋହନ ଉତ୍କଳରେ ସୁପରିଚିତ । କିନ୍ତୁ ଦୀନନାଥଙ୍କୁ ଉତ୍କଳରେ ଅନେକେ ଜାଣି ନ ଥିବାର ସମ୍ଭାବନା । ଦୀନନାଥ ବାବୁ ଅତି ତେଜସ୍ୱୀ ଏବଂ ସାହସୀ ପୁରୁଷ ଥିଲେ । କୌଣସି ସ୍ଥଳରେ ଅନ୍ୟାୟ ଅତ୍ୟାଚାର ଦେଖିଲେ ସେ କୌଣସି କଥାକୁ ଭ୍ରୂକ୍ଷେପ ନ କରି ସିଂହବିକ୍ରମରେ ତାହାର ପ୍ରତିବାଦ କରୁଥିଲେ । ଉତ୍କଳ ଦୀପିକା

ପ୍ରଚଳିତ ସମ୍ବାଦପତ୍ରମାନଙ୍କର ଅନେକ ଛଳେ ତାଙ୍କଦ୍ୱାରା ପୂର୍ଣ୍ଣ ହେଉଥିଲା । ବଙ୍ଗଳାରେ ସେ ସମୟର ମୁଖପତ୍ର "ବଙ୍ଗ ଦର୍ଶନ" ନାମକ ମାସିକ ପତ୍ରିକାରେ ସେ ସମୟେ ସମୟେ ଉତ୍କଳ ସମ୍ପର୍କରେ କେତେକ ବିଷୟ ପ୍ରକାଶ କରୁଥିଲେ । ପ୍ୟାରୀମୋହନଙ୍କ ମୃତ୍ୟୁ ପରେ ଏହି ଧାନନାଥ ବାବୁହିଁ ତତ୍ସମ୍ପାଦିତ 'ଉତ୍କଳ ପୁତ୍ର'ର ସମ୍ପାଦକତ୍ୱ କିଛିକାଳପାଇଁ ଗ୍ରହଣ କରିଥିଲେ । ପ୍ୟାରୀମୋହନଙ୍କ ସହିତ ମଧୁସୂଦନଙ୍କର ସ୍ନେହ-ବନ୍ଧନ ଚିରଦିନ ଅଶିଥିଳ ହୋଇ ରହିଥିଲା । ପ୍ୟାରୀମୋହନଙ୍କ ମୃତ୍ୟୁକାଳରେ ମଧୁସୂଦନ ଏବଂ ମଧୁସୂଦନଙ୍କର ମୃତ୍ୟୁ ସମୟରେ ପ୍ୟାରୀମୋହନ ( ସ୍ୱପ୍ନାବସ୍ଥାରେ ) ଉପସ୍ଥିତ ଥିଲେ । ଉତ୍କଳରେ ସେ ଯୁଗରେ ଧର୍ମସଂସ୍କାର, ସମାଜସଂସ୍କାର, ସାହିତ୍ୟସଂସ୍କାର, ଶିକ୍ଷାପ୍ରଚାର, କର୍ମନିଷ୍ଠା ଆଦି ଜନହିତକର ସକଳ ବିଷୟରେ ଏହି ଦୁଇଜଣହିଁ ଅଗ୍ରଣୀ ଥିଲେ ଏବଂ ଉତ୍କଳରେ ବ୍ରାହ୍ମସମାଜର ପ୍ରାଣପ୍ରତିଷ୍ଠାତା ଥିଲେ ।

ମଧୁସୂଦନଙ୍କର ପ୍ରଥମେ ବ୍ରାହ୍ମଧର୍ମ ଗ୍ରହଣ କରିବାର ଆଜକୁ ପ୍ରାୟ ୬୦ ବର୍ଷ ହେବ । ସେତେବେଳେ କେବଳ ବିଶ୍ୱାସ ପାଇଁ, ଅନ୍ୟ କୌଣସି ହୀନ ଉଦ୍ଦେଶ୍ୟ ଅଥବା ଉଚ୍ଛୃଙ୍ଖଳତାର ବଶବର୍ତ୍ତୀ ନ ହୋଇ, ସେ ଯେପରି ବିକ୍ରମରେ କୁସଂସ୍କାରବନ୍ଧନରୁ ପୃଥକ୍ ହୋଇ ଦଣ୍ଡାୟମାନ ହେଲେ, ତାହା ତାଙ୍କ ପକ୍ଷରେ ଯଥାର୍ଥ ବୀରତ୍ୱର ପରିଚାୟକ । ମଧୁ ବାବୁ ବ୍ରାହ୍ମଧର୍ମ ଗ୍ରହଣ କରି ଠିକ୍ କାମ କି ଭୁଲ କଲେ, ତାହା ଆମ୍ଭମାନଙ୍କର ଏଠାରେ ବିଚାର୍ଯ୍ୟ ନୁହେ । କିନ୍ତୁ ସେ ଯାହା ସତ୍ୟ ବୋଲି ବୁଝିଲେ, ଯାହା ନ୍ୟାଯ୍ୟ ରୂପରେ ହୃଦୟଙ୍ଗମ କଲେ, ସେଥିରୁ ଯେ ତିଳେହେଲେ ଭ୍ରଷ୍ଟ ନ ହୋଇ, ଆତ୍ମପ୍ରବଞ୍ଚକ ନ ହୋଇ ମନ ପ୍ରାଣ ତହିଁରେ ଢାଳି ଦେଲେ, ଏହାହିଁ ତାଙ୍କ ନିକଟରେ ଦ୍ରଷ୍ଟବ୍ୟ । ଏହାହିଁ ମହାପୁରୁଷର ବିଶେଷ ଲକ୍ଷଣ ।

ଉପାସନା ନିମିତ୍ତ ସେତେବେଳେ କୌଣସି ନିର୍ଦ୍ଦିଷ୍ଟ ବ୍ରହ୍ମମନ୍ଦିର ନ ଥିଲା । ଜଗନ୍ମୋହନ ବସୁ ନାମକ ଆଦି ବ୍ରାହ୍ମସମାଜର ଜଣେ ପ୍ରଧାନ

ସଭ୍ୟ ଏବଂ ପୃଷ୍ଠପୋଷକ ଏ ଅଭାବ ପୂରଣ କରାଇଥିଲେ । ଜଗନ୍ମୋହନ ବାବୁ ଜଣେ ପରମ ପରୋପକାରୀ ପୁରୁଷ ଥିଲେ । ଉତ୍କଳର ଅନେକ ବିଶିଷ୍ଟ ଲୋକ ଏହାଙ୍କଦ୍ୱାରା ନାନାଭାବରେ ଉପକୃତ ଓ ଉତ୍ସାହିତ ହୋଇଥିଲେ । ତାଙ୍କର ଯତ୍ନରେ କଟକ ଗଙ୍ଗାମନ୍ଦିର ଉପରେ ଗୋଟିଏ ହର୍ମ୍ୟ ନିର୍ମିତ ହୋଇଥିଲା । ନବ୍ୟ ସମାଜର ଯୁବକ ଦୁର୍ବି-ଲସିତ ସ୍ୱର୍ଗୀୟ ପ୍ୟାରୀମୋହନ ଓ ଦୀନନାଥଙ୍କ ଅନୁରୋଧରେ ଜଗନ୍ମୋହନ ବାବୁ ଉକ୍ତ ମନ୍ଦିରଟିକୁ ଉଭୟ ସମାଜର ଉପାସନା ନିମିତ୍ତ ଛାଡ଼ି ଦେଇଥିଲେ ଏବଂ ଉପାସନାର ଦିବସ ଶନିବାର ଓ ରବିବାର ନିର୍ଦ୍ଦିଷ୍ଟ କରିଥିଲେ । ସେହିଦିନଠାରୁ ଉପରୋକ୍ତରୂପରେ ଉଭୟ ସମାଜର ଉପାସନ କାର୍ଯ୍ୟ ଚଳି ଆସୁଅଛି । ଏଥିରେ ମଧୁସୂଦନ ପ୍ରାୟ ୩୫ ବର୍ଷକାଳ ନାନାଭାବରେ ଯୋଗ ଦେଇଥିଲେ । କେତେବେଳେ ସମ୍ପାଦକ, କେତେବେଳେ ସଭାପତି, କେତେବେଳେ ଅବା ଆଚାର୍ଯ୍ୟରୂପରେ କାର୍ଯ୍ୟ କରି ସେ ଧର୍ମମାର୍ଗ ଏବଂ ଈଶ୍ୱରୋ-ପାସନାର ଏକ ନବୀନ ଉଜ୍ଜ୍ୱଳ ମାର୍ଗ ପ୍ରଦର୍ଶନ କରିଗଲେ । ଏଥିପାଇଁ ତାଙ୍କୁ କେତେ ବିଘ୍ନ, କେତେ ପ୍ରତିବନ୍ଧକ ସହ୍ୟ କରିବାକୁ ହୋଇଅଛି । ରକ୍ଷଣଶୀଳ ଦଳର ଲୋକେ ଏହି ନବଧର୍ମର ଆନ୍ଦୋଳନକୁ ଦୁର୍ବଳ କରିବା ଉଦ୍ଦେଶ୍ୟରେ ନାନା ଦିଗରୁ ଆକ୍ରମଣ କରିବାକୁ ଲାଗିଲେ । ଉପାସକମାନେ ଯେତେବେଳେ ଚକ୍ଷୁ ମୁଦ୍ରିତ କରି ଉପାସନାରତ, ସେତେବେଳେ ଦୁଷ୍ଟ ଦଳ ମନ୍ଦିରର ଆଲୋକଗୁଡ଼ିକ ଲିଭାଇ ଦେଇ ପ୍ରସ୍ଥାନ କରୁଥିଲେ । ବକ୍ତୃତା କାଳରେ ବକ୍ତାଙ୍କ ବାଧା କରି ରଖିବା-ପାଇଁ ସନାତନ ହିନ୍ଦୁଧର୍ମାବଲମ୍ବୀମାନେ ନାନା ବୀଭତ୍ସ କାର୍ଯ୍ୟମାନ ସମ୍ପନ୍ନ କରିବାକୁ ପଶ୍ଚାତ୍‌ପଦ ହେଉ ନ ଥିଲେ । ନଗରସଂକୀର୍ତ୍ତନରେ କେହି କେହି ନଷ୍ଟାମୀ ଯୁବକ ନାନା କୁତ୍ସାବ୍ୟଞ୍ଜକ ଗୀତ ଗାଇ ଗାଇ ସଙ୍ଗରେ ଯାଉଥିଲେ ।

ଉତ୍କଳ ବ୍ରାହ୍ମସମାଜର ପ୍ରବର୍ତ୍ତକ ଓ ପ୍ରଧାନ ପୃଷ୍ଠପୋଷକ ମଧୁସୂଦନଙ୍କ ପ୍ରତି ଚତୁର୍ଦ୍ଦିଗରୁ ବାକ୍‌ବାଣ ନିକ୍ଷିପ୍ତ ହୋଇଥିଲା । ଧର୍ମଧ୍ୱଂସୀ, ଦେଶଦ୍ରୋହୀ ଓ ନାସ୍ତିକ ବୋଲି ତାଙ୍କ ପ୍ରତି ନାନା ବିଶେଷଣ ବ୍ୟବହୃତ ହୋଇଥିଲା । ସେ ସମୟର ରାଜପୁରୁଷଙ୍କ ନିକଟରେ ମଧ୍ୟ ଏ ସକଳ ବିଜ୍ଞାପିତ ହୋଇଥିଲା । ଧୀର ଗମ୍ଭୀର ଭାବରେ ଏ ସମସ୍ତ ନୀରବରେ ସହ୍ୟ କରି ଅବଶେଷରେ ମଧୁସୂଦନ ଜୟୀ ହୋଇଥିଲେ ଏବଂ ଜଗତ୍ ସମକ୍ଷରେ ଦେଖାଇ ଦେଇଥିଲେ ଯେ, ଯଥାର୍ଥରେ ସେ ବୀର, କାପୁରୁଷ ନୁହନ୍ତି ।

—*○*—

## ଷଷ୍ଠ ପରିଚ୍ଛେଦ ।

### ମଧୁସୂଦନ ଓ ପ୍ୟାରୀମୋହନ ।

ସ୍ୱର୍ଗୀୟ ପଣ୍ଡିତ ମୃତ୍ୟୁଞ୍ଜୟ ରଥ ମହୋଦୟ ତଲ୍ଲିଖିତ "ବ୍ରହ୍ମର୍ଷି ମଧୁସୂଦନ"ରେ ପ୍ରାତଃସ୍ମରଣୀୟ ପ୍ୟାରୀମୋହନଙ୍କର ସଂକ୍ଷିପ୍ତ ଜୀବନ-ବୃତ୍ତାନ୍ତ ସନ୍ନିବେଶିତ କରିଅଛନ୍ତି । ଆମ୍ଭେମାନେ ତାଙ୍କର ପଦାଙ୍କ ଅନୁସରଣରେ ଏବଂ ମଧୁସୂଦନ ଓ ପ୍ୟାରୀମୋହନଙ୍କର ପ୍ରଗାଢ଼ ବନ୍ଧୁତା ଦୃଷ୍ଟିରୁ ଏଠାରେ ପ୍ୟାରୀମୋହନଙ୍କ ଜୀବନଚରିତ ପାଠକମାନଙ୍କର ଆନନ୍ଦଦାୟକ ହେବ ମନେ କରି ଉପସ୍ଥାପିତ କରୁଅଛୁଁ ।

ପ୍ୟାରୀମୋହନଙ୍କ ପିତା ସ୍ୱର୍ଗୀୟ ଭୁବନମୋହନ ଆଚାର୍ଯ୍ୟ କଟକ ଅଦାଲତରେ ଜଣେ ଓକିଲ ଥିଲେ । ତାଙ୍କର ବାସସ୍ଥାନ କଟକ ଜିଲାସ୍ଥିତ ସାଲେପୁର ଥାନା ଅନ୍ତର୍ଗତ କୁଆଁପାଳ ଗ୍ରାମର ନିକଟବର୍ତ୍ତୀ ପଣ୍ଡୁଲୁଣ୍ଡା ନାମକ ଗୋଟିଏ କ୍ଷୁଦ୍ର ଗ୍ରାମରେ ଥିଲା । ୧୮୫୧ ଖ୍ରୀଷ୍ଟାବ୍ଦର

ଶ୍ରାବଣ ମାସରେ ପ୍ୟାରୀମୋହନ ଭୂମିଷ୍ଠ ହେଲେ । ତାଙ୍କର ଆଉ ଦୁଇ ଗୋଟି ଭ୍ରାତା ଥିଲେ । ମଧ୍ୟମ ଦ୍ୱାରକାନାଥ ଆଚାର୍ଯ୍ୟ ମୋକ୍ତାର ଥିଲେ ଏବଂ କନିଷ୍ଠ ଚନ୍ଦ୍ରମୋହନ ଆଚାର୍ଯ୍ୟ ଡାକ୍ତର ଥିଲେ । କୁଆଁପାଳ ଗ୍ରାମର ପାଠଶାଳାରେ ପ୍ୟାରୀମୋହନଙ୍କର ପ୍ରାଥମିକ ଶିକ୍ଷା ଆରମ୍ଭ ହୋଇଥିଲା । ଓଡ଼ିଆରେ ପାଠ୍ୟ ପୁସ୍ତକ ଅଭାବରୁ ସ୍ଥାନେ ସ୍ଥାନେ ବଙ୍ଗଳା ଓ ଇଂରାଜୀ ସାହାଯ୍ୟରେ ଶିକ୍ଷା ପ୍ରଦତ୍ତ ହେଉଥିଲା । ଓଡ଼ିଆ ଶିକ୍ଷାପାଇଁ ତଦାନୀନ୍ତନ ସ୍କୁଲ ଡେପୁଟି ଇନ୍‌ସ୍ପେକ୍ଟର୍ ପଣ୍ଡିତ କୈଳାସ-ଚନ୍ଦ୍ର ତର୍କାଳଙ୍କାର (ଶ୍ରୀଯୁକ୍ତ ପ୍ରିୟନାଥ ଭଟ୍ଟାଚାର୍ଯ୍ୟ ଉକିଲଙ୍କର ପିତା) ବିଦ୍ୟାସାଗରଙ୍କ ବଙ୍ଗଳା ବର୍ଣ୍ଣପରିଚୟର ଖଣ୍ଡିଏ ଉତ୍କଳାନୁବାଦ ପ୍ରକାଶ କରିଥିଲେ । ସେହି ଖଣ୍ଡିକ ହିଁ ଓଡ଼ିଆ ପ୍ରାଥମିକ ଶିକ୍ଷାର ସମ୍ବଳ ଥିଲା । ଏହିପରି ଗୋଟିଏ ପାଠଶାଳାରେ ପ୍ରାଥମିକ ଶିକ୍ଷା ସାଙ୍ଗ କରି ପ୍ୟାରୀମୋହନ କଟକ ଆସି ବାର ବର୍ଷ ବୟସରେ କଟକ ଜିଲ୍ଲା ସ୍କୁଲରେ (ବର୍ତ୍ତମାନର କଲେଜିଏଟ୍) ଅଧ୍ୟୟନ କଲେ ।

ମଧୁସୂଦନଙ୍କ ପରି ପ୍ୟାରୀମୋହନ ସ୍କୁଲରେ ନିୟମିତ ଭାବରେ ଅଧ୍ୟୟନ କରୁ ବଡ଼ ଆଦର୍ଶସ୍ଥାନୀୟ ଥିଲେ ବୋଲି ବୋଲାଯାଇ ନ ପାରେ । ପାଠ୍ୟ ବିଷୟରେ ସେ ତ ମୂଳରୁ ନିବିଷ୍ଟମନା ନ ଥିଲେ । ପରନ୍ତୁ ଶ୍ରେଣୀରେ ବସି ସେ ଅନ୍ୟମନସ୍କ ଭାବରେ ନାନା ଚିନ୍ତାରେ ବ୍ୟାପୃତ ରହୁଥିଲେ । ସେଥିଲାଗି ସହାଧ୍ୟାୟୀମାନେ ତାଙ୍କୁ ଖିଆଲ୍‌ବାଜୀ ବୋଲି କହୁଥିଲେ । କିନ୍ତୁ ପାଠ୍ୟ ପ୍ରସ୍ତୁତ କରିବାରେ ଯେତେ ଦୂର ବୀତସ୍ପୃହ ହେଲେହେଁ ସେ ସ୍ୱୀୟ ତୀକ୍ଷ୍ଣ ମେଧାଗୁଣରେ ପ୍ରତିଯୋଗିତାରେ ଉତ୍ତୀର୍ଣ୍ଣ ହୋଇ ଯାଉଥିଲେ । ମଧୁସୂଦନଙ୍କ ପରି ଜଣେ ଦୁଇ ଜଣ ନିଜର ମନୋମତ ସହାଧ୍ୟାୟୀଙ୍କ ବ୍ୟତୀତ ସେ ସାଧାରଣ ଛାତ୍ରଙ୍କ ସହିତ ଭଲ ଭାବରେ ମିଶି ପାରୁ ନ ଥିଲେ । କାରଣ ତାଙ୍କର ଆଦର୍ଶ ଓ ତାଙ୍କର ଚିନ୍ତାର ଧାରା ସହିତ ଅପର ଛାତ୍ରମାନଙ୍କର ମତାମତର ମେଳ ଖାଉ ନ ଥିଲା । ମଧୁସୂଦନଙ୍କ ପରି ସେ ନିର୍ଜନତାର ବଡ଼ ପ୍ରିୟ ଥିଲେ । ଅବସର

ସମୟରେ ସେପରି ସ୍ଥାନକୁ ଯାଇ ସେ ନାନା ପୁସ୍ତକର ଆଲୋଚନା କରୁଥିଲେ । ଛାତ୍ରାବସ୍ଥାରୁହିଁ ତାଙ୍କର କଠୋର ସତ୍ୟାନୁରାଗର ପରିଚୟ ମିଳି ଯାଇଥିଲା । ଶ୍ରେଣୀରେ ନିଷ୍ଠୁର ଭାବରେ ଶାସିତ ହେଲେହେଁ ସେ ସତ୍ୟ କହିବାରୁ ବିରତ ହେଉ ନ ଥିଲେ । ମଧୁସୂଦନଙ୍କ ସତ୍ୟ-ପ୍ରିୟତାର ଦୃଷ୍ଟାନ୍ତ ଏହିପରି ଅନେକ ସ୍ଥଳରେ ଦେଖା ଯାଉଅଛି । କିନ୍ତୁ ଉଭୟ ମଧୁସୂଦନ ଓ ପ୍ୟାରୀମୋହନଙ୍କ ସତ୍ୟରେ କିଛି ପାର୍ଥକ୍ୟ ଅଛି । ଜଣକର ସତ୍ୟ ବଜ୍ର ସମ କର୍କଶ ହେଲେ ଅନ୍ୟ ଜଣକର ନବନୀତ ସମ କୋମଳ । ପ୍ୟାରୀମୋହନଙ୍କର ସତ୍ୟ ପ୍ରିୟ ହୋଇ ପାରେ, ଅପ୍ରିୟ ହୋଇ ପାରେ, କୌଣସି ଦିଗକୁ ଭ୍ରୂକ୍ଷେପ ନ କରି କେବଳ ସତ୍ୟରହିଁ ବିଜୟବାନା ଉଡ଼ାଇଅଛନ୍ତି । ସତ୍ୟପାଇଁ ସଂସାର ଧ୍ୱଂସ-ମୁଖରେ ଯାଉ, ନଚେତ ରସାତଳଗାମୀ ହେଉନ୍ତୁ, ସତ୍ୟହିଁ ତାଙ୍କର ମୂଳ । କିନ୍ତୁ ମଧୁସୂଦନଙ୍କର ସତ୍ୟ ଚିରକାଳ ଶ୍ଳେଷଶୀଳ, ଚିରକାଳ ଶାନ୍ତି ଓ ସୁନ୍ଦର । ଗୋଟିଏ କଠିନ ସତ୍ୟ, ଅନ୍ୟଟି କମୀର ।

ମଧୁସୂଦନ ଯେଉଁ ବର୍ଷ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ, ଠିକ୍ ସେହି ବର୍ଷ ଅର୍ଥାତ୍ ୧୮୬୯ ଖ୍ରୀଷ୍ଟାବ୍ଦରେ ପ୍ୟାରୀମୋହନ ବୃତ୍ତି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ କଟକ କଲେଜିଏଟ ଅନ୍ତର୍ଭୁକ୍ତ କଲେଜର ପ୍ରଥମ ବାର୍ଷିକ ଶ୍ରେଣୀରେ ପ୍ରବେଶ କଲେ । ସେହିଠାରେ ମଧୁସୂଦନଙ୍କ ସହିତ ତାଙ୍କର ପରିଚୟ ଏବଂ ସେହିଠାରୁ ଉଭୟେ ଭ୍ରାତୃ ବନ୍ଧୁତାସୂତ୍ରରେ ଆବଦ୍ଧ ହୋଇଥିଲେ । ଅବକାଶ ସମୟରେ ଚିତ୍ତବିନୋଦନ ଲାଗି ଉଭୟଙ୍କ ମଧ୍ୟରେ ସମାଜ, ଧର୍ମ ଆଦି ଉଚ୍ଚ ବିଷୟ ନେଇ କଥୋପକଥନ ହେଉଥିଲା । କଲେଜରେ ଅଧ୍ୟୟନ କାଳରେ ପ୍ୟାରୀମୋହନଙ୍କ ଉଦ୍ୟମଶୀଳତା ଓ ତେଜସ୍ୱିତାର ଜ୍ୱଳନ୍ତ ପ୍ରମାଣ ଦେଖାଯାଇଥିଲା । କ୍ଷୁଦ୍ର କଲେବର 'ଉତ୍କଳ ଦୀପିକା' ସେ ସମୟରେ ସମସ୍ତ ବିଷୟ ପ୍ରକାଶ କରିବାକୁ ଅସମର୍ଥ ଥିବାରୁ ପ୍ୟାରୀମୋହନ ଚାନ୍ଦା ସଂଗ୍ରହ କରି "ଉତ୍କଳପୁତ୍ର" ନାମକ ପତ୍ରିକାଟି ପ୍ରକାଶ

କରିଥିଲେ । ସେକାଳର ଗୋଟିଏ କ୍ଷୁଦ୍ର ପତ୍ରରେ ଏ ଉଦ୍ୟମ କେତେଦୂର ପ୍ରଶଂସନୀୟ, ତାହା ସାଧାରଣଙ୍କର ବୋଧଗମ୍ୟ । ପ୍ୟାରୀମୋହନ ସ୍ୱୟଂ ଏହାର ସମ୍ପାଦକତ୍ୱ ଗ୍ରହଣ କରିଥିଲେ ଏବଂ ଏ ପତ୍ରିକାରେ ପ୍ରକାଶିତ ଗୋଟିଏ ପ୍ରବନ୍ଧ ଲାଗି ତାଙ୍କୁ କଲେଜ ତ୍ୟାଗ କରିବାକୁ ହୋଇଥିଲା ।

୧୮୮୫ ଖ୍ରୀଷ୍ଟାବ୍ଦରେ ସ୍ଥାନୀୟ ଅନୁଶାସନପ୍ରଣାଳୀ (Local Self Government) ପ୍ରବର୍ତ୍ତିତ ହୋଇଥିଲା । ତତ୍ପୂର୍ବରୁ ମ୍ୟୁନିସି-ପାଲିଟି ବା ଜିଲାବୋର୍ଡର ସମସ୍ତ କାର୍ଯ୍ୟ ଜିଲା ମାଜିଷ୍ଟ୍ରେଟଙ୍କ ଦ୍ୱାରା ସମ୍ପାଦିତ ହେଉଥିଲା । ବର୍ଣ୍ଣିତ ସମୟରେ କଟକ ଜିଲାର ମାଜିଷ୍ଟ୍ରେଟ୍ ଥିଲେ ଏଲ୍‌ଭିଂ ସାହେବ । ଫେରି ଫଣ୍ଡ୍‌ରୁ ଅର୍ଥାତ୍ ଘାଟଅଦର ଟିକସରୁ ଯାହା ଆଦାୟ ହେଉଥିଲା, ସହରର ସ୍ୱାସ୍ଥ୍ୟରକ୍ଷଣପାଇଁ ସେଥିରୁ ବ୍ୟୟ କରାଯାଉଥିଲା । କିନ୍ତୁ ଏଲ୍‌ଭିଂ ସାହେବଙ୍କ ଅମଳରେ କଟକର ରାସ୍ତା ଘାଟ ଅତ୍ୟନ୍ତ ଅସ୍ୱାସ୍ଥ୍ୟକର ହୋଇ ପଡ଼ିଥିବାରୁ ଯୁବକ ନେତା ପ୍ୟାରୀମୋହନ କେତେକ ଅପ୍ରିୟ ସତ୍ୟ 'ଉତ୍କଳପୁତ୍ର'ର ସ୍ତମ୍ଭରେ ପ୍ରକାଶ କରିଥିଲେ । ଏହି ପ୍ରବନ୍ଧର ଶିରୋନାମା ଥିଲା, "ଦରଖାସ୍ତ ଯୁଦ୍ଧସ୍ଥାନ୍" ଅର୍ଥାତ୍ ଯୋଦ୍ଧାମାନଙ୍କର ଆବେଦନ । ଆମ୍ଭେମାନେ ପ୍ରବନ୍ଧଟି ପାଠ କରି ନାହୁଁ । କିନ୍ତୁ ଏହି ଶିରୋନାମାରୁହିଁ ଲେଖାର ଓଜସ୍ୱିତା କେତେକ ପରିମାଣରେ ଅନୁମିତ ହୋଇ ପାରେ । ଯାହା-ହେଉ, ଏହି ପ୍ରବନ୍ଧପାଠରେ ସାହେବ ମହୋଦୟ ପ୍ରଚଣ୍ଡ ହୋଇ ଉଠିଲେ ଏବଂ ସ୍କୁଲର ପ୍ରଧାନ ଶିକ୍ଷକ ଚଣ୍ଡୀଚରଣ ବାବୁଙ୍କୁ ଏହି ପ୍ରବନ୍ଧ-ଲେଖକ ଛାତ୍ରକୁ ସ୍କୁଲରୁ ବହିଷ୍କୃତ କରିଦେବାପାଇଁ ଆଦେଶ ଦେଲେ । ଚଣ୍ଡୀ ବାବୁ ପ୍ୟାରୀମୋହନଙ୍କୁ ସାହେବଙ୍କ ନିକଟରେ କ୍ଷମାପ୍ରାର୍ଥନା କରିବାପାଇଁ ପରାମର୍ଶ ଦେଲେ । ତେଜସ୍ୱୀ ବାଳକ ପ୍ରାଣାନ୍ତେ ମଧ୍ୟ ସତ୍ୟପଥରୁ ଚ୍ୟୁତ ହେବାର ନୁହନ୍ତି । ସେ ନିର୍ଭୀକଭାବରେ ଏ

ପ୍ରସ୍ତାବରେ ସ୍ୱୀୟ ଅସମ୍ମତି ଜଣାଇଲେ ଏବଂ ଫଳରେ ପାପର ଦଣ୍ଡ ସ୍ୱରୂପ ସେହିଠାରେ ତାଙ୍କର ବିଶ୍ୱବିଦ୍ୟାଳୟ ଶିକ୍ଷା ସାଙ୍ଗ ହୋଇଥିଲା ।

## ପ୍ୟାରୀମୋହନ ଏକାଡେମୀ ।

ସରକାରୀ ସ୍କୁଲରୁ ବହିଷ୍କୃତ ହୋଇ ପ୍ୟାରୀମୋହନ ଭାବିଲେ, ସହରରେ ଅନ୍ୟ କୌଣସି ସ୍କୁଲ ନ ଥିବାରୁ କର୍ତ୍ତୃପକ୍ଷମାନେ ସିନା ଏତେ ଦୂର ପ୍ରଭୁତ୍ୱ ଓ ଯଥେଚ୍ଛାଚାରର ବିସ୍ତାର କରୁଅଛନ୍ତି । ଅନ୍ୟ ଗୋଟିଏ ସ୍କୁଲ ହେଲେ ଛାତ୍ରମାନଙ୍କର ସ୍ୱାଧୀନତାର ବୃଦ୍ଧି ଏବଂ କର୍ତ୍ତୃପକ୍ଷୀୟ-ମାନଙ୍କର ଯଥେଚ୍ଛାଚାରର ହ୍ରାସ ଅବଶ୍ୟମ୍ଭାବୀ । ସଙ୍ଗେ ସଙ୍ଗେ ଏହି ବୀର ଯୁବକ ଗୋଟିଏ ନୂତନ ସ୍କୁଲ ବସାଇବା ପାଇଁ କୃତସଙ୍କଳ୍ପ ହେଲେ ଏବଂ ସ୍ୱୀୟ ବନ୍ଧୁମାନଙ୍କ ନିକଟରେ ତାଙ୍କର ଅଭିଳାଷ ପ୍ରକାଶ କଲେ । ସେତେବେଳେ ସେ କପର୍ଦ୍ଦକଶୂନ୍ୟ । ଧନାଗମର ଉପାୟ କିଛି ନାହିଁ । ସୁତରାଂ ତାଙ୍କର ଏ ସଙ୍କଳ୍ପରେ ତାଙ୍କୁ ବନ୍ଧୁମାନେ ବାତୁଳ ବୋଲି ଜ୍ଞାନ କଲେ । କିଏ ନ କରିବ ? କିନ୍ତୁ ଜଗତରେ ଯାହା କିଛି ମହତ୍ତ୍ୱ, ଯାହା କିଛି ଅଦର୍ଷ୍ଟାନୀୟ କାର୍ଯ୍ୟ ସମ୍ପାଦିତ ହୋଇଅଛି, ସେ ସମସ୍ତ ଏହି ବାତୁଳତାର ଫଳ, ଏହି ଖିଅଲବାଜୀ, ଲକ୍ଷ୍ମୀଛଡ଼ା-ମାନଙ୍କର ଉଦ୍ୟମ । ପ୍ୟାରୀମୋହନଙ୍କର ଧନ ନାହିଁ, ସମ୍ବଳ ନାହିଁ, ମାନ ନାହିଁ, ସମ୍ଭ୍ରମ ନାହିଁ ! ସମସ୍ତଙ୍କର ହାସ୍ୟାସ୍ପଦ ହୋଇ ସେ ଏହି କର୍ମରେ ମାତି ଉଠିଲେ । ତାଙ୍କର ସେହି ମରଣାନ୍ତ ସାଧନା, ଅଧ୍ୟବସାୟର ଫଳ ଓ ଅତି ଆଦରର ପ୍ୟାରୀମୋହନ ଏକାଡେମୀ କେଉଁ ଉତ୍କଳୀୟର ଅନ୍ତରରେ କ୍ଷଣକପାଇଁ ହେଲେ ଟିକିଏ ଉଦ୍ଦୀପନା ଆଣେ ନାହିଁ କି ? ନିଜେ ସାନ ସାନ ପରଚେସ୍ତ ଗ୍ରହଣ କରି, ଆହାର-ବସ୍ତ୍ର ସଙ୍କୋଚରେ ନିଜ ଶରୀରକୁ ପୀଡ଼ା ଦେଇ ଅହୋରାତ୍ରର ରାଶୀକୃତ ଅଧ୍ୟବସାୟ ଏହି ଯେ ଏକାଡେମୀରେ ସେ ଢାଳି ଦେଇଥିଲେ, ଏହା କ୍ଷଣକ ପାଇଁ ହେଲେ ଉତ୍କଳୀୟ ଯୁବକ ଅନ୍ତରକୁ ସ୍ପନ୍ଦିତ କରେ

ନାହିଁ କି ? ସାମାନ୍ୟ କରାନୀଗିରିରେ ମାସିକ ପଚିଶ ତିରିଶ ଟଙ୍କା ଅର୍ଜନଦ୍ୱାରା ଏହି ଯେ ଋଷିବାଳକ ମହାତ୍ୟାଗ ସ୍ୱୀକାର କରି ଆଜି ଅମର ହୋଇଅଛନ୍ତି, ଉତ୍କଳୀୟ ତାହାଙ୍କୁ ତାର ଯଥାଶକ୍ତି ଅର୍ଘ୍ୟ ପ୍ରଦାନ କରିବାକୁ ପଶ୍ଚାତ୍‌ପଦ ହେବେ କି ? କୃପାନିଧି ସାହୁଙ୍କ ପାଠ-ଶାଳାରୁ ଆସି ଯେଉଁ ବିଦ୍ୟାଳୟ ବିପିନଚନ୍ଦ୍ର ପାଲଙ୍କ ପରି ହେଡ଼ମାଷ୍ଟର ଲାଭ କରିଥିଲା, ତାହାର ଅନ୍ତସ୍ଥଳରେ ଯେଉଁ ବିରାଟ ଆତ୍ମା ଅହରହ ସ୍ପନ୍ଦିତ ହେଉଅଛି, ଏକାଡ଼େମୀର ଛାତ୍ର ତାହା କେବେ ଅନୁଭବ କରିଥାନ୍ତି କି ?

ମଧୁସୂଦନ ମଧ୍ୟ ପ୍ୟାରୀମୋହନଙ୍କର ସମଅବସ୍ଥାପନ୍ନ ଥିଲେ । ଦାରିଦ୍ର୍ୟନିଷ୍ପେଷିତ ହୋଇ ଆଜୀବନ ରୋଗର ଦାରୁଣ ଯନ୍ତ୍ରଣାରେ ମ୍ରିୟମାଣ ହୋଇ ସେ ମଧ୍ୟ "ମାତୃଭାଷା" "ମାତୃଭୂମି" ଉଭୟଙ୍କୁ ଜନନୀରୂପରେ ବନ୍ଦନା କରି ସେବା କରି ଯାଇଅଛନ୍ତି । ଏମାନଙ୍କର ବାହାରଟା ଅତି ଦୀନ ହେଲେହେଁ ଭିତରଟି ଅତ୍ୟନ୍ତ ସମୃଦ୍ଧିଶାଳୀ ଥିଲା । ସେଥିଲାଗି ବାହାରକୁ ଭ୍ରୂକ୍ଷେପ ନ କରି ଭିତରର ପ୍ରେରଣାରେ ଏମାନେ ବିଶ୍ୱସେବାବ୍ରତରେ ବ୍ରତୀ ହୋଇଥିଲେ । ଏମାନେ ଯେଉଁ ବଳଶାଳୀ ମନ ନେଇ ସଂସାରକୁ ଆସିଥିଲେ, ତାହା କର୍ତ୍ତବ୍ୟ ସାଧନ ପାଇଁ ସକଳ ଅନ୍ତରାୟ ଅତିକ୍ରମ କରି ଯାଇଥିଲା । ଯୁଗେ ଯୁଗେ ଏହି ଦରିଦ୍ର ଶ୍ରେଣୀର ଲୋକମାନେହିଁ ଦୀନ ଦୁଃଖୀଙ୍କ ପାଇଁ କାନ୍ଦି ଯାଇ-ଅଛନ୍ତି । ଦରିଦ୍ର ନ ହୋଇ ଜଗତରେ କେହି ବଡ଼ ହୋଇ ନାହିଁ । ବଡ଼ ବଡ଼ ମହାପୁରୁଷମାନଙ୍କ ନିକଟରେ ମଧ୍ୟ ଏହି ନିୟମ ପ୍ରଯୋଜ୍ୟ । ରାମଚନ୍ଦ୍ର ସିଂହାସନକୁ ତୁଚ୍ଛ କରି ଯେତେବେଳେ ବନବାସୀ ହେଲେ, ତାଙ୍କର ମହାତ୍ମ୍ୟ ଫୁଟିଲା ସେତେବେଳେ । ବୁଦ୍ଧଦେବ ରାଜଗାଦି ତ୍ୟାଗ କରି ଯେତେବେଳେ ଭିକ୍ଷୁ ହେଲେ, ସେତେବେଳେ ତାଙ୍କର ପୂଜା ଆରମ୍ଭ ହେଲା । ହରିଶ୍ଚନ୍ଦ୍ର ରାଜ୍ୟ ପୁତ୍ର ପତ୍ନୀ ତ୍ୟାଗ କରି

ଯେତେବେଳେ ଶ୍ମଶାନରେ ପ୍ରବେଶ ହେଲେ, ସେତେବେଳେ ସେ ପ୍ରେତ ଭୂଦସ୍ୟୁର ସିଂହାସନ ଅଧିକାର କରି ବସିଲେ ।

କିଛିକାଳ ପରେ ପ୍ୟାରୀମୋହନ ଉମପଡ଼ା ରାଜକୁମାରଙ୍କର ଗୃହଶିକ୍ଷକ ହୋଇ ଯାଇଥିଲେ । ରାଜସ୍ୱବୃଦ୍ଧି ଯୋଗେ ରାଜା ପ୍ରଜାଙ୍କ ମଧ୍ୟରେ ବିରୋଧ ଜନ୍ମିବାରୁ ଉତ୍କଳର ସୁନାମଧନ୍ୟ ଔପନ୍ୟାସିକ ଫକୀରମୋହନ ସେନାପତି ସେ ସ୍ଥାନର ମ୍ୟାନେଜରି ପରିତ୍ୟାଗ କଲେନ୍ତି ପ୍ୟାରୀମୋହନ ଉକ୍ତ ପଦକୁ ମାସିକ ଟ ୫୦୲ ବେତନରେ ଉନ୍ନୀତ ହୋଇଥିଲେ ଏବଂ ମଧୁସୂଦନ ରାଜକୁମାରଙ୍କର ଶିକ୍ଷାର ଭାର ଗ୍ରହଣ କରିଥିଲେ । ତଦାନୀନ୍ତନ ରାଜା ରଘୁନାଥ ମାନସିଂହ ଜଣେ ଯଥାର୍ଥ ଗୁଣଗ୍ରାହୀ ପୁରୁଷ ଥିଲେ । ନ ହେଲେ ଉତ୍କଳର ରତ୍ନଗୋଟି ବର-ପୁତ୍ରଙ୍କୁ ସେ ବରଣ କରିଥାନ୍ତେ କି ? ଯାହାହେଉ ଉମପଡ଼ାରେ ଅବସ୍ଥିତି କାଳରେ ପ୍ୟାରୀମୋହନଙ୍କର ବିଦ୍ୟାଳୟର ପରିଚାଳନା ସୁଚାରୁ ହୋଇ ପାରିଥିଲା । ସ୍ୱୟଂ ଉମପଡ଼ାର ରାଜା ମଧ୍ୟ କିଛିକାଳ ପର୍ଯ୍ୟନ୍ତ ଉକ୍ତ ବିଦ୍ୟାଳୟର ବ୍ୟୟ ବହନ କରିଥିଲେ ।

ପ୍ୟାରୀମୋହନ ସର୍ବଦା ସତ୍ୟ ଓ ନ୍ୟାୟର ପକ୍ଷ ସମର୍ଥନ କରୁଥିଲେ । ଯେତେଦୂର ପରିଚିତ ଲୋକ ହେଲେହେଁ ଏବଂ ନିଜର ଏକାନ୍ତ ବନ୍ଧୁ ହେଲେହେଁ ତାଙ୍କୁ କେବେ ସତ୍ୟ ଓ ନ୍ୟାୟପଥରୁ ବିଚ୍ୟୁତ ହେବାର ଦେଖିଲେ ସେ ବଡ଼ ଘୃଣା କରୁଥିଲେ । ଦୀନ ଦୁଃଖିମାନଙ୍କ ଉପରେ କୌଣସି ସ୍ଥାନରେ କିଛି ଅତ୍ୟାଚାର ହେବାର ଦେଖିଲେ ସେ ତାହା ନିବାରଣପାଇଁ ବ୍ୟାକୁଳ ହୋଇ ପଡ଼ୁଥିଲେ । ବାଙ୍କି ତହସିଲ୍‌ଦାରଙ୍କ ଅତ୍ୟାଚାର ବିରୁଦ୍ଧରେ ସହକର୍ମୀ ପଣ୍ଡିତ ଗୋବିନ୍ଦ ରଥଙ୍କ ମକଦ୍ଦମା ପକ୍ଷରେ ଦଣ୍ଡାୟମାନ ହୋଇ ସେ ଉକ୍ତ ମହୋଦୟଙ୍କୁ କିପରି ଉତ୍ସାହିତ କରୁଥିଲେ, ବାଙ୍କିର ଡେପୁଟିଙ୍କ ଅନ୍ୟାୟାଚରଣ ସମ୍ବନ୍ଧରେ ସମ୍ବାଦପତ୍ରମାନଙ୍କରେ ଆନ୍ଦୋଳନ କରିବା ପାଇଁ କିପରି

ପରାମର୍ଶ ଦେଉଥିଲେ, ତାହା ଭକ୍ତି ପଣ୍ଡିତଙ୍କ ନିକଟକୁ ଲିଖିତ ତାଙ୍କ ପତ୍ରରୁ ସ୍ପଷ୍ଟ ଜଣାଯାଏ ।

ଅତ୍ୟାଗ୍ରହରତମାନଙ୍କ ପକ୍ଷସମର୍ଥନ କରିବାର ଲୋକ ଦୁଇ ପ୍ରକାର ହୋଇ ପାରନ୍ତି । କାହାର ହୁଏତ ଏକର ଅନ୍ୟ ଉପରେ ଅତ୍ୟଧିକ ପ୍ରଭୁତ୍ୱ ଅସହ୍ୟ ହୋଇ ଉଠେ । ସେ ତାର ସେହି ପ୍ରଭୁତ୍ୱକୁ କ୍ଷୁଣ୍ଣ କରି ତତ୍ପରିବର୍ତ୍ତେ ସ୍ୱୀୟ ପ୍ରଭୁତ୍ୱ ବିସ୍ତାର କରିବାକୁ ବସେ । ଆଉ କାହାରି ଆର୍ତ୍ତଲୋକର ଦୁଃଖରେ ଅନ୍ତର ବ୍ୟାକୁଳ ହୋଇ ଉଠେ, ସେ କୌଣସି ଅଧିକାରର ପ୍ରତ୍ୟାଶୀ ନୁହେ । ଦୁଃଖୀକୁ ଉଦ୍ଧାର କରିବାହିଁ ତାର ପ୍ରଧାନ ଲକ୍ଷ୍ୟ । ପ୍ୟାରୀମୋହନଙ୍କର ସେବା ଶେଷୋକ୍ତ ଧରଣର ତାହା ପ୍ରଯୋଜନାତୀତ । ନ ହେଲେ ସେ ନିଜର କି ପ୍ରତିପତ୍ତି ଲାଗି, ନିଜର କି ପ୍ରୟୋଜନସିଦ୍ଧିପାଇଁ କଟକରୁ ପୁରୀ ଅଭିମୁଖରେ ଯାତ୍ରା କରି ଜଗନ୍ନାଥ ସଡ଼କର ପାର୍ଶ୍ୱଦେଶରେ ପଥଶାୟୀ ବିସୂଚିକାଗ୍ରସ୍ତ ରୋଗିମାନଙ୍କର ସେବା କରିଥାନ୍ତେ ?

ମାତୃଭାଷାର ଉନ୍ନତିକଳ୍ପେ ମଧ୍ୟ ସେ ମନ ପ୍ରାଣ ଢାଳି ଦେଇଥିଲେ । ୧୮୭୦ ଖ୍ରୀଷ୍ଟାବ୍ଦରେ ପାଠ୍ୟପୁସ୍ତକ ଲେଖିବା ପାଇଁ ଯେତେବେଳେ ସରକାର ପକ୍ଷରୁ ପୁରସ୍କାର ଘୋଷିତ ହେଲା, ସେତେବେଳେ ପ୍ରଥମେ ପ୍ୟାରୀମୋହନ ଉତ୍କଳର ଗୋଟିଏ ସର୍ବାଙ୍ଗସୁନ୍ଦର ଇତିହାସ ଲେଖିଥିଲେ । ଏ ପୁସ୍ତକ ସମ୍ବନ୍ଧରେ ସ୍ୱର୍ଗୀୟ ପଣ୍ଡିତ ମୃତ୍ୟୁଞ୍ଜୟ ରଥ କହିଅଛନ୍ତି, "ଐତିହାସିକ ଉପକରଣ ସଂଗ୍ରହ ଓ ସାହିତ୍ୟିକ ମର୍ଯ୍ୟାଦାର ଗଣନାରେ ଏପ୍ରକାର ପୁସ୍ତକ ଏପର୍ଯ୍ୟନ୍ତ ଆଉ କାହାରି ନାହିଁ ବୋଲିବାକୁ ହେବ ।" ପୁସ୍ତକ ଖଣ୍ଡି ଲେଖି ପୁରସ୍କାର ସ୍ୱରୂପ ପ୍ୟାରୀମୋହନ ତିନିଶତ ମୁଦ୍ରା ଲାଭ କଲେ । କିନ୍ତୁ ପୁସ୍ତକ ଖଣ୍ଡି ଅଧିକକାଳ ବିଦ୍ୟାଳୟରେ ପ୍ରଚଳିତ ହୋଇ ପାରିଲା ନାହିଁ । ସ୍ୱର୍ଗୀୟ କାଳୀପଦ ବନ୍ଦ୍ୟୋପାଧ୍ୟାୟଙ୍କ ଦ୍ୱାରା ଏବଂ 'ଉତ୍କଳହିତୈଷିଣୀ' ପତ୍ରିକାରେ ଏହାର

କେତେକ ପ୍ରସଙ୍ଗ ବିରୁଦ୍ଧରେ ଘୋର ପ୍ରତିବାଦମାନ ପ୍ରକାଶିତ ହେଲା । ବର୍ତ୍ତମାନ ଏହାର ଏକ ନୂତନ ନିର୍ଦ୍ଦୋଷ ସଂସ୍କରଣ ପ୍ରକାଶିତ ହୋଇଅଛି ।

ପ୍ୟାରୀମୋହନଙ୍କର ପାରିବାରିକ ଜୀବନ ଦୁଃଖପୂର୍ଣ୍ଣ ଥିଲା । କନିଷ୍ଠଭ୍ରାତାମାନେ ଉଚ୍ଛୃଙ୍ଖଳ ହୋଇ ତାଙ୍କୁ ଅହରହ ଯନ୍ତ୍ରଣା ଦେଉ-ଥିଲେ । ସେ ପୁଣି ନିଜେ ଗୃହର ଲକ୍ଷ୍ମୀଛଡ଼ା ପୁତ୍ର ହୋଇ ଥିବାରୁ କାହାରି ସହିତ ତାଙ୍କର ମନ ମିଳୁ ନ ଥିଲା । ସବୁଠାରୁ ପୁଣି ବଡ଼ ଦୁଃଖ ତାଙ୍କୁ ଏହି ଯୌବନାବସ୍ଥାରେ ସହ୍ୟ କରିବାକୁ ହୋଇଥିଲା । ଏହି ସମୟରେହିଁ ତାଙ୍କର ସହଧର୍ମିଣୀଙ୍କର ବିୟୋଗ ହେଲା । ଦ୍ୱିତୀୟ ବାର ଦାରପରିଗ୍ରହ କରି ସେହି ପତ୍ନୀଙ୍କ ଗର୍ଭରୁ ମୃତ୍ୟୁର କେତେକ ମାସ ପୂର୍ବରୁ ସେ ଗୋଟିଏ ପୁତ୍ର ସନ୍ତାନ ଲାଭ କରିଥିଲେ । ନ ହେଲେ ମୃତ୍ୟୁଞ୍ଜୟ ବାବୁ ଯେପରି ଲେଖିଅଛନ୍ତି—"ପୁତ୍ରମନ୍ଦିରନିର୍ମାତା ମହାରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ପରି ତାଙ୍କ କୁଳରେ କେହି ନ ଥିଲେ ସୁଦ୍ଧା ଏକୋଡେମୀରୂପ ବନ୍ଧୁ-ହେଉଳଦ୍ୱାରା ସେ ଶ୍ରାଦ୍ଧାଞ୍ଜଳି ପାଇ ଥାଆନ୍ତେ ।"

ତାଙ୍କର ମୃତ୍ୟୁ ବଡ଼ ଆକସ୍ମିକ ଭାବରେ ଘଟିଥିଲା । ମୃତ୍ୟୁର କିଛି ଦିନ ପୂର୍ବେ ସେ ଥରେ ତମପଡ଼ା ରାଜାଙ୍କ ସହିତ ପାରିଧିକୁ ଯାଇଥିଲେ । ଜଙ୍ଗଲ ମଧ୍ୟରେ ସ୍ୱଚ୍ଛଜଳପୂର୍ଣ୍ଣ ଗୋଟିଏ ଝରଣା ଦେଖି ସେ ସେଥିରେ ସ୍ନାନ କରିବାକୁ ମନ ବଳାଇଥିଲେ । ଅନ୍ୟମାନଙ୍କର ନିଷେଧ ସତ୍ତ୍ୱେ ସେ ସେଠିରେ ଅବଗାହନ କରି ପରଦିନ ପ୍ରବଳଜ୍ୱରାକ୍ରାନ୍ତ ହୋଇ ପଡ଼ିଲେ । ସେଦିନ ୧୮୮୧ ମସିହା ଡିସେମ୍ବର ୨୩ ତାରିଖ ଶନିବାର । ଜ୍ୱରଦେହରେ ସେ କଟକ ଫେରି ଆସିଲେ । ପୀଡ଼ା ସମ୍ବାଦ ଶୁଣି ପାରି ତାଙ୍କର ପରମାତ୍ମୀୟ ମଧୁସୂଦନ ଅବିଳମ୍ବେ ତାଙ୍କ ସହିତ ସାକ୍ଷାତ କରି-ଥିଲେ । ତାଙ୍କୁ ଦେଖି ସ୍ନେହବିଗଳିତ ସ୍ୱରରେ ପ୍ୟାରୀମୋହନ କହିଲେ, "ମଧୁ, ତୁମେ ଆସିଛ ?" ତତ୍ପରେ ଗମ୍ଭୀର ହୋଇ ତାଙ୍କ ମସ୍ତକରେ

ହସ୍ତ ସଞ୍ଚାଳନ କରିବାକୁ ଲାଗିଲେ । ଯେତେ ଚିକିତ୍ସା କରାଗଲା, କାହିଁରେ ତାଙ୍କର ସେ ଦାରୁଣ ରୋଗର ଉପଶମ ହେଲା ନାହିଁ । ରୋଗଶଯ୍ୟାରେ ବନ୍ଧୁମାନଙ୍କ ସହିତ ସେ ବରାବର ମଧୁର ବ୍ୟବହାର କରିଥିଲେ । ଅବଶେଷରେ ଡିସେମ୍ବର ୨୮ ତାରିଖ ଗୁରୁବାର ପୂର୍ବାହ୍ଣ ୯ ଘଟିକା ସମୟରେ ସେ ଇହଲୀଳା ସାଙ୍ଗ କରିଥିଲେ । ମଧୁସୂଦନ ଏ ଘଟଣା ବର୍ଣ୍ଣନା କରିବା କାଳରେ ତାଙ୍କର କୋମଳ ପ୍ରାଣ କିପରି ବ୍ୟଥିତ ହୋଇ ଉଠୁଥିଲା, ଦୁଇ ଚକ୍ଷୁ କିପରି ସଜଳ ହୋଇ ପଡୁଥିଲା, ତାହା ତାଙ୍କର ଅନେକ ବନ୍ଧୁ ଦର୍ଶନ କରିଥିବେ !

ପ୍ୟାରୀମୋହନଙ୍କ ସହିତ ମଧୁସୂଦନଙ୍କର ଯେ ବନ୍ଧୁତା ଥିଲା, ତାହା ଇହଲୋକରେ ଦୁର୍ଲଭ । ସ୍ୱୀୟ ମୃତ୍ୟୁର ପୂର୍ବ ବର୍ଷ ପ୍ୟାରୀମୋହନଙ୍କ ଶ୍ରାଦ୍ଧସଭାରେ ସେ ଯେତେବେଳେ ଗଦଗଦକଣ୍ଠରେ ଅଶ୍ରୁପୂର୍ଣ୍ଣନୟନରେ କହିଥିଲେ, "ପ୍ୟାରୀମୋହନ ଯେ ମୋର କି କୋଟି ନିଧି ଥିଲେ, ତାହା ମୁଁ ଭାଷାରେ ପ୍ରକାଶ କରି ପାରିବି ନାହିଁ । ଚରମ ମୁହୂର୍ତ୍ତରେ ତାହାଙ୍କର ଚରଣସେବା ରୂପ ପୁଣ୍ୟ ଅଧିକାର ପାଇ ଏ ଜୀବନ ଧନ୍ୟ ହୋଇଅଛି ।" ମଧୁସୂଦନଙ୍କ ହୃଦୟବତ୍ତା ଏଥିରୁ ସ୍ପଷ୍ଟ ପ୍ରକାଶିତ ହେଉଅଛି । ବୃଦ୍ଧ ବୟସରେ ଜଣେ ବନ୍ଧୁର ମୃତ୍ୟୁ ଚିନ୍ତାରେ ଏପରି ଶୋକ ପ୍ରକାଶ କରିବା ଅତ୍ୟଳ୍ପ ଲୋକଙ୍କ ପକ୍ଷରେ ସମ୍ଭବ ହୋଇ ପାରେ । ଦୁଇ ବନ୍ଧୁ ଯେପରି ପରସ୍ପରନିଷ୍ଠ ଓ ଏକମତାବଲମ୍ବୀ ଥିଲେ, କର୍ମକ୍ଷେତ୍ର ଓ ଧର୍ମ-ସାଧନରେ ମଧ୍ୟ ସେହିପରି ଦୁହେଁ ସହଗାମୀ ହୋଇଥିଲେ । ୧୮୭୧ ଅବ୍ଦରେ ନବଯୁଗର ସଂସ୍କାରକ ସ୍ୱନାମଧନ୍ୟ କେଶବଚନ୍ଦ୍ର ସେନଙ୍କ ପ୍ରବର୍ତ୍ତନାରେ ଯେତେବେଳେ ବ୍ରାହ୍ମ ବିବାହ ଆଇନର ପାଣ୍ଡୁଲିପି (କନ୍ୟାର ବୟସ ଚଉଦ ଏବଂ ବରର ବୟସ ଅଠରରୁ କମ ହେଲେ ଉଭୟ ମଧ୍ୟରେ ବିବାହକ୍ରିୟା ନହିବ) ବିଧିବଦ୍ଧ ହେବାକୁ ବସିଲା ଏବଂ ସେଥିରେ ସାଧାରଣଙ୍କ ମତ ଆବଶ୍ୟକ ହେଲା, ସେତେବେଳେ

ଉତ୍କଳରୁ ଦୁଇ ଜଣ ଯୁବକ ଏହା ପକ୍ଷରେ ମତ ଦେଇ ସ୍ୱୀୟ ସାହସ ଓ ତେଜସ୍ୱିତାର ପରିଚୟ ଦେଖାଇ ଦେଲେ । ପୁନଶ୍ଚ ଯେତେବେଳେ କେଶବଚନ୍ଦ୍ରଙ୍କ କନ୍ୟା ଚଉଦବର୍ଷରୁ ଅଳ୍ପବୟସ୍କା ଥିଲେହେଁ କୁଚ-ବିହାର ମହାରାଜାଙ୍କ ସହିତ ତାଙ୍କର ବିବାହ ପ୍ରସ୍ତାବ ଆଗତ ହେଲା, ସେତେବେଳେ ଉକ୍ତ ଦୁଇ ଜଣ ଯୁବକହିଁ ଏହା ବିରୁଦ୍ଧରେ ମତ ଦେଇ ସ୍ୱୀୟ ନିର୍ଭୀକ ସ୍ୱାଧୀନଭାବର ନିଦର୍ଶନ ଦେଖାଇଥିଲେ । ସେହି ସମୟ-ରୁହିଁ ଏମାନେ ବାଲ୍ୟବିବାହପ୍ରଥା ସମାଜର କ୍ଷତିକାରକ ବୋଲି ତାହା ବିରୁଦ୍ଧରେ ଖଡ୍ଗୋତ୍ତୋଳନ କରିଥିଲେ । ଯେ ପୁଣ୍ୟାତ୍ମା ଯୁବକଦ୍ୱୟ ଆମ୍ଭମାନଙ୍କର ପ୍ୟାରୀମୋହନ ମଧୁସୂଦନଙ୍କ ବ୍ୟତୀତ ଆଉ କେହି ନୁହନ୍ତି । ବନ୍ଧୁପ୍ରୀତି ମଧୁସୂଦନଙ୍କ ପ୍ରାଣରେ କିପରି ବଦ୍ଧମୂଳ ହୋଇ ଯାଇଥିଲା, ତାହା "ବସନ୍ତଗାଥା"ର ନିମ୍ନୋଦ୍ଧୃତ ଶ୍ଳୋକରୁ ସ୍ପଷ୍ଟ ପ୍ରତୀୟମାନ ହେବ ।

"ସଂସାର ସାଗର ପାରେ ମହାନିଦ୍ରାମୟ
ପରଲୋକଧାମେ ସଖା ଅଛ ଦେବଦଳେ,
ଭୀମ ଭବସିନ୍ଧୁ କୋଳେ ବ୍ୟାକୁଳ ଅଥୟ
ଏକାକୀ ଭାସୁଛି ମୁହିଁ ଶୋକଅଶ୍ରୁଜଳେ,
ବ୍ୟଥିତ ତୃଷିତ ମୁଁ ଏ ସଂସାରସଂଗ୍ରାମେ,
ଦେବ କି ହେ ପାଟନ, ସଖା, ବିନ୍ଦୁ ସେ ପ୍ରେମର ?"

ପୂର୍ବେ କୁହାଯାଇଅଛି, ଏଫ୍. ଏ. ପାସ୍ ହେବା ପରେ ପିତାଙ୍କର ଅନିଚ୍ଛାଯୋଗେ ମଧୁସୂଦନଙ୍କର ବିଶ୍ୱବିଦ୍ୟାଳୟର ଶିକ୍ଷା ଏହିଠାରେ ସାଙ୍ଗ ହୋଇଥିଲା । କିନ୍ତୁ ଏହି ଦିନୁ ତାଙ୍କର ଯଥାର୍ଥ ଶିକ୍ଷା ଆରମ୍ଭ ହେଲା । ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ତାଙ୍କୁ ଯେ କେତେଦିନ ଅବସର ମିଳିଥିଲା, ସେହି ସମୟ ମଧ୍ୟରେ ତାଳପତ୍ର ପୋଥିରୁ ସେ ପୁରାତନ ଓଡ଼ିଆ ସାହିତ୍ୟ ଚର୍ଚ୍ଚା କରିବାର ସୁଯୋଗ ଲାଭ କରିଥିଲେ ।

ଏହି ସମୟ ମଧ୍ୟରେହିଁ ସେ ନାନା ଧର୍ମର ଆଲୋଚନା କରୁଥିଲେ । ଚୈତନ୍ୟ, ନାନକ, କବୀର, ଯିଶୁ, ମହମ୍ମଦ, ଲୁଥର, ବୁଦ୍ଧ, ଶଙ୍କର ପ୍ରଭୃତି ମହାପୁରୁଷମାନଙ୍କ ଜୀବନ ଆଲୋଚନା କରି ସେ ନିଜକୁ କୃତାର୍ଥ ମଣୁଥିଲେ । ସର୍ବାପେକ୍ଷା ବୁଦ୍ଧଚରିତ ତାଙ୍କର ଅତିବ ପ୍ରିୟ-ବସ୍ତୁ ଥିଲା ।

"ପୌରୋହିତ୍ୟ ଅତ୍ୟାଚାରରେ ଚିର ଜର୍ଜରିତ,
ସର୍ବଥା ଜଡ଼ିତ କୁପଧର୍ମ-ଅନ୍ଧକାରେ
ଥିଲା ଏ ଭାରତଭୂମି ଯୁଗାନ୍ତ ପୀଡ଼ିତ,
ଯେବେ ଶାକ୍ୟସିଂହ ବୁଦ୍ଧ ତେଜି ରାଜଭୋଗ
ତପସ୍ୟାସାଗରେ ମଜ୍ଜି ଲଭିଲେ ସେ ଗୋଟେ
ନିର୍ବାଣ ତତ୍ତ୍ୱରତନ ।"

ବୁଦ୍ଧଦେବଙ୍କ କଥାରେ ତାଙ୍କ ପ୍ରାଣ ପ୍ରେମାପ୍ଲୁତ ହୋଇ ଉଠୁଥିଲା । ଥରେ 'ଟାଉନ୍ ହଲ'ରେ ବୁଦ୍ଧଦେବଙ୍କ ବିଷୟରେ ବକ୍ତୃତା ଦେଲାବେଳେ ସେ କହିଥିଲେ, "ଈଶା କହିଥିଲେ, 'ମୋତେ ପୂଜା କର, ଈଶ୍ୱରଙ୍କୁ ପାଇବ ।' ମହମ୍ମଦ କହିଥିଲେ, 'ମୁଁ ଈଶ୍ୱରଙ୍କ ଦୂତ ।' ଶ୍ରୀକୃଷ୍ଣ କହିଥିଲେ, 'ମୁଁ ନିଜେ ଈଶ୍ୱର ।' କିନ୍ତୁ ବୁଦ୍ଧଦେବ ନିଜେ ନିଜକୁ ମନୁଷ୍ୟ ବୋଲି କହି ସାର୍ବଜନୀନ ମୈତ୍ରୀରେ ମନୁଷ୍ୟକୁ ପ୍ରେମରେ ଆଲିଙ୍ଗନ କରି ଆତ୍ମଶୁଦ୍ଧି ଓ ପ୍ରାଣର ନିଷ୍ଠାରେ ନିର୍ବାଣ ପ୍ରାପ୍ତିର ଉପଦେଶ ଦେଇଥିଲେ । ବୁଦ୍ଧଦେବଙ୍କ ଉପଦେଶ ସବୁଠାରୁ ବେଶି ନିରବଲମ୍ବ ଓ ବୌଦ୍ଧ ପ୍ରାଣ ସାର୍ବଜନୀନ ମୈତ୍ରୀ ଓ ସୁଦୃଢ଼ ବିଶ୍ୱାସମନ୍ତ୍ର ନିର୍ଭରତାରେ ବିଶ୍ୱପ୍ରେମ ପ୍ରତି ଉନ୍ମୁକ୍ତ ।"

# ସପ୍ତମ ପରିଚ୍ଛେଦ ।

## ଗୃହକର ପ୍ରବେଶ ।

## ପୁରୀରେ ଶିକ୍ଷକତା ।

ମଧୁସୂଦନ ଏଫ୍ ଏ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାର କିଛି-କାଳ ପରେ ଅର୍ଥାତ୍ ୧୮ ବର୍ଷ ମାତ୍ର ବୟସରେ ପୁରୀ ଜିଲ୍ଲା ସ୍କୁଲର ତୃତୀୟ ଶିକ୍ଷକ ପଦରେ ନିଯୁକ୍ତ ହେଲେ । ସାମାନ୍ୟ ବେତନ ଲଭି କରି ତାଙ୍କର **ଅର୍ଥିକ** ଅଭାବ ଯେ ମୋଚନ ହୋଇଥିବ, ଏହା ମନେ ହୁଏ ନାହିଁ । କିନ୍ତୁ ଏତେ ଅଳ୍ପରେ ତାଙ୍କର ଜୀବନ ଆରମ୍ଭ କରି ମଧ୍ୟ ସେ କୌଣସି ଦିନ ନିଜ ଅବସ୍ଥା ପ୍ରତି ଅସନ୍ତୁଷ୍ଟ ହେବାର ଜଣା ଯାଇ ନାହିଁ । ଏଥିରେହିଁ ସେ ସେହି ବିଶ୍ୱ ସ୍ୱରୂପ ସ୍ୱର୍ଗମଣି ହୃଦୟରେ ଧରି ମଙ୍ଗଳମୟଙ୍କ ମଧୁର ଇଙ୍ଗିତ ଚାହିଁ ଯାଇଅଛନ୍ତି । ଏହାହିଁ ତାଙ୍କର ମହତ୍ତ୍ୱର ଲକ୍ଷଣ । ଦାରିଦ୍ର୍ୟନିଷ୍ପେଷିତ ହୋଇ ସେ ଦିନେ ହେଲେ ଏ ବିଶ୍ୱାସରୁ ବିଚ୍ୟୁତ ହୋଇ ନାହାନ୍ତି । ଆଜି ମଧ୍ୟ ଚିକିତ୍ସାବିଭାଗରେ କାର୍ଯ୍ୟ କରିବାକୁ ପବିତ୍ରତମ କର୍ତ୍ତବ୍ୟ ଜ୍ଞାନ କରି ସେଥିରେ ସମସ୍ତ ଜୀବନ ବ୍ୟୟ କରି ଯାଇଅଛନ୍ତି ।

ପୁରୀରେ ଗୃହକର କରି ତାଙ୍କୁ ସଂସ୍କୃତ ଓ ଧର୍ମଚର୍ଚ୍ଚା ଲାଗି ଅଧିକ ସୁବିଧା ମିଳିଥିଲା । ଏଥିପୂର୍ବରୁ ତାଙ୍କର ସାହିତ୍ୟାନୁରାଗର ପରିଚୟ ମିଳି ସାରିଥିଲା । ସେ ଇଂରେଜୀ ଭାଷାରୁ ସନେଟ୍ ପ୍ରଭୃତି ଶ୍ରେଷ୍ଠ ଶ୍ରେଷ୍ଠ କବିତା କେତେଗୁଡ଼ିଏ ଅନୁବାଦ କରିଥିଲେ ଏବଂ ସେ ସକଳ ଅନୁବାଦର ନିପୁଣତାଯୋଗୁଁ ଉତ୍କଳ ସାହିତ୍ୟିକ ସମାଜରେ ପ୍ରଶଂସିତ ହୋଇଥିଲେ । ସୁଯୋଗ ପାଇଲେ ସେ ଛାତ୍ରମାନଙ୍କୁ ଉପଦେଶ ଦେଉ-ଥିଲେ, "ଓଡ଼ିଆରେ କିଛି କିଛି ଲେଖ, ଯଦି ନ ପାରୁଛ, ତେବେ

ଇଂରେଜୀ ଭାଷାରୁ ଭଲ ଭଲ ପଦ୍ୟ ଓ ଗଦ୍ୟ ଓଡ଼ିଆରେ ଅନୁବାଦ କର ।" ପୁରୀ ଅବସ୍ଥାନ ସମୟରେହିଁ ସେ ତାଙ୍କର ବନ୍ଧୁ ବଳରାମ ବାବୁଙ୍କୁ 'କୁମାରସମ୍ଭବ"ର ଅନୁବାଦପାଇଁ ଅନୁରୋଧ କରୁଥିଲେ । ଛାତ୍ରମାନଙ୍କୁ ସେ ଆପଣାର ଛୋଟ ଭାଇ ପରି ଜ୍ଞାନ କରି ସେମାନଙ୍କ ସଙ୍ଗେ ସେହିପରି ବ୍ୟବହାର କରୁଥିଲେ । ସେଥିପାଇଁ ସବୁ ସ୍କୁଲରେ ସେ ସେମାନଙ୍କର ଏକାନ୍ତ ପ୍ରିୟ ହୋଇ ଉଠିଥିଲେ । ଏହା ତ ତାଙ୍କ ପକ୍ଷରେ ସ୍ୱାଭାବିକ, ଯଥାର୍ଥରେ ତାଙ୍କ ଅପ୍ରିୟ ଦୃଷ୍ଟିରେ ଦେଖିବା ଯେ କାହାରି ପକ୍ଷରେ କଷ୍ଟସାଧ୍ୟ ।

## ଯାଜପୁରରେ ଶିକ୍ଷକତା ।

ପୁରୀରେ କିଛିକାଳ ଅବସ୍ଥାନ ପରେ ସେଠାରୁ ଆସି ମଧୁସୂଦନଙ୍କୁ କଟକରେ କିଛି ଦିନ ରହିବାକୁ ହୋଇଥିଲା । ଏହି ସମୟରେ ଜିଲ୍ଲା ସବୁ ସବ୍‌ଡିଭିଜନରେ ବିଭକ୍ତ କରାଯାଇଥିଲା । ଯାଜପୁର ସବ୍‌ଡିଭିଜନରେ ସେତେବେଳେ ଗୋଟିଏ ମାଇନର୍ ସ୍କୁଲ ବସିଥିଲା ଏବଂ ମଧୁସୂଦନ ସେଠାରେ ପ୍ରଧାନ ଶିକ୍ଷକ ପଦରେ ନିଯୁକ୍ତ ହୋଇଥିଲେ । ବର୍ତ୍ତମାନ ତାଙ୍କ ସହିତ ତାଙ୍କର ସହଧର୍ମିଣୀ ମଧ୍ୟ ଯାଜପୁରକୁ ଯାତ୍ରା କରିଥିଲେ । ଯାଜପୁରରେ ସଂସ୍କୃତ ଚର୍ଚ୍ଚା କରିବାପାଇଁ ସେପରି ମନୋମତ ପଣ୍ଡିତ ନ ପାଇ ମଧୁସୂଦନ ନିଜେ ନିଜେ ଭବଭୂତି, କାଳିଦାସ ପ୍ରଭୃତିଙ୍କ ଆରାଧନାରେ ନିବିଷ୍ଟଚିତ୍ତ ରହିଲେ । ସହଧର୍ମିଣୀଙ୍କ ସହିତ ସେ ନିସ୍ତବ୍ଧ ନିଶୀଥକାଳରେ ଆକାଶକୁ ଚାହିଁ ବ୍ୟାକୁଳ ଭାବରେ ଭଗବାନଙ୍କୁ ପ୍ରାର୍ଥନା କରୁଥିଲେ ।

ଯାଜପୁର ଉତ୍କଳର ଅତି ପ୍ରାଚୀନ ପୌରାଣିକ ଓ ଐତିହାସିକ ସ୍ଥାନ । ଏଠାରେ ହିନ୍ଦୁ ଧର୍ମ ଓ ସାହିତ୍ୟର ସାମଞ୍ଜସ୍ୟ ଘଟିଥିଲା । ଜନ୍ମଭୂମିବତ୍ସଳ ମଧୁସୂଦନ ଉତ୍କଳର ମହିମାମୟ ମୂର୍ତ୍ତି ସନ୍ଦର୍ଶନ କରି ନୟନ ମନ କୃତାର୍ଥ କରିଥିଲେ ।

## ବାଲେଶ୍ୱରରେ ଶିକ୍ଷକତା ।

ଯାଜପୁରରେ କିଛିକାଳ ଅବସ୍ଥାନ କରି ମଧୁସୂଦନ ଜାଣି ପାରିଲେ ଯେ, ବାଲେଶ୍ୱର ଜିଲ୍ଲା ସ୍କୁଲର ଦ୍ୱିତୀୟ ଶିକ୍ଷକ ପଦ ଖାଲି ଅଛି । ସେ ସେଥିରେ ପ୍ରବେଶ ଲାଭ କରିବାପାଇଁ ଚେଷ୍ଟା କରି କୃତକାର୍ଯ୍ୟ ହେଲେ । ଜିଲ୍ଲା ସ୍କୁଲରେ ଶିକ୍ଷକତା କରିବା ବ୍ୟତୀତ ଏଠାରେ ତାଙ୍କୁ ଗୋଟିଏ ଅଭାବନୀୟ ସୁଯୋଗ ମିଳି ଯାଇଥିଲା । ଏଠାରେ ସେ ଉତ୍କଳର ସୁପୁତ୍ର ରାଜା ବୈକୁଣ୍ଠନାଥଦେ ଏବଂ ସୁଲେଖକ ସରସ୍ୱତୀ ଫକୀରମୋହନ ସେନାପତିଙ୍କର ସାହଚର୍ଯ୍ୟ ଲାଭ କରି ପାରିଥିଲେ । ତାଙ୍କର ପରମାରାଧ୍ୟ ଗୁରୁ ରାଧାନାଥଙ୍କ ସହିତ ମଧ୍ୟ ଏହିଠାରେ ପୁନର୍ମିଳନ ଘଟିଥିଲା । ଏହି ସମୟରେ ବାଲେଶ୍ୱର ଯଥାର୍ଥରେ ସାହିତ୍ୟଚର୍ଚ୍ଚାର ଗୋଟିଏ କେନ୍ଦ୍ର ହୋଇ ଉଠିଲା । ଊନବିଂଶ ଶତାବ୍ଦୀରେ ଉତ୍କଳସାହିତ୍ୟାକାଶରେ ଯେ କେତେଗୋଟି ନକ୍ଷତ୍ର ଉଜ୍ଜ୍ୱଳତମ ହୋଇ ପ୍ରତିଭାତ ହେଉଥିଲେ ଏବଂ ଯେଉଁମାନଙ୍କର ତିରୋଧାନକାଳରୁ ସେହି ଶୂନ୍ୟ ସ୍ଥାନ ଏପର୍ଯ୍ୟନ୍ତ ପୂର୍ଣ୍ଣ ହୋଇ ପାରି ନାହିଁ, ସେହିମାନଙ୍କର ଏକତ୍ର ସମାବେଶରେ ବାଲେଶ୍ୱର ସାହିତ୍ୟର ପୁଣ୍ୟପୀଠ ହୋଇଅଛି ।

ସେତେବେଳେ ୬ ଫକୀରମୋହନଙ୍କର "ସମ୍ବାଦବାହିକା" ଯଥେଷ୍ଟ ପ୍ରସାର ଲାଭ କରିଥିଲା । ମଧୁସୂଦନଙ୍କ ସମ୍ମିଳନରେ ଗୋଟିଏ ମାସିକ ପତ୍ରିକା ପ୍ରକାଶ କରିବା ପାଇଁ ସାହିତ୍ୟିକ ବନ୍ଧୁମାନେ ମନସ୍ଥ କରିଥିଲେ । ତହିଁ "ଉତ୍କଳଦର୍ପଣ"ର ଉତ୍ପତ୍ତି ହେଲା । ମଧୁସୂଦନ 'ରଘୁବଂଶରୁ' 'ଅଯୋଧ୍ୟାପ୍ରତ୍ୟାଗମନ' ଅନୁବାଦ କରି ଏଥିରେ ପ୍ରକାଶ କରିଥିଲେ ଏବଂ ଏହି ପତ୍ରିକାଦ୍ୱାରହିଁ ରାଧାନାଥଙ୍କର ମେଘଦୂତ ପ୍ରକାଶିତ ହୋଇଥିଲା । ଇଂରାଜୀ ଓ ସଂସ୍କୃତରୁ ଅନୁବାଦ କରିବାକୁ ସେତେବେଳର ଲେଖକମାନେ ବେଶି ଆଗ୍ରହ କରୁଥିଲେ ।

କାରଣ ସେ ସମୟରେ ଏହାର ଆଦର ଅଧିକ ପରିମାଣରେ ଥିଲା ଯେ ଯେତେ ଅଧିକ ସଂସ୍କୃତ ଶବ୍ଦ ପ୍ରୟୋଗ କରି ପାରିଲା, ତାର ଲେଖା ସେତେ ବେଶି ଉଚ୍ଚାଙ୍ଗ ସାହିତ୍ୟ ହେଲା ବୋଲି ଲୋକେ ମନେ କରୁଥିଲେ। ଏହି ଭ୍ରାନ୍ତ ଧାରଣା ସର୍ବ ପ୍ରଥମେ ଅଗ୍ରଣୀ ହୋଇ ଖଣ୍ଡନ କରିଥିଲେ ଉତ୍କଳବରେଣ୍ୟ ଫକୀରମୋହନ ।

ଭାଷାକୁ କପରିଭାବରେ ଗଠନ କରିବା ଉଚିତ, ଏହି ବିଷୟରେ ମଧୁସୂଦନ ଓ ଫକୀରମୋହନଙ୍କର ଯଥେଷ୍ଟ ଯୁକ୍ତି ତର୍କ ହୋଇଥିଲା । ଭାଷା ସହଜବୋଧ ହେବା ବାଞ୍ଛନୀୟ ବୋଲି ଅବଶେଷରେ ମଧୁସୂଦନ ସ୍ଥିର କରିଥିଲେ ଏବଂ ଏହି ସମ୍ବନ୍ଧରେ ପାଠ୍ୟ ପୁସ୍ତକ ପ୍ରଣୟନ ଲାଗି ସରକାର ପକ୍ଷରୁ ପୁରସ୍କାର ଘୋଷିତ ହେବାରୁ ମଧୁସୂଦନ "ପ୍ରବନ୍ଧମାଳା" ପ୍ରକାଶ କଲେ । କିଛିଦିନ ପରେ ଉଭୟ ରାଧାନାଥ ଓ ମଧୁସୂଦନ ମିଳି "କବିତାବଳୀ" ପ୍ରଥମ ଓ ଦ୍ୱିତୀୟ ଭାଗ ପ୍ରକାଶ କରିଥିଲେ ।

ବାଲେଶ୍ୱରରେ ସେତେବେଳେ ବଙ୍ଗୀୟମାନଙ୍କର ପ୍ରଭାବ ଅତ୍ୟଧିକ ମାତ୍ରାରେ ବଢିଥିଲା । ଏ ସ୍ଥଳରେ ଅନୁକରଣ କରିବା ଦ୍ୱାରା ସାଧାରଣତଃ ଯାହା ହୋଇଥାଏ, ତାହାହିଁ ଘଟିଥିଲା । ବଙ୍ଗୀୟମାନଙ୍କର ସୁଗୁଣ ପରିତ୍ୟାଗ କରି କୁତ୍ସିତତାକୁହିଁ ଲୋକେ ଅଧିକ ପରିମାଣରେ ଗ୍ରହଣ କରିଥିଲେ । ଶିକ୍ଷିତ ପଦବୀ ଲାଭ କରି ମଧ୍ୟ କେତେକ ଲୋକ ବହୁସ୍ଥାନ ଦୂଷିତ ରୁଚିର ପ୍ରଶ୍ରୟ ଦେଉଥିଲେ । ମଧୁସୂଦନଙ୍କର ଚରିତ୍ର ଶୁଦ୍ଧ ନିର୍ମଳ । କୌଣସି ଦୂଷିତ ଭାବକୁ ମନରେ ସ୍ଥାନ ଦେବା ତାଙ୍କ ପକ୍ଷରେ ଅସମ୍ଭବ । ତାଙ୍କ ଅନ୍ତରରେ ଯେ ସାର୍ବଜନୀନ ମୈତ୍ରୀଭାବ ନିହିତ ଥିଲା, ସେଥିପାଇଁ ସେ ସମସ୍ତଙ୍କ ସହିତ ବନ୍ଧୁଭାବରେ ମିଶୁଥିଲେ । କିନ୍ତୁ ପ୍ରତ୍ୟେକର ଯାହା କିଛି ମହତ୍ତ୍ୱ, ଯାହା କିଛି ପବିତ୍ର ଓ ଉଦାର,

ସେମାନଙ୍କ ସହିତ ତାଙ୍କର ଯୋଗ ଥିଲା । ଯାହା ଦୂଷିତ, ଅଶ୍ଳୀଳ, ସେ ତାହାଠାରୁ ସର୍ବଦା ଦୂରରେ ରହୁଥିଲେ । ଦୃଷ୍ଟାନ୍ତସ୍ୱରୂପ ଗୋଟିଏ ଘଟଣା ଏଠାରେ ଉଲ୍ଲେଖଯୋଗ୍ୟ । ବାଲେଶ୍ୱରରେ ଜଣେ ଧନୀ ଲୋକଙ୍କ ସହିତ ମଧୁସୂଦନଙ୍କର ଘନିଷ୍ଠତା ଜନ୍ମିଥିଲା । ଉକ୍ତ ଭଦ୍ରଲୋକ ଥରେ ମଧୁସୂଦନଙ୍କୁ ତାଙ୍କ ଗୃହରେ ଗୋଟିଏ ଭୋଜିରେ ଯୋଗ ଦେବା ପାଇଁ ଆହ୍ୱାନ କରିଥିଲେ । କିନ୍ତୁ ମଧୁସୂଦନ ଯେତେବେଳେ ଶୁଣିଲେ ଯେ ଉକ୍ତ ଭୋଜିସ୍ଥଳରେ ବେଶ୍ୟାନୃତ୍ୟ କରାଯିବାର ସ୍ଥିର ହୋଇଅଛି, ସେ ବିନୀତଭାବରେ ବନ୍ଧୁଙ୍କୁ ତାଙ୍କର ଅସମ୍ମତି ଜ୍ଞାପନ କଲେ । କିନ୍ତୁ ଉକ୍ତ ଭଦ୍ରଲୋକ ତାଙ୍କୁ ନୃତ୍ୟ ସ୍ଥଳକୁ ନ ନେଇ ପୃଥକ୍ ସ୍ଥାନରେ ବସାଇବା ପାଇଁ କହିବାରୁ ମଧୁସୂଦନ ଯିବାକୁ ପ୍ରତିଶ୍ରୁତ ହେଲେ ।

ନୃତ୍ୟ ସ୍ଥଳରେ ବନ୍ଧୁମାନେ ମଧୁସୂଦନଙ୍କ ଅନୁପସ୍ଥିତି ସମୟରେ ଗଳ୍ପ କରୁଅଛନ୍ତି, ଏହି ସମୟରେ ସେ ବେଶ୍ୟା ପ୍ରତିଜ୍ଞା କଲା ଯେ, ସେ ଯେ କୌଣସି ଉପାୟରେ ମଧୁସୂଦନଙ୍କୁ ନୃତ୍ୟ ସ୍ଥଳକୁ ନେଇ ଆସି ପାରିବ । ଭଦ୍ରଲୋକମାନଙ୍କ ସମ୍ମତି ଲାଭ କରି ସେ ଯାଇଁ ମଧୁସୂଦନଙ୍କ ନିକଟରେ ଉପସ୍ଥିତ ହେଲା ଏବଂ ହଠାତ୍ ତାଙ୍କ ଦୁଇ ହାତ ଧରି-ପକାଇ ନୃତ୍ୟ ସ୍ଥଳକୁ ନିବାଲାଗି ଅନୁନୟ କଲା । ମଧୁସୂଦନ ପୂର୍ବରୁ ଏ ସବୁ କିଛି ଜାଣି ନ ଥିଲେ, ସୁତରାଂ ହଠାତ୍ ବେଶ୍ୟାର ଏରୂପ ଆଚରଣ ଦେଖି ସେ କ୍ରୋଧ ଓ ଦୁଃଖରେ ଜରଜର ହୋଇ ଉଠିଲେ । ତାଙ୍କର ସରଳ ଅମାୟିକ ହୃଦୟ ଘୃଣାରେ ପୂର୍ଣ୍ଣ ହୋଇ ଉଠିଲା ଏବଂ ସେ ଲୋତକପୂର୍ଣ୍ଣ ଚକ୍ଷୁରେ ତତ୍‌କ୍ଷଣାତ୍ ସେ ସ୍ଥାନ ପରିତ୍ୟାଗ କଲେ । ଦରିଦ୍ର ମଧୁସୂଦନ ଧନୀ ବନ୍ଧୁଙ୍କ ଚିତ୍ତରେ କୌଣସି କଷ୍ଟ ହେବ ବୋଲି ଭ୍ରୂକ୍ଷେପ କଲେ ନାହିଁ, ସଙ୍ଗେ ସଙ୍ଗେ ଗୃହକୁ ପ୍ରତ୍ୟାବର୍ତ୍ତନ କଲେ । ଏପରି କଠୋର ନୈତିକତା ଏବଂ ତେଜସ୍ୱିତା ଅତି ଅଳ୍ପ ଲୋକଙ୍କ-

ଠାରେହିଁ ଦେଖା ଯାଇଥାଏ । ଯାହାହେଉ ସେହିଦିନଠାରୁ ଉକ୍ତ ଭଦ୍ରଲୋକଙ୍କ ସହିତ ତାଙ୍କର ବନ୍ଧୁତା ଶିଥିଳ ହୋଇଗଲା ଏବଂ ସେଥି ସଙ୍ଗେ ସଙ୍ଗେ କାଲେଶ୍ୱର ଛାଡ଼ିବା ପାଇଁ ମଧ୍ୟ ସେ ସଙ୍କଳ୍ପ କଲେ

## କଲେଜିଏଟ୍ ସ୍କୁଲରେ ନିଯୁକ୍ତି ।

୧୮୭୭ ଖ୍ରୀଷ୍ଟାବ୍ଦରେ କଟକ ରେଭେନ୍‌ସା କଲେଜ ଜିଲ୍ଲା ସ୍କୁଲରୁ ପୃଥକ୍ ହୋଇଗଲା ଏବଂ ସ୍କୁଲଟି କଲେଜିଏଟ୍ ନାମରେ ଅଭିହିତ ହେଲା । ୧୮୭୭ ଖ୍ରୀଷ୍ଟାବ୍ଦରେ ଯେତେବେଳେ ମଧୁସୂଦନ ୨୪ ବର୍ଷ ବୟସରେ ଉପନୀତ ହୋଇଥିଲେ, ସେତେବେଳେ କଲେଜିଏଟ୍ ସ୍କୁଲର ଅତିରିକ୍ତ ଶିକ୍ଷକ ପଦରେ ନିଯୁକ୍ତ ହେଲେ । ତାଙ୍କର କାର୍ଯ୍ୟରେ ପ୍ରଗାଢ଼ ଅଭିନିବେଶ ଓ ନିଷ୍ଠା ସନ୍ଦର୍ଶନ କରି କର୍ତ୍ତୃପକ୍ଷମାନେ ତାଙ୍କୁ ଯଥୋଚିତ ପୁରସ୍କାର ପ୍ରଦାନ କରିଥିଲେ । ପରବର୍ଷ ୧୮୭୮ ଖ୍ରୀଷ୍ଟାବ୍ଦରେ କଲେଜିଏଟ୍ ସ୍କୁଲର ଦ୍ୱିତୀୟ ଶିକ୍ଷକ ପଦ ଖାଲି ହେଲା ଏବଂ ମଧୁସୂଦନଙ୍କର ବିନା ଚେଷ୍ଟାରେ ତାଙ୍କ ଅପେକ୍ଷା ଅଧିକକାଳ ଶିକ୍ଷକତା କରିବାର ଲୋକ ଥିଲେ ମଧ୍ୟ ଏ ପଦ ତାଙ୍କୁହିଁ ପ୍ରଦାନ କରାଯାଇ-ଥିଲା । ସେ ନିଜ ଗୁଣରେ ଛାତ୍ର ଓ ସଙ୍ଗୀ ଶିକ୍ଷକମାନଙ୍କର ପ୍ରୀତିଭାଜନ ହୋଇଥିଲେ । ଶ୍ରେଣୀରେ ପ୍ରବେଶ କରିବା ମାତ୍ରେ ଛାତ୍ରମାନେ ଏତେଦୂର ଧୀର ସ୍ଥିର ହୋଇ ବସୁଥିଲେ ଯେ, ଛୁଞ୍ଚିଟିଏ ତଳେ ପଡ଼ିଲେ ମଧ୍ୟ ଶୁଣାଯିବ । ଶିକ୍ଷକତା ସମ୍ବନ୍ଧରେ ମନେ ହୁଏ, ତାହା ଯେପରି ତାଙ୍କର ଜନ୍ମଗତ ଗୁଣ । ତାଙ୍କର ଜ୍ଞାନ ଓ ବୁଦ୍ଧିମତ୍ତା ଯୋଗୁଁ ସେ ଅତ୍ୟନ୍ତ ଦୁଷ୍ଟ ଛାତ୍ରକୁ ମଧ୍ୟ ବଶୀଭୂତ କରି ପାରୁଥିଲେ । କାହାରିଠାରେ ଟିକିଏ କିଛି ସୁଗୁଣ ଦେଖିଲେ ସେ ଯେପରି ପ୍ରଶଂସା କରୁଥିଲେ, ଦୁର୍ଗୁଣ ଦେଖିଲେ ସେହି ପରିମାଣରେ ଦୁଃଖ ପ୍ରକାଶ କରୁଥିଲେ । ଶୈଶବରୁ ମାତାଙ୍କୁ ହରାଇ ସେ ଟିକିଏ କ୍ଷଣକ୍ରୋଧୀ ଥିଲେ ବୋଲି

ଶୁଣାଯାଏ, କିନ୍ତୁ ସେଥିପାଇଁ ସେ ବନ୍ଧୁମାନଙ୍କ ସମକ୍ଷରେ କେତେ ବାର ଯେ ଦୁଃଖ ପ୍ରକାଶ କରିଅଛନ୍ତି, ନିର୍ଜନରେ ବସି କେତେ ବାର ଯେ କ୍ରନ୍ଦନ କରିଅଛନ୍ତି, ତାହାର ଇୟତ୍ତା ନାହିଁ ।



# ଅଷ୍ଟମ ପରିଚ୍ଛେଦ ।

## ଶିକ୍ଷୋନ୍ନତି ।

### କଟକ ଜିଲ୍ଲାରେ ସ୍କୁଲ ଡେପୁଟି ଇନ୍ସପେକ୍ଟରୀ ।

(୧୮୮୦—୯୧)

୧୮୮୦ ଖ୍ରୀଷ୍ଟାବ୍ଦରେ କଟକ ଜିଲ୍ଲାର ସ୍କୁଲ ଡେପୁଟି ଇନ୍ସପେକ୍ଟରର ପଦ ଖାଲି ହେଲା ଏବଂ ସଙ୍ଗେ ସଙ୍ଗେ ତାହା ମଧୁସୂଦନଙ୍କ ହସ୍ତକୁ ଆସିଲା । ଏହାଦ୍ୱାରା ଏହି ଲାଭ ହେଲା ଯେ, ମଧୁସୂଦନଙ୍କୁ ସହରର କୃତ୍ରିମତା ଛାଡ଼ି ମଫସଲର ପ୍ରାକୃତିକ ସାରଲ୍ୟ ସହିତ ଅଧିକ ଯୋଗ ଦେବାକୁ ହୋଇଥିଲା । ଋତୁମାନଙ୍କ ସମ୍ବନ୍ଧରେ ସେ ଯେଉଁ ସକଳ କବିତା ଲେଖିଅଛନ୍ତି, ଗ୍ରାମ୍ୟ ପ୍ରକୃତି ସହିତ ତାଙ୍କର ଅଭେଦ ଯୋଗ ଥିବାର ସେଥିରୁ ପ୍ରମାଣ ମିଳେ ।

"ଖଳା କରି ଗ୍ରାମ ସୀମାରେ ଧାନ ଅମଳ କରି
ଗୃହକୁ ନିଅନ୍ତି ଆନନ୍ଦେ ଚଢ଼ି ଦମ୍ପା ସୁନ୍ଦର ।"

ସନ୍ଧ୍ୟା କବିତାରେ ମଧ୍ୟ

"ଧୂଳି ଉଡ଼ାଇଣ ଦାଣ୍ଡେ କରି ହମ୍ବା ରଡ଼ି
ଯାଉଛନ୍ତି ଗୋରୁପଲ ଗୋଠରୁ ବାହୁଡ଼ି ।"

ଦୂରମାନଙ୍କରେ ମଫସଲ ହୋଇ ନ ପାରିଲେ ଏସବୁ ସରଳ ସୁନ୍ଦର ଗ୍ରାମ୍ୟ ଦୃଶ୍ୟ ଦୃଷ୍ଟିପଥାରୂଢ଼ ହୁଏ ନାହିଁ ।

କବି ରାଧାନାଥ ଏହି ସମୟରେ ଜଏଣ୍ଟ ଇନ୍‌ସ୍ପେକ୍ଟର ଥିଲେ ଏବଂ ବଙ୍ଗର ସୁନାମଧନ୍ୟ ସାହିତ୍ୟିକ ସ୍ୱର୍ଗୀୟ ଭୂଦେବ ମୁଖୋପାଧ୍ୟାୟ ଇନ୍‌ସ୍ପେକ୍ଟର ଥିଲେ । ଏମାନଙ୍କର ନିମ୍ନ କର୍ମଚାରୀ ହୋଇ ମଧୁସୂଦନ ନିଜକୁ କୃତାର୍ଥ ଜ୍ଞାନ କରୁଥିଲେ । ଜିଲା ଇଂରାଜୀ ବିଦ୍ୟାଳୟରେ ଶିକ୍ଷକତା କରିବା ସମୟରେ ମଧୁସୂଦନ ବହୁ ଛାତ୍ରମାନଙ୍କର ଚରିତ୍ରୋନ୍ନତି ପାଇଁ ଚିନ୍ତା କରୁଥିଲେ । ବର୍ତ୍ତମାନ ଶିଶୁଶିକ୍ଷାର ଉନ୍ନତି କରିବା ତାଙ୍କ ଜୀବନର ମହା ପୁଣ୍ୟବ୍ରତ ହେଲା । ଗ୍ରାମ୍ୟ ବିଦ୍ୟାଳୟ ପରିଦର୍ଶନ କରିବାରେ ମଧୁସୂଦନଙ୍କର ଟିକିଏ ବିଶିଷ୍ଟତା ଥିଲା । ଗ୍ରାମର ଲୋକମାନଙ୍କର ଆଚାର ବ୍ୟବହାର ଅନୁସନ୍ଧାନ କରି ଛାତ୍ରମାନଙ୍କର ସ୍ୱାସ୍ଥ୍ୟ ସମ୍ପର୍କରେ ସବୁ ବିଷୟ ସେ ପ୍ରଥମେ ତନ୍ନ ତନ୍ନ କରି ବୁଝୁଥିଲେ । ଛାତ୍ରମାନଙ୍କୁ ପରୀକ୍ଷା କରିବା ଅପେକ୍ଷା ଯେଉଁମାନଙ୍କ ଉପରେ ଏମାନଙ୍କର ସମ୍ପୂର୍ଣ୍ଣ ଭାର ଦିଆଯାଇଅଛି, ସେହି ଶିକ୍ଷକମାନଙ୍କର ଶିକ୍ଷା ଓ ଚରିତ୍ର ବୁଝିବା ସେ ଅଧିକ ଆବଶ୍ୟକ ଜ୍ଞାନ କରୁଥିଲେ ।

ଛାତ୍ରମାନଙ୍କୁ ନୃଶଂସଭାବରେ ପ୍ରହାର କରିବାର ପ୍ରଥା ମଧୁସୂଦନଙ୍କର କୋମଳ ଅନ୍ତରକୁ ଅତିରିକ୍ତ ବ୍ୟଥା ଦେଉଥିଲା । ସେଥିଲାଗି ସବୁ ସମୟରେ ସେ ଏବିଷୟରେ ଶିକ୍ଷକଙ୍କୁ ସାବଧାନ କରାଇ ଦେଉ-ଥିଲେ ।

ପ୍ରାଥମିକ ବିଦ୍ୟାଳୟମାନ ପରିଦର୍ଶନ କରି ମଧୁସୂଦନଙ୍କର ଦୃଢ଼ ଧାରଣା ଜନ୍ମିଲା ଯେ, ଶିକ୍ଷକମାନଙ୍କର ଶିକ୍ଷୋନ୍ନତି ସର୍ବାଦୌ ବାଞ୍ଛନୀୟ । ସେଥିପାଇଁ ପ୍ରଥମେ ସେ ଗୋଟିଏ ଶିକ୍ଷକସମ୍ମିଳନୀ ପ୍ରତି ବର୍ଷ କଟକ ସହରରେ ଆହୂତ କରାଇଲେ ଏବଂ ସେଥି ସଙ୍ଗେ ସଙ୍ଗେ

ଶିକ୍ଷାଦାନ ପ୍ରଣାଳୀର ନିୟମମାନ ପ୍ରଚାର କରିବାପାଇଁ "ଶିକ୍ଷାବନ୍ଧୁ" ନାମିକ ପତ୍ରିକା ତାଙ୍କଦ୍ୱାରା ପ୍ରକାଶିତ ହେଲା । ଏହି ସମୟରେହିଁ ସେ 'ଅବଧାନବନ୍ଧୁ' ନାମକ ଖଣ୍ଡିଏ ପୁସ୍ତକ ପ୍ରଣୟନ କରିଥିଲେ । ଶିକ୍ଷା ବିଭାଗର ଅର୍ଥ ସାହାଯ୍ୟରେ ଏହା ପ୍ରକାଶିତ ହେଲା ଏବଂ ପ୍ରତ୍ୟେକ ସ୍କୁଲରେ ଏହା ବିତରିତ ହୋଇଥିଲା । ଏହା ପରେ 'ନିମ୍ନଶିକ୍ଷକବନ୍ଧୁ', 'ନିମ୍ନଶିକ୍ଷକପୁସ୍ତକ' ଓ 'ଶିକ୍ଷକସହଚର' ଆଦି ପ୍ରକାଶିତ ହୋଇ ବିଦ୍ୟାଳୟମାନଙ୍କରେ ପ୍ରଚଳିତ ହୋଇଅଛି । ସେତେବେଳେ ଗୁରୁଟ୍ରେନିଂ ସ୍କୁଲ ନ ଥିଲା । ମଧୁସୂଦନ ଏହାର ଆବଶ୍ୟକତା ହୃଦୟଙ୍ଗମ କରି ଅବଧାନ ବିଭାଗ ନାମକ ଗୋଟିଏ ଟ୍ରେନିଂ ସ୍କୁଲ ବସାଇଲେ । ଏଥିରେ ଶିକ୍ଷାଲାଭ କରି ଯେଉଁମାନେ ଉତ୍ତୀର୍ଣ୍ଣ ହେଉଥିଲେ, ସେମାନଙ୍କୁ ଅପେକ୍ଷାକୃତ ଅଧିକ ବେତନ ମିଳୁଥିଲା ।

ଏହିରୂପେ ମଧୁସୂଦନ ଉତ୍କଳରେ ଶିକ୍ଷାପ୍ରଚାରପାଇଁ ଯେଉଁ ସାଧନା କରି ଯାଇଅଛନ୍ତି, କବିତା ଲେଖି ନ ଥିଲେହେଁ ତାଙ୍କର ଖ୍ୟାତି ଏ ଦେଶରେ ଅକ୍ଷୁଣ୍ଣ ରହିଥାନ୍ତା ବୋଲି ମନେ ହୁଏ । ଏଥିରୁ ମନେ ହୁଏ, ସେ କେବଳ ଅର୍ଥ ଅଭାବରେ ଚାକିରି କରି ନ ଥିଲେ । ଦେଶର ଶିକ୍ଷୋନ୍ନତିହିଁ ତାଙ୍କର ପ୍ରଧାନ ଉଦ୍ଦେଶ୍ୟ ଥିଲା ।

ବାଳକମାନଙ୍କର ଅଧ୍ୟୟନ ଲାଗି ଉପଯୁକ୍ତ ପାଠ୍ୟପୁସ୍ତକର ଅଭାବ ଦେଖି ମଧୁସୂଦନ ଏହି ଉଦ୍ଦେଶ୍ୟରେ ପୁସ୍ତକ ପ୍ରଣୟନ ଲାଗି ମନସ୍ଥ କରିଥିଲେ ଏବଂ ସେଥିଲାଗି ଓଡ଼ିଆ ଭାଷାରେ ପ୍ରଥମ ବର୍ଣ୍ଣବୋଧ ତାଙ୍କରଦ୍ୱାରା ପ୍ରକାଶିତ ହୋଇଥିଲା । ଏହା ପରେ ଆଉ କେତେ ନୂତନ ବର୍ଣ୍ଣବୋଧ ମଧ୍ୟ ପ୍ରକାଶିତ ହୋଇଅଛି, କିନ୍ତୁ ଏଥି ନିହିତ ସରଳ ମଧୁର କ୍ଷୁଦ୍ର କବିତାଗୁଡ଼ିକ ବଡ଼ ଉପାଦେୟ ଏବଂ ଏବେ ମଧ୍ୟ ପାଠ କଲେ ତାହା ଆନନ୍ଦ ଦେଇଥାଏ ।

ଏହି ସମୟରେହିଁ ଉଚ୍ଚପ୍ରାଥମିକ ଛାତ୍ରମାନଙ୍କ ପାଇଁ ମଧୁସୂଦନ ଛନ୍ଦମାଳା ୧ମ ଖଣ୍ଡ ପ୍ରକାଶ କଲେ । ଏହାଦ୍ୱାରାହିଁ ତାଙ୍କର କବି-ଖ୍ୟାତି ଉତ୍କଳଖଣ୍ଡରେ ବିଚ୍ଛୁରିତ ହୋଇ ପଡ଼ିଲା ଏବଂ ଘରେ ଘରେ ଛନ୍ଦମାଳା ଆଦୃତ ହେବାକୁ ଲାଗିଲା । ଏଥିରେ 'ଜନ୍ମଭୂମି ପ୍ରତି' ଓ 'ପୃଥିବୀ ପ୍ରତି' ପ୍ରଭୃତି କେତେଗୋଟି ସୁନ୍ଦର କବିତା ସ୍ଥାନ ପାଇଥିଲା ଏବଂ ଛାତ୍ରମାନଙ୍କ ଅନ୍ତରରେ ଉତ୍ତମ ଚରିତ୍ର, ନମ୍ରତା ଓ ଦେଶପ୍ରୀତି ପ୍ରଭୃତି ଉଜ୍ଜୀବିତ କରିବାପାଇଁ ଏ ପୁସ୍ତକ ଖଣ୍ଡି ଯଥେଷ୍ଟ ସାହାଯ୍ୟ କରିଥିଲା । ୧୮୮୧ ଖ୍ରୀଷ୍ଟାବ୍ଦରେ ଛନ୍ଦମାଳା ପ୍ରକାଶିତ ହୋଇଥିଲା । ଏହି ବର୍ଷହିଁ ପ୍ୟାରୀମୋହନ ଉତ୍କଳିକା ସମ୍ଭରଣ କରିଥିଲେ । ଓଡ଼ିଶାରେ ଶିକ୍ଷାର ଉନ୍ନତି ପାଇଁ ପ୍ୟାରୀ ବାବୁ ମଧୁସୂଦନଙ୍କୁ ଅନେକ ପରାମର୍ଶ ଦେଉଥିଲେ ଏବଂ ରାଧାନାଥ ଜଏଣ୍ଟ ଇନ୍‌ସପେକ୍ଟର ଥାଇ ମଧୁସୂଦନଙ୍କର ପ୍ରସ୍ତାବ-ମାନ ଅନୁମୋଦନ କରି ସେ ସବୁ ସରକାରଦ୍ୱାରା ମଞ୍ଜୁର କରାଇ ନେଉଥିଲେ ।

ଅଧୀନସ୍ଥ ଶିକ୍ଷକମାନଙ୍କ ସହିତ ମଧୁସୂଦନ ଏକାନ୍ତ ବନ୍ଧୁଭାବରେ ମିଳାମିଶା କରୁଥିଲେ । କାର୍ଯ୍ୟ ସମ୍ବନ୍ଧରେ ଅବଶ୍ୟ ସେ ନିଜର ସ୍ଥାନ ବଜାୟ ରଖି ଚବୁ କରୁଥିଲେ ।

ଟସ୍ତରେ ବାହାରି ସେ ପ୍ରାକୃତିକ ରମଣୀୟ ସ୍ଥାନମାନ ଦର୍ଶନ କରି ଯାନରୁ ଅବତରଣ କରି ପଦବ୍ରଜରେ ଭ୍ରମଣ କରୁଥିଲେ । କେଉଁଠାରେ ପକ୍ୱଶାଳିପୂର୍ଣ୍ଣ କେଦାର, କେଉଁଠାରେ ପୁଷ୍ପ-ବିଭୂଷିତ ସର୍ଷପକ୍ଷେତ୍ର, କେଉଁଠାରେ କାଶତଣ୍ଡି ଫୁଲରେ ହାସ୍ୟମାନା ଧରଣୀ, କେଉଁଠାରେ ଶ୍ୟାମଳ ଶସ୍ୟକ୍ଷେତ୍ର ଦେଖି ତାଙ୍କର ନୟନ ମନ ଆପ୍ଳୁତ ହୋଇ ଉଠୁଥିଲା । ମଧ୍ୟେ ମଧ୍ୟେ ସେ ଏପରି ପୁଲକିତ ହୋଇ ଉଠୁଥିଲେ ଯେ, ବାଳକ ତୁଲ୍ୟ ସରଳତାରେ ମୁଗ ହରଡ଼ କ୍ଷେତରୁ ଛୁଇଁ ଖାଇ ଖାଇ ବାଟରେ ହସି ହସି ଦୌଡ଼ନ୍ତି ।

ଏହି ସମୟରେ ଠିକ ୩୭ ବର୍ଷ ବୟସରେ ସେ ଶୂଳରୋଗଦ୍ୱାରା ଆକ୍ରାନ୍ତ ହୋଇଥିଲେ । ଏହି ରୋଗ ତାଙ୍କର ଶେଷ ଜୀବନ ପର୍ଯ୍ୟନ୍ତ ସ୍ଥାୟୀ ହୋଇ ରହିଲା ଏବଂ ତାଙ୍କର ସକଳ ମହତ୍ କର୍ମର ଏକ ପ୍ରକାଣ୍ଡ ଅନ୍ତରାୟ ସ୍ୱରୂପ ଦଣ୍ଡାୟମାନ ହେଲା । ଅତ୍ୟଧିକ ଭ୍ରମଣରେ ବାୟୁରୋଗ ଏବଂ ଶୂଳରୋଗ ଆଦି ଜନ୍ମିଥିବାର ଶୁଣାଯାଏ । ମଧୁସୂଦନଙ୍କର ଅଧିକ ମଫସଲ ଗସ୍ତ ଏହାର କାରଣ ହୋଇ ପାରିଥିବ ।

## କଲେଜିଏଟ ସ୍କୁଲର ହେଡମାଷ୍ଟରୀ ।

୧୮୯୧ ଖ୍ରୀଷ୍ଟାବ୍ଦର ଜୁଲାଇ ମାସରେ ମଧୁସୂଦନ ଡେପୁଟି ଇନ୍‌ସ୍ପେକ୍ଟରୀ କାର୍ଯ୍ୟ ତ୍ୟାଗ କରି କଟକ କଲେଜିଏଟ୍ ସ୍କୁଲର ହେଡ଼ ମାଷ୍ଟର ପଦରେ ନିଯୁକ୍ତ ହେଲେ । ବର୍ତ୍ତମାନ ତାଙ୍କୁ ମାସିକ ଟ୧୫୦୲ ବେତନ ମିଳିଲା । ମଧୁସୂଦନହିଁ କଲେଜିଏଟ୍ ସ୍କୁଲର ପ୍ରଥମ ଓଡ଼ିଆ ହେଡ଼ ମାଷ୍ଟର । ତାଙ୍କ ପୂର୍ବରୁ ସମସ୍ତେ ବଙ୍ଗୀୟ ଥିଲେ । ଏପର୍ଯ୍ୟନ୍ତ ଏହି ସ୍କୁଲ କଲେଜର ପ୍ରିନ୍ସିପାଲ୍‌ଙ୍କ ଅଧୀନରେ ଥିଲା । ତାଙ୍କ ସହିତ କେତେକ ବିଷୟରେ ମଧୁସୂଦନଙ୍କ ମତର ଅମେଳ ହେବାରୁ ସେ କାର୍ଯ୍ୟରେ ତାଙ୍କର ବିତୃଷ୍ଣା ଜାତ ହେଲା । ସୁଯୋଗବଶତଃ କବି ରାଧାନାଥ ସ୍କୁଲ ଇନ୍‌ସ୍ପେକ୍ଟର ଥାଇ ଏହି ସମୟରେ ସ୍କୁଲ ପରିଦର୍ଶନ ଲାଗି ଆସିଥିଲେ । ମଧୁସୂଦନଙ୍କଠାରୁ ସମସ୍ତ ବିଷୟ ଅବଗତ ହୋଇ ସେ ତାଙ୍କୁ ବାଲେଶ୍ୱର ଜିଲ୍ଲାର ଡେପୁଟି ଇନ୍‌ସ୍ପେକ୍ଟର ହୋଇ ଯିବା ପାଇଁ ଅନୁରୋଧ କଲେ । ବାଲେଶ୍ୱର ଜିଲ୍ଲାରେ ମଧୁସୂଦନ ମାତ୍ର ଛଅ ମାସ ଡେପୁଟି ଇନ୍‌ସ୍ପେକ୍ଟରୀ କରିଥିଲେ ।

## ନର୍ମାଲ ବା ଟ୍ରେନିଂ ସ୍କୁଲରେ ଶିକ୍ଷକତା ।

୧୮୯୩ ଖ୍ରୀଷ୍ଟାବ୍ଦରେ କଟକ ଟ୍ରେନିଂ ସ୍କୁଲପାଇଁ ଜଣେ ସୁଯୋଗ୍ୟ ପ୍ରଧାନ ଶିକ୍ଷକ ଆବଶ୍ୟକ ହେଲେ । ମଧୁସୂଦନହିଁ ଉପଯୁକ୍ତ

ବ୍ୟକ୍ତି ବୋଲି ବିବେଚିତ ହେଲେ । ଉତ୍ତମ ଶିକ୍ଷକ ଗଠନ କରି ଦେଶରେ ସୁଶିକ୍ଷା ପ୍ରଚାର କରିବା ମଧୁସୂଦନଙ୍କର ଏକାନ୍ତ ପ୍ରିୟ କାମନା ଥିଲା । ସୁତରାଂ ଏ କାର୍ଯ୍ୟ ତାଙ୍କ ପକ୍ଷରେ ବଡ଼ ଅନୁକୂଳ ଥିଲା ।

ଉତ୍କଳ ଶିକ୍ଷାବିଭାଗରେ ସୁପରିଚିତ ଶ୍ରୀଯୁକ୍ତ ମଧୁସୂଦନ ଦାଶ ବି. ଏ. ଏହି ସମୟରେ ଅର୍ଥାତ୍ ୧୮୯୭ ମସିହାର ଅଗଷ୍ଟ ମାସରେ କଟକ ନର୍ମାଲ୍ ସ୍କୁଲର ଦ୍ୱିତୀୟ ଶିକ୍ଷକ ପଦରେ ନିଯୁକ୍ତ ହୋଇଥିଲେ । ଅଧଃସ୍ଥ ଶିକ୍ଷକ ହେଲେହେଁ ମଧୁସୂଦନ ତାଙ୍କୁ ଜଣେ ସୁଯୋଗ୍ୟ ସହକର୍ମୀରୂପେ ଲାଭ କରି ବନ୍ଧୁଭାବରେ ବ୍ୟବହାର କରୁଥିଲେ । ଦାଶ ମହୋଦୟ ଲେଖିଅଛନ୍ତି, "ସେ ସମୟର ଦିନ ଗୁଡ଼ିକର କଥା ମନେ ପଡ଼ିଲେ ଆଜି ହୃଦୟ ନିତାନ୍ତ ବ୍ୟଥିତ ହେଉଅଛି । ତତ୍କାଳରେ ମୁଁ ପୀଡ଼ିତ ହେଉଥିଲେ ମୋତେ ଦେଖି ଅପେକ୍ଷା ଯିବାକୁ ସେ କେବେ ଭୁଲି ନାହାନ୍ତି ଏବଂ ଦେହରେ ହାତ ବୁଲାଇ ସାନ୍ତ୍ୱନା ଦେବାକୁ ତ୍ରୁଟି କରି ନାହାନ୍ତି । ପ୍ରକୃତରେ ତାଙ୍କ ସ୍ପର୍ଶରେ ଯାତନାର ବିଶେଷ ଲାଘବ ଘଟୁଥିଲା । ସ୍ୱୟଂ ଯେତେବେଳେ ପୀଡ଼ିତ ହେଉଥିଲେ, ସେତେବେଳେ ସେ ମୋତେ ଦିନେ ନ ଦେଖିଲେ ଡାକି ପଠାନ୍ତି ଏବଂ ଚବିଶ ଘଣ୍ଟା ମଧ୍ୟରେ ଯେତେବେଳେ ଯାହା ଘଟିଥାଏ, ତାହା ବ୍ୟକ୍ତ କରନ୍ତି । ଥରେ ସେ ବାତଜ୍ୱରରେ ପୀଡ଼ିତ ଥିଲାବେଳେ ମୋତେ କହିଥିଲେ, 'ମୁଁ ତୁମ୍ଭଙ୍କୁ ଦେଖିଲେ ମନେ କରେଁ ମୋର ପୀଡ଼ା କମିଗଲା ।' ମୁଁ କହିଲି, 'ଆପଣ ମୋତେ ବଡ଼ ଭଲ ପାନ୍ତି, ତାହାହିଁ ଏହାର କାରଣ ।' ସେ ଉତ୍ତର କଲେ, 'ସ୍ୱଭାବତଃ ମୁଁ ତୁମ୍ଭ ପ୍ରତି ବଡ଼ ଆକୃଷ୍ଟ, କାରଣ କିଣ ଜାଣେ ନାହିଁ, ତୁମ୍ଭେ ତ ବ୍ରାହ୍ମଣ, ମୁଁ ବ୍ରାହ୍ମ, ତୁମ୍ଭେ ଯୁବକ, ମୁଁ ବୃଦ୍ଧ, ଏହା କେବଳ ହୃଦୟର ଆକର୍ଷଣ ।'

କେବଳ ଜଣେ ଶିକ୍ଷକଙ୍କ ପ୍ରତି ତାଙ୍କର ଏପରି ବ୍ୟବହାର ନ ଥିଲା । ସମସ୍ତଙ୍କ ପ୍ରତି ମମତା ଓ ସ୍ନେହ ତାଙ୍କ ହୃଦୟର ଗୋଟିଏ

ସ୍ୱାଭାବିକ ଗୁଣ ଥିଲା । ଶ୍ରେଣୀରେ ଛାତ୍ରମାନେ ଗୋଳମାଳ କରିବାଟା ସେ ଆଦୌ ଭଲ ପାଉ ନ ଥିଲେ । ଥରେ ଶ୍ରୀଯୁକ୍ତ ମଧୁସୂଦନ ଦାଶଙ୍କ ଶ୍ରେଣୀରେ ଛାତ୍ରମାନଙ୍କର ଟିକିଏ ଉଚ୍ଚସ୍ୱରରେ ଗୋଳମାଳ ଶୁଣି ସେ ଉକ୍ତ ଶ୍ରେଣୀକୁ ଆସି ବିରକ୍ତି ପ୍ରକାଶ କରି କହିଲେ, 'ତୁମ୍ଭେ ବଡ଼ ମୂର୍ଖ ।' କିନ୍ତୁ ଏତିକି ମାତ୍ର କହି ତାଙ୍କର ସ୍ୱାଭାବିକ କୋମଳତାରେ ଆଘାତ ଲାଗିଲା । ଅଧ୍ୟାପନା ଶେଷରେ ସେ ଦାଶ ମହୋଦୟଙ୍କୁ ଡାକି କହିଲେ, "ଶ୍ରେଣୀ ମଧ୍ୟରେ ସେପରି କହିବାଦ୍ୱାରା ତୁମ୍ଭେ ମୋ ପ୍ରତି ଅସନ୍ତୁଷ୍ଟ ହେଲ ପରା ? ବାହ୍ୟ କୋପ ପ୍ରଦର୍ଶନ ଏବଂ ଆଭ୍ୟନ୍ତରୀଣ ଦୟା ଏ ଦୁଇଟି ଶିକ୍ଷକର ପ୍ରଧାନ ସହାୟ, କିନ୍ତୁ ମୋ ପରି ହଠାତ୍ ରାଗିବା ଶୋଭନୀୟ ନୁହେ ।" ଏଥିରୁହିଁ ତାଙ୍କ ମହାନୁଭବ ସ୍ୱଭାବର ପରିଚୟ ମିଳେ ।



## ନବମ ପରିଚ୍ଛେଦ ।

### ଛାତ୍ରମାନଙ୍କ ସହିତ ମିଳାମିଶା ଓ ବିଭିନ୍ନ ଉଦ୍ୟମରେ ଯୋଗଦାନ ।

ଛାତ୍ରମାନଙ୍କ ପ୍ରତି ମଧ୍ୟ ତାଙ୍କର ବ୍ୟବହାର ଶ୍ରେଣୀରେ ଗୁରୁ ଏବଂ ବାହାରେ ପିତା ତୁଲ୍ୟ ଥିଲା । କେହି ଛାତ୍ର ଅସୁସ୍ଥ ହେଲେ ସେ ବାରମ୍ବାର ରୋଗୀ ନିକଟକୁ ଯାଇ ଔଷଧ ପଥ୍ୟ ଆଦି ସେବନ କରାଇ ରୋଗିର ଶୁଶ୍ରୂଷା କରୁଥିଲେ । ଶ୍ରେଣୀର ବାହାରେ ସେ ଛାତ୍ରମାନଙ୍କ ସହିତ ଦୁଃଖ ସୁଖ ଅନେକ ବିଷୟରେ ଆତ୍ମୀୟ ସ୍ୱରୂପ ବ୍ୟବହାର କରୁଥିଲେ । ମଧ୍ୟେ ମଧ୍ୟେ ଛାତ୍ରମାନଙ୍କ ସହିତ ପରିହାସ କରି ସେ ସମସ୍ତଙ୍କୁ ଆନନ୍ଦିତ କରୁଥିଲେ । ଥରେ ବୋର୍ଡିଂକୁ ଯାଇ ଦେଖିଲେ ଯେ,

ଅନେକ ଛାତ୍ର ମିଳି ପାକ କରୁଅଛନ୍ତି । ତାହା ଦେଖି ସେ ପଚାରିଲେ, "ତୁମ୍ଭେମାନେ ଅଯଥା ଅଧିକ ଲୋକ ମିଳି ଗୋଳମାଳ କରୁଛ, ଭିନ୍ନ ଭିନ୍ନ ପାକ କଲେ ସୁବିଧା ହୁଅନ୍ତା ନାହିଁ କି ?" ଜଣେ ଛାତ୍ର ଉତ୍ତର କଲେ, "ଆଜ୍ଞା ଅନେକେ ମିଳି ଏକ ପାକ କଲେ ଖରଚ କମ ହୁଏ ।" ଏ କଥା ଶୁଣି ସେ ହସି ହସି କହିଲେ, "ଅଚ୍ଛା, ହିସାବ କରି କହ ଭଲା, କେତେ ଲୋକ ମିଶି ବନ୍ଧି ଖାଇଲେ ଆଦୌ ଖରଚ ପଡ଼ିବ ନାହିଁ ?" ସମସ୍ତେ ହସି ଉଠିଲେ ।

ଥରେ ସେ କେନ୍ଦ୍ରାପଡ଼ା ହାଇସ୍କୁଲକୁ ଏକ୍ଟିଂ ଇନ୍‌ସ୍ପେକ୍ଟର ରୂପେ ଯାଇଥିଲେ । ଗୋଟିଏ ଶ୍ରେଣୀରେ ପଚାରିଲେ, 'ତରୁ' ଶବ୍ଦର ସପ୍ତମୀ ବିଭକ୍ତିରେ କଣ ହୁଏ ?" ଜଣେ ଛାତ୍ର ଉତ୍ତର କଲା, "ତରୁୟାଂ" । ଶୁଣି ଚମକି ପଡ଼ି ମୁଣ୍ଡ ଅଡ଼େଇଁ କହିଲେ "ତରୁଆଲ୍ ! ହାଣିବ ନା କଣ ?" କ୍ଲାସ ଭିତରେ ବୁଲି ବୁଲି ପୁରାତନ ଖାତା ଦେଖୁ ଦେଖୁ ଦେଖିଲେ, ହୃଷୀକେଶ ନାମକ ଗୋଟିଏ ଛାତ୍ର ନିଜ ଖାତା ଉପରେ ଲେଖିଅଛନ୍ତି, God help me (ଭଗବାନ୍ ମୋତେ ସାହାଯ୍ୟ କରନ୍ତୁ) । ତହୁଁ ସେ ତାହାର ତଳେ ଲେଖିଦେଲେ, God helps those who help themselves (ଯେଉଁମାନେ ଆପଣାକୁ ସାହାଯ୍ୟ କରନ୍ତି, ଭଗବାନ୍ ସେହିମାନଙ୍କୁ ସାହାଯ୍ୟ କରନ୍ତି) । ଛାତ୍ରମାନଙ୍କ ସଂସର୍ଗକୁ ସେ ବହୁ ଆଦର କରୁଥିଲେ । ସେମାନଙ୍କ ସଂସ୍ପର୍ଶରେ ବୃଦ୍ଧାବସ୍ଥାରେ ମଧ୍ୟ ଯେପରି ତାଙ୍କର ବିଗତ ଯୌବନର ତେଜ ଫେରି ଆସୁଥିଲା । ଥରେ ସେ ଭୁବନେଶ୍ୱର ଯାଉଥିଲେ । କଟକ ଷ୍ଟେସନଠାରେ କେତେକ କଲେଜ ପିଲାଙ୍କୁ ଦେଖି ପଚାରି ବୁଝିଲେ, ସେମାନେ ମଧ୍ୟ ଭୁବନେଶ୍ୱର ଯାଉଅଛନ୍ତି । ତହୁଁ ସେ ମହା ଉଲ୍ଲାସରେ କହି ଉଠିଲେ, "ଚାଲ, ମୋର ସେଠାରେ ଘର ଅଛି, ସହରରୁ ଟିକିଏ ଦୂର । ଭୁବନେଶ୍ୱର ବଡ଼ ଭଲ ସ୍ଥାନ ।" ଟ୍ରେନରୁ ଓହ୍ଲାଇ ସେ

କୌଣସି ଯାନ ବା ଘୋଡ଼ା ଗାଡ଼ିରେ ନ ଚଢ଼ି ବାଳକମାନଙ୍କ ସଙ୍ଗରେ ସ୍କୁଲଯିବାକୁ ଆରମ୍ଭ କଲେ । ଛାତ୍ରମାନେ ଯେତେ ଅନୁରୋଧ କଲେ ମଧ୍ୟ ସେ ଗାଡ଼ିରେ ଉଠିଲେ ନାହିଁ । ମୃଦୁହାସ୍ୟ କରି କହିଲେ, "ଚାଲ, ବୁଢ଼ା ତ ହୋଇଗଲେ, ଆଉ କେବେ ଏପରି ସୁଖ ପାଇବା ?" ସକଳ ସମ୍ମାନଭୂଷିତ ହୋଇ ବୃଦ୍ଧ ବୟସରେ ଏପରି ବାଳକସୁଲଭ କଥା ଅଳ୍ପ ଲୋକଙ୍କ ମୁଖରୁ ଶୁଣାଯାଇଥାଏ ।

ଛାତ୍ରମାନଙ୍କ ସଂସର୍ଗକୁ ସେ ଅତି ପବିତ୍ର ଜ୍ଞାନ କରୁଥିଲେ । ସେମାନଙ୍କ ସହିତ ଉଚ୍ଚ ବିଷୟର ଆଲୋଚନା ଓ ପରସ୍ପର ଭାବର ଆଦାନ ପ୍ରଦାନ କରିବା ପାଇଁ ସେ ସର୍ବଦା ଉତ୍ସୁକ ଥିଲେ । ସେଥି-ପାଇଁ ନର୍ମାଲ ସ୍କୁଲର ଛାତ୍ରମାନଙ୍କୁ ନେଇ "ଆଲୋଚନା ସଭା" ନାମରେ ଗୋଟିଏ ସାହିତ୍ୟାଲୋଚନାର ଅନୁଷ୍ଠାନ ସ୍ଥାପନ କରିଥିଲେ । ୧୮୯୪ ଖ୍ରୀଷ୍ଟାବ୍ଦରେ ଆରବ୍ଧ ହୋଇ ଯେଉଁ ଅନୁଷ୍ଠାନ କେବଳ ଟ୍ରେନିଂ ସ୍କୁଲରେ ଆବଦ୍ଧ ଥିଲା, ତାହା କ୍ରମେ ବର୍ଦ୍ଧିଷ୍ଣୁ ହୋଇ ଆଜି "ଉତ୍କଳ ସାହିତ୍ୟ ସମାଜ" ନାମରେ ସର୍ବତ୍ର ପରିଚିତ ହୋଇଅଛି । କଟକ ଛାତ୍ରମାନଙ୍କର Young Utkal Associationରେ (ଉତ୍କଳ ଯୁବକ ସଂଘ) ନିଜେ ଇଚ୍ଛା କରି ସେ ସଭ୍ୟଶ୍ରେଣୀଭୁକ୍ତ ହୋଇଥିଲେ । ଏହିପରି ନାନା ଭାବରେ, କେତେବେଳେ ବନ୍ଧୁ, କେତେବେଳେ ଅଭି-ଭାବକ ରୂପରେ ସେ ଛାତ୍ରମାନଙ୍କୁ ଦେଶହିତକର କାର୍ଯ୍ୟରେ ଉତ୍ସାହିତ କରୁଥିଲେ ।

ନର୍ମାଲ ସ୍କୁଲରେ ଶିକ୍ଷକତା କରିବା କାଳରେ ମଧୁସୂଦନଙ୍କ ଦୃଷ୍ଟିରେ ପଡ଼ିଥିଲା ଯେ, ସମାଜରେ ଉପାସନା ଓ ଗୀତ ବଙ୍ଗ ଭାଷାରେହିଁ କରି ଯାଉଅଛି । ପୌରୋହିତ୍ୟ କ୍ରିୟା ଏବଂ ସୂକ୍ତ ପାଠ ଆଦି ହିନ୍ଦୁ ସମାଜରେ ଦୁର୍ବୋଧ ସଂସ୍କୃତ ଭାଷାରେ ହେଉଥିବାରୁ ବ୍ରାହ୍ମ ସମାଜ ଏହାର ପ୍ରତିବାଦସ୍ୱରୂପ ସକଳ-ବୋଧ୍ୟ ମାତୃଭାଷାରେ ସମସ୍ତ କରିବାର

ସ୍ଥିର କରିଥିଲେ । କିନ୍ତୁ ଦୁର୍ଭାଗ୍ୟବଶତଃ ଉତ୍କଳ ବ୍ରାହ୍ମ ସମାଜରେ ଉପାସନା ଓ ସଙ୍ଗୀତାଦି ସମସ୍ତ ଓଡ଼ିଆ ଭାଷାରେ ନ ହୋଇ ପ୍ରଧାନତଃ ସେହି ବଙ୍ଗ ଭାଷାରେହିଁ କରାଯାଉଥିଲା । ଉତ୍କଳୀୟମାନଙ୍କ ପକ୍ଷରେ ସଂସ୍କୃତ ପରେ ବଙ୍ଗଳାଭାଷା ଅବଶ୍ୟ ସେତେଦୂର ଦୁର୍ବୋଧ ନୁହେ ଏବଂ ସମାଜର ଅଧିକାଂଶ ସଭ୍ୟ ବଙ୍ଗୀୟ ଥିବା ସ୍ଥଳେ ଉପାସନା ଓ ସଙ୍ଗୀତାଦି ସେମାନଙ୍କ ଭାଷାରେ ହେବାହିଁ ସ୍ୱାଭାବିକ । କିନ୍ତୁ ମଧୁସୂଦନ ଏ ଅଭାବ ଦୂର କରିବା ମାନସରେ ଓଡ଼ିଆ ଭାଷାରେ କେତେକ ଏକେଶ୍ୱରବାଦ-ମୂଳକ ବ୍ରାହ୍ମସଙ୍ଗୀତ ରଚନା କରି ୧୮୯୪ ଖ୍ରୀଷ୍ଟାବ୍ଦରେ 'ସଙ୍ଗୀତ-ମାଳା' ନାମକ ପୁସ୍ତକାକାରରେ ପ୍ରକାଶ କରିଥିଲେ । ସଙ୍ଗୀତମାଳାର ନିବେଦନରେ ମଧୁସୂଦନ ଲେଖିଥିଲେ, "ସଙ୍ଗୀତମାଳା ବ୍ରାହ୍ମ ସମାଜର ଚତୁଃଷଷ୍ଠିତମ ମାଘୋତ୍ସବ ଉପଲକ୍ଷରେ ପ୍ରକାଶିତ ହେଲା । ଏଥିରେ ଯେଉଁ ଶତଗୋଟି ସଙ୍ଗୀତ ସନ୍ନିବେଶିତ ହୋଇଅଛି, ସେଥି ମଧ୍ୟରୁ ପ୍ରାୟ ୪୦ଟି ସଙ୍ଗୀତ ବିଭିନ୍ନ ସମୟରେ ଲିଖିତ ହୋଇ ପୁସ୍ତକ ପତ୍ରିକାଦିରେ ପ୍ରକାଶିତ ହୋଇଥିଲା । ଅବଶିଷ୍ଟ ସଙ୍ଗୀତଗୁଡ଼ିକ ସମ୍ବଲ-ପୁରହିତୈଷିଣୀର ସୁଯୋଗ୍ୟ ସମ୍ପାଦକ ସ୍ୱଦେଶବତ୍ସଳ ମୋର ସୋଦର-ପ୍ରତିମ ବନ୍ଧୁ ଶ୍ରୀଯୁକ୍ତ ପଣ୍ଡିତ ନୀଳମଣି ମିଶ୍ର (ବିଦ୍ୟାରତ୍ନ) ମହାଶୟଙ୍କର ସସ୍ନେହ ପୁଣ୍ୟ ପ୍ରବର୍ତ୍ତନାରେ ଗତ ଛ ମାସ ମଧ୍ୟରେ ଲିଖିତ ହୋଇ-ଅଛି । ତାହାଙ୍କର ସେହି ପବିତ୍ର ପ୍ରୀତିପୂର୍ଣ୍ଣ ଉତ୍ତେଜନା ନିମିତ୍ତ ମୁଁ ଚିରଋଣୀ ରହିଲି ।" ଯାହା ହେଉ ସଙ୍ଗୀତମାଳା ବ୍ରାହ୍ମ ସମାଜର ଓଡ଼ିଆ ସଙ୍ଗୀତର ଅଭାବ କେତେକ ପରିମାଣରେ ଦୂର କରି ପାରି-ଥିଲା । କିନ୍ତୁ ଉପାସନା ପୂର୍ବବତ୍ ଅଧିକାଂଶ ସମୟରେ ବଙ୍ଗଳା ଭାଷାରେହିଁ ହୋଇଥାଏ । ଅଧିକସଂଖ୍ୟକ ସଭ୍ୟ ବଙ୍ଗୀୟ ହୋଇଥିବା ବୋଧ ହୁଏ ଏହାର ପ୍ରଧାନ କାରଣ । ଅଳ୍ପ କେତେକ ମାସ ପୂର୍ବେ ଓଡ଼ିଆ ସାହିତ୍ୟ-ପ୍ରଚାରସଙ୍ଘର ପ୍ରଧାନ କର୍ମୀ ସୁହୃଦ୍ ଶ୍ରୀଯୁକ୍ତ ଲକ୍ଷ୍ମୀ-ନାରାୟଣ ପଟ୍ଟନାୟକଙ୍କ ଉଦ୍ୟମରେ ଖଣ୍ଡିଏ ନୂତନ ବ୍ରାହ୍ମସଙ୍ଗୀତ

ପ୍ରକାଶିତ ହୋଇଅଛି । ଏଥିରେ ମଧୁସୂଦନଙ୍କ ସଂଗୀତମାଳାରୁ ଅନେକ-ଗୁଡ଼ିଏ ସଂଗୀତ ସନ୍ନିବେଶିତ ହୋଇଅଛି । ତାହା ଛଡ଼ା ଅନ୍ୟାନ୍ୟ ବ୍ୟକ୍ତିଙ୍କ ରଚିତ କେତେଗୁଡ଼ିଏ ଉପଯୁକ୍ତ ସଂଗୀତ ମଧ୍ୟ ପ୍ରଦତ୍ତ ହୋଇଅଛି ।

କଟକ ଟ୍ରେନିଂ ସ୍କୁଲରେ ଶିକ୍ଷକ ଥିବା କାଳରେ ମଧୁସୂଦନଙ୍କ ସାହିତ୍ୟଚର୍ଚ୍ଚାର ପ୍ରସାର ଅନେକ ପରିମାଣରେ ହୋଇ ପାରିଥିଲା । ଏହି ସମୟରେହିଁ ତାଙ୍କର ଅନେକଗୁଡ଼ିଏ କବିତା ଓ ପ୍ରବନ୍ଧ ଲିଖିତ ଏବଂ ପ୍ରକାଶିତ ହୋଇଥିଲା । ୧୮୯୫—୯୬ ଖ୍ରୀଷ୍ଟାବ୍ଦ ମଧ୍ୟରେ ଛନ୍ଦମାଳାର ଦ୍ୱିତୀୟଖଣ୍ଡ ଲିଖିତ ଓ ପ୍ରକାଶିତ ହୋଇଥିଲା । ଶ୍ରେଣୀ ମଧ୍ୟରେ ସେ ଯେତେବେଳେ ନିଜର ଲେଖା "ଜୀବନଚିନ୍ତା" "ଆକାଶ ପ୍ରତି" "ଧ୍ୱନି" କିମ୍ବା "ରାମବନବାସ" ଆଦି କବିତା ପଢ଼ି ବୁଝାନ୍ତି, ସେତେବେଳେ ତାଙ୍କର ଦେହ ରୋମାଞ୍ଚିତ ହୋଇ ଦରଦର ଧାରରେ ଅବିରଳ ଅଶ୍ରୁ ବୁହି ଚକ୍ଷୁ ଦେଇ ଝରି ପଡ଼ିବାର ଅନେକ ଛାତ୍ର ଦେଖିଅଛନ୍ତି ।

କଟକ ଟ୍ରେନିଂ ସ୍କୁଲରେ ମଧୁସୂଦନଙ୍କୁ ବାର ବର୍ଷ ଶିକ୍ଷକତା କରିବାକୁ ପଡ଼ିଥିଲା । କଟକରେ ଥାଇ ସକଳ ସଦନୁଷ୍ଠାନରେ ସେ ଯୋଗ ଦେଉଥିଲେ, ସାହିତ୍ୟଚର୍ଚ୍ଚା ଓ ଧର୍ମଚର୍ଚ୍ଚା ସମ୍ପର୍କୀୟ ସକଳ ସଭା ସମିତିରେ ସେ ନିରତିଶୟ ଉତ୍ସାହରେ କାର୍ଯ୍ୟ କରୁଥିଲେ । କୌଣସି ଛାତ୍ରକୁ ଏ ସବୁ ଦିଗରେ ଉତ୍ସାହିତ ଦେଖିଲେ ସେ ପରମ ଆହ୍ଲାଦରେ ତାକୁ ସାହାଯ୍ୟ କରୁଥିଲେ । ଟ୍ରେନିଂ ସ୍କୁଲରେ ସେ ଗୋଟିଏ ଦୁଇଟି ସୁଯୋଗ୍ୟ ଛାତ୍ର ଲାଭ କରିଥିଲେ । ସେମାନଙ୍କ ମଧ୍ୟରେ ପରଲୋକଗତ ସୁଲେଖକ ମୃତ୍ୟୁଞ୍ଜୟ ରଥଙ୍କ ନାମ ଉଲ୍ଲେଖଯୋଗ୍ୟ । ସାହିତ୍ୟ-କ୍ଷେତ୍ରରେ ଏହାଙ୍କର ସାଧନା ଓ ନିଷ୍ଠା ଅତୀବ ପ୍ରଶଂସନୀୟ ଏବଂ

ଏହାଙ୍କର ଅକାଳ ବିୟୋଗରେ ଉତ୍କଳ-ସାହିତ୍ୟର ସାମାନ୍ୟ କ୍ଷତି ହୋଇ ନାହିଁ ।

ଉତ୍କଳ ସମ୍ମିଳନୀରେ ରାଜନୀତି ଏବଂ ଧର୍ମଚର୍ଚ୍ଚା ବ୍ୟତୀତ ସକଳପ୍ରକାର ଦେଶହିତକର ବିଷୟର ଆଲୋଚନା ହେବାର ଜାଣି ମଧୁସୂଦନ ଆରମ୍ଭରୁ ଏଥିରେ ଯୋଗ ଦେଇଥିଲେ ଏବଂ ଏ ସମ୍ପର୍କରେ ଅନେକ ଥର କହିଥିଲେ, "ଏହି ଯେ ନବଜାଗରଣର ସୂତ୍ରପାତ ହୋଇ-ଅଛି, ତହିଁରେ ଉତ୍କଳ ପ୍ରବୁଦ୍ଧ ହେଲେ ତାହାର ଉନ୍ନତି ଅବଶ୍ୟମ୍ଭାବୀ । ଏହାଦ୍ୱାରା ଉତ୍କଳ ସାହିତ୍ୟର ଆକାଶ ବିମଳ ହୋଇ ଉଠିବ । ଈଶ୍ୱର ଏହି ସଚ୍ଚେଷ୍ଟା ଉପରେ ଆଶୀର୍ବାଦ ବର୍ଷଣ କରନ୍ତୁ ।"

ମଧୁସୂଦନ ଟ୍ରେନିଂ ଇସ୍କୁଲରେ କାର୍ଯ୍ୟ କରୁଥିବା ବେଳେ ଶେଷ ଗୁରି ବର୍ଷରେ ମାସିକ ଟ ୨୫୦୲ ବେତନ ଲାଭ କରିଥିଲେ । ୧୯୦୧ ମସିହା ନଭେମ୍ବର ମାସଠାରୁ ସେ ପ୍ରାଦେଶିକ ଶିକ୍ଷା ବିଭାଗର ସପ୍ତମ ଶ୍ରେଣୀକୁ ଉନ୍ନୀତ ହୋଇଥିଲେ । ୧୯୦୫ ଖ୍ରୀଷ୍ଟାବ୍ଦରେ ସେ ପ୍ରାଦେଶିକ ଶିକ୍ଷାବିଭାଗର ଷଷ୍ଠ ଶ୍ରେଣୀକୁ ଉନ୍ନୀତ ହୋଇ ମାସିକ ଟ ୩୫୦୲ ବେତନ ପାଇଲେ । କିନ୍ତୁ ପରବର୍ତ୍ତୀ ତାଙ୍କୁ ଅନ୍ୟ କାର୍ଯ୍ୟ ନେବାକୁ ହୋଇଥିଲା, ଅର୍ଥାତ୍ ୧୯୦୭ ଖ୍ରୀଷ୍ଟାବ୍ଦରେ ସେ ଓଡ଼ିଶା ସ୍କୁଲ ସମୂହର ଇନସ୍‌ପେକ୍ଟର ପଦକୁ ଉନ୍ନୀତ ହୋଇଥିଲେ ।



# ଦଶମ ପରିଚ୍ଛେଦ ।

## ସ୍କୁଲ ଇନ୍‌ସ୍ପେକ୍ଟର ।

୧୯୦୭ ଖ୍ରୀଷ୍ଟାବ୍ଦ ଅପ୍ରେଲ ମାସରେ ମଧୁସୂଦନ ଓଡ଼ିଶା ବିଭାଗର ସ୍କୁଲସମୂହର ଇନ୍‌ସ୍ପେକ୍ଟରରୂପେ ଅସ୍ଥାୟୀଭାବରେ ନିଯୁକ୍ତ ହେଲେ । କବି ରାଧାନାଥ ସେତେବେଳକୁ ପେନ୍‌ସନ୍ ପାଇ କଟକ ସହରରେହିଁ ଅବସ୍ଥାନ କରୁଥିଲେ । ମଧୁସୂଦନ ତାଙ୍କ କବିଗୁରୁଙ୍କର ସାହଚର୍ଯ୍ୟ ଲାଭ କରି ନିଜକୁ ଧନ୍ୟ ମନେ କରୁଥିଲେ । କଟକରେ ଥିବା ସମୟ ମଧ୍ୟରେ ପ୍ରାୟ ପ୍ରତ୍ୟେକ ଦିନ ତାଙ୍କ ସହିତ ରାଧାନାଥଙ୍କର ସାକ୍ଷାତ୍କାର ଘଟୁଥିଲା ।

୧୯୦୭ ଖ୍ରୀଷ୍ଟାବ୍ଦର ଅକ୍ଟୋବର ମାସରେ ସେ ପ୍ରାଦେଶିକ ଶିକ୍ଷା ବିଭାଗର ପଞ୍ଚମ ଶ୍ରେଣୀକୁ ଉଠି ମାସିକ ଟ ୪୦୦୲ ଦରମା ପାଇଲେ ଏବଂ ଏହିଦିନଠାରୁ ୧୯୦୮ ମସିହା ମାର୍ଚ୍ଚ ମାସ ପର୍ଯ୍ୟନ୍ତ ସେ ଭାରତୀୟ ଶିକ୍ଷାବିଭାଗରେ (Indian Educatial Service) ସ୍ଥାନ ପାଇଥିବାରୁ ମାସିକ ଏକଶତ ଟଙ୍କା ଅଧିକା ପାଉଥିଲେ । ବର୍ତ୍ତମାନ ସେ ଲୋକଙ୍କର ଘରେ ଘରେ ପରିଚିତ ହୋଇଗଲେ । କାରଣ ଚାଟଶାଳୀଠାରୁ ଆରମ୍ଭ କରି ମାଇନର ବା ଭର୍ଣ୍ଣାକୁଲାର ପର୍ଯ୍ୟନ୍ତ ସମସ୍ତ ପାଠ୍ୟପୁସ୍ତକ ସେ ଲେଖିଥିଲେ ଏବଂ ଏହାଦ୍ୱାରା ତାଙ୍କର ଆର୍ଥିକ ସ୍ୱାଚ୍ଛନ୍ଦ୍ୟ ସମ୍ୟକ୍ ବୃଦ୍ଧି ଲାଭ କରିଥିଲା । ତାଙ୍କ କୃତ ବର୍ଣ୍ଣବୋଧ, ଶିଶୁବୋଧ, ବିଜ୍ଞାନପାଠ, ଅଙ୍କ ପୁସ୍ତକ, ସାହିତ୍ୟମଞ୍ଜରୀ, ସାହିତ୍ୟ କୁସୁମ, ସାହିତ୍ୟତରଙ୍ଗ ପ୍ରଭୃତି ପାଠ୍ୟପୁସ୍ତକ ଗୋଟିକ ପରେ ଗୋଟିଏ ଓଡ଼ିଶାର ଛାତ୍ରମାନଙ୍କ ହସ୍ତରେ ଶୋଭା ପାଇଲା ।

ଏହି ପ୍ରବୀଣ ବୟସରେ ମଧ୍ୟ ସେ ଛାତ୍ରମାନଙ୍କ ସହିତ ସମବୟସୀ ପରି ବ୍ୟବହାର କରୁଥିଲେ । କେହି ଛାତ୍ର କୌଣସି ପ୍ରଶ୍ନର ଉତ୍ତର

ଦେଇ ନ ପାରିଲେ ସେ ତାଙ୍କୁ ଲଜ୍ଜା ଦେଇ ନ ଥିଲେ, ବରଂ ସହଜ ଭାବରେ ବୁଝାଇ ସମସ୍ତଙ୍କୁ ତୁଷ୍ଟ କରୁଥିଲେ । ନିଜର ଲେଖାକୁ ସେ ଅନେକ ସମୟରେ ଛାତ୍ରମାନଙ୍କୁ ଶୁଣାଇ ତାହାର ଦୋଷଗୁଣର ଆଲୋଚନା କରୁଥିଲେ । ଇନ୍‌ସ୍ପେକ୍ଟର ଥିବା ସମୟରେ ମଧୁସୂଦନ ଗଡ଼ଜାତ ପ୍ରଭୃତି ଭ୍ରମଣ କରି ପୁଙ୍ଖାନୁପୁଙ୍ଖରୂପେ ନାନା ଦର୍ଶନୀୟ ସ୍ଥାନ ଦେଖିଥିଲେ । ଗଡ଼ଜାତ ଭାଷାରେ ଖାଣ୍ଟି ଓଡ଼ିଆଶବ୍ଦ ବହୁ ପରିମାଣରେ ରହିଅଛି ବୋଲି ସେ ତାହାର ବଡ଼ ଆଦର କରୁଥିଲେ ।

ଶିକ୍ଷା ବିଭାଗର ଜଣେ ଏତେଦୂର ଉଚ୍ଚ କର୍ମଚାରୀ ହୋଇ ମଧ୍ୟ ଉଦାରଚେତା ମଧୁସୂଦନ କୌଣସି ଦିନ ସରକାରର ତୁଷ୍ଟି ସାଧନ ପାଇଁ ଦେଶର ଅହିତକର କାର୍ଯ୍ୟ କରି ନାହାନ୍ତି । ତାଙ୍କର ସାଧୁ ସ୍ୱଭାବ ଓ ମଧୁର ଚରିତ୍ର ଉଭୟ ସରକାର ଓ ଦେଶବାସୀଙ୍କ ନିକଟରେ ତାଙ୍କୁ ସମ୍ମାନିତ ଓ ଆଦୃତ କରୁଥିଲା । ତାଙ୍କର ଯତ୍ନରେ ମାଇନର୍ ଓ ଭର୍ଣ୍ଣାକ୍ୟୁଲର୍ ଶିକ୍ଷକମାନଙ୍କର ସମ୍ମିଳନୀ ବସିଥିଲା । ନୈଶ ବିଦ୍ୟାଳୟ, ବାଳିକା ବିଦ୍ୟାଳୟ, ଅସ୍ପୃଶ୍ୟ ଜାତିମାନଙ୍କ ପାଇଁ ବିଦ୍ୟାଳୟ ଆଦି ସଦନୁଷ୍ଠାନ ସେ ସ୍ଥାନେ ସ୍ଥାନେ କରି ଯାଇଥିଲେ ଏବଂ ତାଙ୍କର ଏ ଦିଗରେ ସର୍ବଶ୍ରେଷ୍ଠ କୀର୍ତ୍ତି ଭିକ୍ଟୋରିଆ ହାଇ ସ୍କୁଲ ଆଜି ପର୍ଯ୍ୟନ୍ତ ଦେଦୀପ୍ୟମାନ ରହିଅଛି ।

୧୯୦୭ ମସିହାରେ ସରକାର ମଧୁସୂଦନଙ୍କୁ 'ରାୟ ବାହାଦୂର' ଉପାଧି ଦେଇଥିଲେ । କିନ୍ତୁ ଅଧିକ ମୂଲ୍ୟବାନ୍, ଅଧିକ ବଡ଼ ଉପାଧି 'ଭକ୍ତ-କବି' ଆଖ୍ୟା ସେ ଦେଶବାସିଙ୍କଠାରୁ ଏଥି ପୂର୍ବରୁ ପାଇ ସାଇଥିଲେ ଏବଂ ସରକାରୀ ଉପାଧିପ୍ରାପ୍ତି ପୂର୍ବରୁ ସେ ଉତ୍କଳରେ ସୁପରିଚିତ ହୋଇ ସାରିଥିଲେ ।

୧୯୦୮ ମସିହା ମାର୍ଚ୍ଚ ମାସରେ ମଧୁସୂଦନ ଓଡ଼ିଶା ଶିକ୍ଷା ବିଭାଗର ଅତିରିକ୍ତ ଇନ୍‌ସ୍ପେକ୍ଟର ପଦରେ ନିଯୁକ୍ତ ହୋଇଥିଲେ । ଏହି ବର୍ଷ ବୈଶାଖ ପୂର୍ଣ୍ଣିମା ତିଥିରେ ତାଙ୍କର ବନ୍ଧୁମାନେ ଏବଂ ଉତ୍କଳର ବିଶିଷ୍ଟ

କବି ରାଧାନାଥ ପରଲୋକଗତ ହେଲେ । ପରବର୍ଷ ଜୁଲାଇ ମାସ ପର୍ଯ୍ୟନ୍ତ ସେ ସରକାରୀ ଚାକିରି କରିଥିଲେ, ତତ୍ପରେ ସେ ପେନ୍‌ସନ୍ ପ୍ରାପ୍ତ ହେଲେ ।

୧୯୦୯ ଖ୍ରୀଷ୍ଟାବ୍ଦରେ ସେ ସରକାରୀ କର୍ମରୁ ଅବ୍ୟାହତି ଲାଭ କଲେ । ବର୍ତ୍ତମାନ ତାଙ୍କୁ ସାଧାରଣ କାର୍ଯ୍ୟରେ ଯୋଗ ଦେବାର ସୁଯୋଗ ମିଳିଲା । ଚାକିରି ଛାଡ଼ିଲେ ଅନେକ ଲୋକ କୌଣସି କାର୍ଯ୍ୟ କରିବାକୁ ନ ପାଇ ବଡ଼ ଅସ୍ୱସ୍ତିରେ କାଳ କଟାଇଥାନ୍ତି । କିନ୍ତୁ ମଧୁସୂଦନଙ୍କର ଅର୍ଥସମ୍ପର୍କୀୟ କାର୍ଯ୍ୟ ବ୍ୟତୀତ ଯଥାର୍ଥରେ ମନ ପ୍ରାଣ ଢାଳିଦେଇ ଲାଗି ପଡ଼ିବାର ଅନେକ ଦାୟିତ୍ୱ ଥିଲା । ସାହିତ୍ୟସେବା, ଧର୍ମଚର୍ଚ୍ଚା ଓ ଭିକ୍ଟୋରିଆ ହାଇ ସ୍କୁଲ ପାଇଁ ଅକ୍ଲାନ୍ତ ପରିଶ୍ରମରେ ତାଙ୍କର ସମୟ ଅତିବାହିତ ହେବାକୁ ଲାଗିଲା । ଏଥିରେ ଅବଶ୍ୟ ଅର୍ଥାଗମର ଚିନ୍ତା ନ ଥିଲା । କିନ୍ତୁ ଏହା ଯେ ତାଙ୍କ ଜୀବନର ସର୍ବଶ୍ରେଷ୍ଠ ପ୍ରିୟବସ୍ତୁ ।

ମଧୁସୂଦନ ଚିରକାଳ ମହା ଉଦାର ମତର ପକ୍ଷପାତୀ ଥିଲେ । କୌଣସି ହୀନ ସଙ୍କୀର୍ଣ୍ଣତାକୁ ମନରେ ସ୍ଥାନ ନ ଦେବା ତାଙ୍କ ଜୀବନର ଏକ ବ୍ରତ । ସେ ହିନ୍ଦୁସମାଜ ପରିତ୍ୟାଗ କରି ବ୍ରାହ୍ମ ସମାଜର ଅନ୍ତର୍ଭୁକ୍ତ ହେଲେହେଁ ଏ ସମାଜର ସମ୍ବନ୍ଧ ନିନ୍ଦା ତାଙ୍କ ମୁଖରୁ କେବେ ଶୁଣା ଯାଇ ନାହିଁ । ଏପରି କି, ହିନ୍ଦୁ ଓ ବ୍ରାହ୍ମ ସମାଜ ମଧ୍ୟରେ ପ୍ରଧାନ ପାର୍ଥକ୍ୟ ପୌତ୍ତଳିକତା ପ୍ରତି ସେ ବରଂ କହିବାର ସମ୍ମାନ ପ୍ରକାଶ କରିବାର ଦେଖା ଯାଇଅଛି । କାଷ୍ଠ ହେଉ, ପାଷାଣ ହେଉ, ଅକାର ହେଉ, ନିରାକାର ହେଉ, ଯେଉଁଠାରେ ମାନବର ଅଚଳ ବିଶ୍ୱାସ ଓ ଦୃଢ଼ ଭକ୍ତିର ପରିଚୟ ସେ ପାଇଅଛନ୍ତି, ସେଠାରେ ସେ ଉପଯୁକ୍ତ ଶ୍ରଦ୍ଧା ଓ ସମ୍ମାନ ପ୍ରଦର୍ଶନରେ ତ୍ରୁଟି କରି ନାହାନ୍ତି । ସେ ଅନେକ ସମୟରେ ସ୍ପଷ୍ଟ କହୁଥାନ୍ତି, "ଯେଉଁ ଶିକ୍ଷିତମାନେ ଚଟା ତିଳକ କାଟିବା ପ୍ରକୃତ ଧର୍ମ ନୁହେଁ ବୋଲି ବୁଝି ସୁଦ୍ଧା ସମାଜ ଡରରେ ଗତାନୁଗତିକ ଭାବରେ ଆଚରଣ କରନ୍ତି, ସେ କାପୁରୁଷମାନଙ୍କୁ ମୁଁ ଅତ୍ୟନ୍ତ ଘୃଣା କରେଁ,

କିନ୍ତୁ ଯେଉଁ ଅଶିକ୍ଷିତମାନେ ତାହାଙ୍କୁ ଧର୍ମ ବୁଦ୍ଧି ଅଟଳ ବିଶ୍ୱାସ ଓ ଈଶ୍ୱର ଭକ୍ତି ସହକାରେ ଦେବପୂଜାଦି କରନ୍ତି, ସେହିମାନଙ୍କୁ ମୁଁ ଅଧିକ ସମ୍ମାନାର୍ହ ଭାବେଁ । କାରଣ ପୂର୍ବୋକ୍ତ ଶ୍ରେଣୀର ଲୋକ ସତ୍ୟର ଆଦର କରନ୍ତି ନାହିଁ—ଅଟଳ ଭକ୍ତି ଓ ବିଶ୍ୱାସର ସତ୍ତା ସେମାନଙ୍କଠାରେ ପ୍ରାୟ ଦେଖାଯାଏ ନାହିଁ । ସେମାନେ ସନ୍ଦେହ ଦୋଳାୟିତମାନଚିତ୍ତ ଏବଂ ସ୍ୱେଚ୍ଛାଚାରୀ । ଲକ୍ଷ୍ୟଭ୍ରଷ୍ଟ ହୋଇ କିଏ କଣ କରି ଯାଉଅଛି, ତାହାର ସ୍ଥିରତା ନାହିଁ । ଆମ୍ଭମାନଙ୍କର ଏ ବ୍ରାହ୍ମସମାଜରେ ମଧ୍ୟ ଅନେକ ଦୋଷ ତ୍ରୁଟି ଅଛି ।" ମଧ୍ୟେ ମଧ୍ୟେ ଆଧୁନିକ ବ୍ରହ୍ମୋପାସନା ପଦ୍ଧତିକୁ ମଧ୍ୟ ସେ ନିନ୍ଦା କରିଥାନ୍ତି ଏବଂ କଥାପ୍ରସଙ୍ଗରେ ଆକ୍ଷେପ ସହକାରେ କହନ୍ତି, "ଆମ୍ଭମାନଙ୍କର ଏ ଉପାସନା ଦିନକୁ ଦିନ ପୋଷାକୀ (formal) ହୋଇ ପଡୁଅଛି ।"

ପୁରୀଠାରେ ତାଙ୍କର ବିଦାୟ ଉପଲକ୍ଷରେ କରାଯାଇଥିବା କୌଣସି ଭୋଜନରେ ଭକ୍ତି ସହକାରେ ମହାପ୍ରସାଦ ସେବନ ତାଙ୍କର ଏହି ଉଦାର ନୀତିର ଅନ୍ୟ ଏକ ନିଦର୍ଶନ । ଏହି ଘଟଣା ଉପଲକ୍ଷରେ ଶ୍ରୀଯୁକ୍ତ ମଧୁସୂଦନ ଦାଶ ବି. ଏ. ମହୋଦୟ ଉଲ୍ଲେଖ କରିଅଛନ୍ତି, "ସେହିଦିନ ତାହାଙ୍କ ସକରୁଣ ସସ୍ନେହ ବିଦାୟ-ବାଣୀରେ ଆମ୍ଭେମାନେ ସମସ୍ତେ ଶୋକବିହ୍ୱଳ ହୋଇ ଯାଇଥିଲୁଁ ଏବଂ ଯେତେବେଳେ ସେ ସମବେତ ବନ୍ଧୁଗଣ ଏବଂ ବ୍ରାହ୍ମଣ ପଣ୍ଡିତମଣ୍ଡଳୀଙ୍କୁ ନମସ୍କାର କରି ସଜଳ ନୟନରେ ଆସନ ଗ୍ରହଣ କରିଥିଲେ, ସେତେବେଳର ତାଙ୍କର ବିନୟନମ୍ର ମୁଖଶ୍ରୀ ଅଦ୍ୟାବଧି ମୋର ହୃଦୟପଟରେ ଦୃଢ଼ଭାବରେ ଅଙ୍କିତ ଅଛି ଏବଂ ବୋଧ ହୁଏ ଚିରକାଳ ରହିବ । ଜଣେ ବ୍ରାହ୍ମର ବନ୍ଧୁ-ପ୍ରସାଦ ବୋଲି ମହାପ୍ରସାଦ ପ୍ରତି ଏତେ ଭକ୍ତି ହୋଇ ପାରେ, ଏହା ମଧ୍ୟ ଆଶାର ଅତୀତ ।"



# ଏକାଦଶ ପରିଚ୍ଛେଦ ।

## ଦେଶ ବିଦେଶରେ ସମ୍ମାନ ।

ଧର୍ମ ଓ ସାହିତ୍ୟ ଦିଗରେ ମଧୁସୂଦନ ଦେଶ ବିଦେଶରେ ଯେ ସମ୍ମାନ ଲଭ କରିଥିଲେ, ତଦପେକ୍ଷା ଅଧିକ ସମ୍ମାନ ଲଭ କରିଥିଲେ ତାଙ୍କର ପ୍ରଶସ୍ତ ହୃଦୟବତ୍ତା ଓ ଚରିତ୍ରମହାତ୍ମ୍ୟପାଇଁ । ବୋମ୍ବାଇ, ମାନ୍ଦ୍ରାଜ, ଏଲହାବାଦ, ପାଟନା ଓ ବିଶେଷତଃ ବଙ୍ଗଳାର ଅନେକ କୃତି ସନ୍ତାନ ତାହାଙ୍କର ଏହି ଗୁଣରେ ଆକୃଷ୍ଟ ହୋଇ ଯଥୋଚିତ ଶ୍ରଦ୍ଧା ଓ ସମ୍ମାନ ପ୍ରଦାନ କରିଥିଲେ । ବଙ୍ଗର ସୁପରିଚିତ କବି ଓ ନାଟ୍ୟକାର ସ୍ୱର୍ଗୀୟ ଦ୍ୱିଜେନ୍ଦ୍ରଲଲ ରାୟ (D. L. Rai) ତାଙ୍କ ଗୁଣରେ ମୁଗ୍ଧ ହୋଇ ତାଙ୍କୁ ବଙ୍ଗଳାର ଦ୍ୱିତୀୟ ରାମତନୁ ଲହିଡ଼ି ଆଖ୍ୟା ପ୍ରଦାନ କରିଥିଲେ । ବଙ୍ଗଳାର ସୁଲେଖକ ଓ ବ୍ରାହ୍ମସମାଜର ଅଗ୍ରଣୀ ପଣ୍ଡିତ ଶିବନାଥ ଶାସ୍ତ୍ରୀ ମହୋଦୟଙ୍କୁ ଓଡ଼ିଶାର ଅନେକେ ଜାଣନ୍ତି । ଜାଣିବାର ବିଶେଷ କାରଣ ଏହି ଯେ, ତାଙ୍କର ପୂର୍ବପୁରୁଷମାନେ ଓଡ଼ିଆ ଥିଲେ । ବଙ୍ଗଦେଶରେ ଦୀର୍ଘକାଳ ବାସ କରି ତାଙ୍କର ବଂଶଧରମାନେ ବର୍ତ୍ତମାନ ସମ୍ପୂର୍ଣ୍ଣରୂପେ ବଙ୍ଗୀୟ ପାଲଟି ଯାଇଅଛନ୍ତି । ସ୍ୱର୍ଗୀୟ ପଣ୍ଡିତ ଶିବନାଥ ଶାସ୍ତ୍ରୀ ମହୋଦୟଙ୍କ ପୁତ୍ର ଶ୍ରୀଯୁକ୍ତ ପ୍ରିୟନାଥ ଭଟ୍ଟାଚାର୍ଯ୍ୟ ମହାଶୟ ମଧୁସୂଦନଙ୍କର ତୃତୀୟ ସନ୍ତାନ ଶ୍ରୀମତୀ ଅବନ୍ତୀ ଦେବୀଙ୍କର ପାଣିଗ୍ରହଣ କରିଅଛନ୍ତି । ସ୍ୱର୍ଗୀୟ ଶିବାନାଥଙ୍କ ପିତା ଖାଣ୍ଟି ହିନ୍ଦୁ ଥିଲେ ଏବଂ ବ୍ରାହ୍ମସମାଜ ପ୍ରତି ତାଙ୍କର କୌଣସି ଦିନ ଅନୁକୂଳ ଦୃଷ୍ଟି ପଡ଼ି ନ ଥିଲା । ଅମରକୀର୍ତ୍ତି ପଣ୍ଡିତ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କର ଦେଶହିତୈଷଣା, ସତ୍ୟନିଷ୍ଠା ଓ ଦାନଶୀଳତା ପ୍ରଭୃତି ସଦ୍‌ଗୁଣଲାଗି ସେ ତାଙ୍କର ଅତ୍ୟନ୍ତ ଅନୁରକ୍ତ ଥିଲେ । ସେ ମହୋଦୟ ଜଗନ୍ନାଥ ଦର୍ଶନଲାଗି ଯେତେବେଳେ ଉତ୍କଳକୁ ଆସି ମଧୁସୂଦନଙ୍କର ପରିଚୟ

ଲାଭ କରି ଫେରିଥିଲେ, ସେତେବେଳେ ଅବନ୍ତୀ ଦେବୀଙ୍କ ନିକଟରେ ତାଙ୍କର ପିତା "ମଧୁସୂଦନ ଉତ୍କଳର ବିଦ୍ୟାସାଗର" ବୋଲି ଭୂୟସୀ ପ୍ରଶଂସା କରିଥିଲେ ।

ଆଧୁନିକ ଅସିଅର ଶ୍ରେଷ୍ଠ କବି ରବୀନ୍ଦ୍ରନାଥଙ୍କ ସହିତ ସେ ନାନା ପ୍ରସଙ୍ଗର ଆଲୋଚନା କରୁଥିଲେ ଏବଂ ଉଭୟେ ପରସ୍ପରକୁ ଆନ୍ତରିକ ଶ୍ରଦ୍ଧା କରୁଥିଲେ । ମୃତ୍ୟୁର ପୂର୍ବ ବର୍ଷ ସେ ବୋଲପୁର ଆଶ୍ରମରେ ରବୀନ୍ଦ୍ରନାଥଙ୍କର ଆତିଥ୍ୟ ଗ୍ରହଣ କରିଥିବାର ତଦୀୟ ଦୈନିକଲିପିରୁ (Diary) ପ୍ରକାଶ ପାଉଅଛି । "Had a talk with Rabi Babu our host about Bengali Grammar and some literary and religious matters.—Listened to some hymns of Rabi Babu's sung by Dinendra Babu. Rabi Babu is no mere poet and writer only. He has become a true saint (Rishi) also. His humility and faith, his single-hearted devotion to the work of ବ୍ରହ୍ମଚର୍ଯ୍ୟାଶ୍ରମ his simple beautiful life impressed me as few lives have done." 9.3.11.

(ବଙ୍ଗଳା ବ୍ୟାକରଣ ଏବଂ କେତେକ ସାହିତ୍ୟ ଓ ଧର୍ମସମ୍ବନ୍ଧୀୟ ବିଷୟରେ ଆମ୍ଭମାନଙ୍କର ଆଶ୍ରୟଦାତା ରବି ବାବୁଙ୍କ ସହିତ କଥାବାର୍ତ୍ତା ହୋଇଥିଲା । ରବି ବାବୁଙ୍କର କେତେକ ଧର୍ମସଙ୍ଗୀତ ଦୀନେନ୍ଦ୍ର ବାବୁଙ୍କ ଦ୍ୱାରା ଗୀତ ହେବାର ଶୁଣିଲି । ରବି ବାବୁ କେବଳ ମାତ୍ର କବି ଓ ଲେଖକ ନୁହନ୍ତି । ସେ ଜଣେ ଯଥାର୍ଥ ଋଷି ହୋଇଅଛନ୍ତି । ତାଙ୍କର ବିନୟ ଓ ବିଶ୍ୱାସ, ବ୍ରହ୍ମଚର୍ଯ୍ୟାଶ୍ରମର କାର୍ଯ୍ୟ ପାଇଁ ତାଙ୍କର ଏକାନ୍ତ ଅନୁରକ୍ତି ଏବଂ ତାଙ୍କର ସରଳ ସୁନ୍ଦର ଜୀବନ ଅତ୍ୟଳ୍ପ ଜୀବନ ପରି ମୋତେ ପ୍ରଭାବିତ କରିଥିଲା । )

କଲିକତାର ବ୍ରାହ୍ମସମାଜ ତାଙ୍କର ଉପାସନାରେ ଆକୃଷ୍ଟ ହୋଇ ତାଙ୍କୁ ଯଥାର୍ଥ ବ୍ରହ୍ମନିଷ୍ଠ ପୁରୁଷ ବୋଲି ଜାଣି ପାରିଥିଲେ । ସେହି କାରଣରୁ କଲିକତା ସାଧାରଣ ବ୍ରାହ୍ମ ସମାଜର ଗୋଟିଏ ବିଶେଷ ଅଧିବେଶନରେ ତାଙ୍କୁ ସଭାପତିରୂପେ ବରଣ କରି ଯଥୋଚିତ ସମ୍ମାନ ପ୍ରଦର୍ଶନ କରିଥିଲେ । ଏହି ଉପଲକ୍ଷରେ ବଙ୍ଗର ବରପୁତ୍ର ଆନନ୍ଦ-ମୋହନ ତାଙ୍କୁ "ବ୍ରାହ୍ମସମାଜର ଗୋଟିଏ ମେରୁସ୍ତମ୍ଭ ବୋଲି ପ୍ରକାଶ କରିଥିଲେ (He is one of the pillars of Brahmo Samaj) । ମାନ୍ଦ୍ରାଜର ବ୍ରାହ୍ମସମାଜ ମଧ୍ୟ ତାହାଙ୍କୁ ଆନ୍ଧ୍ର-ଧର୍ମ-ସମ୍ମିଳନୀର (Andhra Theistic Conference) ସଭାପତିର ଆସନ ଅଳଙ୍କୃତ କରିବାପାଇଁ ଆହ୍ୱାନ କରିଥିଲେ । କିନ୍ତୁ ଅସୁସ୍ଥତାନିବନ୍ଧନ ସେ ସେଥିରେ ଯୋଗ ଦେଇ ପାରିଲେ ନାହିଁ । ବାରାଣସୀଠାରେ ଭାରତ ଜାତୀୟ ମହାସଭା (Indian National Congress) ସହିତ ଯେତେବେଳେ ସମଗ୍ର ଭାରତ-ଧର୍ମ-ମହାସଭା (All India Theistic Conference) ବସିବାର ସ୍ଥିରୀକୃତ ହେଲା, ସେତେବେଳେ ମଧୁ ବାବୁଙ୍କୁ ସଭାପତି ନିର୍ବାଚନ କରାଯାଇଥିଲା । ସେଥିପାଇଁ ସେ ସ୍ୱୟଂ ଅକ୍ଷମ ଥିଲେହେଁ ଅଭିଭାଷଣର କିୟଦଂଶ ପ୍ରସ୍ତୁତ କରି ସାରିଥିଲେ । କିନ୍ତୁ ଉପରୋକ୍ତ କାରଣରୁ ସେ ସେଠାକୁ ମଧ୍ୟ ଯାଇ ପାରିଲେ ନାହିଁ । ୧୯୧୬ ଖ୍ରୀଷ୍ଟାବ୍ଦରେ ବାଙ୍କିପୁରଠାରେ ପୂର୍ବୋକ୍ତ ସମ୍ମିଳନୀକୁ ମଧ୍ୟ ତାଙ୍କୁ ବରଣ କରାଯାଇଥିଲା ଏବଂ ସେଥିରେ ଧର୍ମାଭିଭାଷଣ (sermon) ପ୍ରସ୍ତୁତ କରିବାର ଭାର ତାଙ୍କ ଉପରେ ନ୍ୟସ୍ତ ହୋଇଥିଲା । କିନ୍ତୁ ଅଧିବେଶନର ଦଶଦିନ ପୂର୍ବେ କଠିନ ରୋଗାକ୍ରାନ୍ତ ହୋଇ ସେ ଶଯ୍ୟାଶାୟୀ ହେଲେ । ମୃତ୍ୟୁର ଦୁଇଦିନ ପୂର୍ବେ ସେ ଉକ୍ତ ଅଧିବେଶନର ସଫଳତା କାମନା କରି ତାରଯୋଗେ ସମ୍ବାଦ ପଠାଇବାକୁ ଜଣେ ବନ୍ଧୁଙ୍କୁ ଅନୁରୋଧ କରିଥିଲେ ।

ତାଙ୍କର ଚରିତ୍ରବଳ ଓ ସତ୍ୟନିଷ୍ଠାର ପ୍ରମାଣ ତାଙ୍କର ଏକାନ୍ତ ବନ୍ଧୁ ଓ ସହାଧ୍ୟାୟୀ ଭଗବତୀଚରଣ ଚଟ୍ଟୋପାଧ୍ୟାୟ ପ୍ରଭୃତିଙ୍କ ମୁଖରୁ ଶୁଣାଯାଏ । ଉତ୍କଳବରେଣ୍ୟ କବି ଫକୀରମୋହନ ତାଙ୍କର ମୃତ୍ୟୁ ଉପଲକ୍ଷରେ ଲେଖିଅଛନ୍ତି —

"ଉତ୍କଳରେ ଯାହା ନାମ ଖ୍ୟାତ ଗ୍ରାମେ ଗ୍ରାମେ,
ସେ ମଧୁସୂଦନ ବର୍ତ୍ତମାନ ସ୍ୱର୍ଗଧାମେ ।
ତ୍ରିଶ ବରଷ କାଳ ତାହାଙ୍କୁ ମୁଁ ଜାଣେ,
କରିଛି ଲକ୍ଷିତ ଗୁଣ ଅନୁଭବ ପ୍ରାଣେ ।
ଧନେ ହେଲେ ମଧୁ କହେ ନାହିଁ ମିଥ୍ୟାକଥା,
କେତେବେଳେ କାହା ମନେ ଦେଇ ନାହିଁ ବ୍ୟଥା ।
ପର ଉପକାର ପାଇଁ ସତାଂ ହି ଜୀବନ—
ବାକ୍ୟର ଦୃଷ୍ଟାନ୍ତ ତହିଁ ଶ୍ରୀ ମଧୁସୂଦନ ।"

---

## ଦ୍ୱାଦଶ ପରିଚ୍ଛେଦ ।

### ପାରିବାରିକ ଜୀବନ ।

ପାରିବାରିକ ଜୀବନରୁହିଁ ମନୁଷ୍ୟକୁ ଭଲରୂପେ ଚିହ୍ନାଯାଏ । କାରଣ ପରିବାର ସହିତ ଆମ୍ଭମାନଙ୍କର ସାଧାରଣତଃ ଯେତେଦୂର ନିକଟ ସମ୍ପର୍କ, ଅନ୍ୟ କୌଣସିଠାରେ ତାହା ନାହିଁ । ଏହି ଦିଗରୁ ମଧୁସୂଦନଙ୍କୁ ଦେଖିବାକୁ ଗଲେ ସେ ଏକ ପୁଞ୍ଜୀଭୂତ କୋମଳତାର ଜୀବନ୍ତଶକ୍ତିରୂପେ ପ୍ରତିଭାତ ହୁଅନ୍ତି । ସେ ଗୋଟିଏ ବୃହତ୍ ପରିବାରର କର୍ଣ୍ଣଧାର ଥିଲେ । ନିଜର ଦୁଇଗୋଟି କନ୍ୟା ଓ ଦୁଇଗୋଟି ପୁତ୍ର ବ୍ୟତୀତ ସେ ଅନ୍ୟ କେତେକ ବନ୍ଧୁ ସ୍ୱଜନଙ୍କର ପାଳନଭାର ଗ୍ରହଣ

କରିଥିଲେ । ସର୍ବପ୍ରଥମେ ତାଙ୍କର ଏହି ପୁତ୍ର କନ୍ୟାମାନଙ୍କର ସଂକ୍ଷିପ୍ତ ପରିଚୟ ଦେବା ଅବଶ୍ୟକ ।

ପ୍ରଥମ ସନ୍ତାନ ଶ୍ରୀମତୀ ବାସନ୍ତୀ ଦେବୀ ୧୨୮୧ ସାଲ (୧୮୭୪ ଖ୍ରୀଷ୍ଟାବ୍ଦ) ଆଷାଢ଼ କୃଷ୍ଣ ପଞ୍ଚମୀରେ ଜାତ ହୋଇଥିଲେ । ବଙ୍ଗର ସୁଲେଖକ ଏବଂ ଓଡ଼ିଆ ଭାଷାର ପୃଷ୍ଠପୋଷକ ଅଧ୍ୟାପକ ବ୍ରଜସୁନ୍ଦର ମଜୁମଦାର ଏହାଙ୍କର ସ୍ୱାମୀ ।

ଦ୍ୱିତୀୟ ସନ୍ତାନ ଶ୍ରୀଯୁକ୍ତ ଜୟନ୍ତ ରାଓ କଟକରେ ବର୍ତ୍ତମାନ ସୁବିଖ୍ୟାତ ଡାକ୍ତର । ୧୮୭୮ ଖ୍ରୀଷ୍ଟାବ୍ଦର ସେପ୍ଟେମ୍ବର ୨୮ ତାରିଖରେ ସେ ଜନ୍ମଲାଭ କରିଥିଲେ । ବଙ୍ଗଳାର ସୁଲେଖକ ଓ ସୁପ୍ରସିଦ୍ଧ ଡାକ୍ତର ଶ୍ରୀଯୁକ୍ତ ଉପେନ୍ଦ୍ରକିଶୋର ରାୟ ଚୌଧୁରୀଙ୍କ କନ୍ୟା କଳାକୁଶଳା ଶ୍ରୀମତୀ ସୁଖଲତା ଦେବୀଙ୍କୁ ସେ ସହଧର୍ମିଣୀରୂପେ ଲାଭ କରିଅଛନ୍ତି ।

ତୃତୀୟ ସନ୍ତାନ ଶ୍ରୀମତୀ ଅବନ୍ତୀ ଦେବୀ ୧୨୮୮ ସାଲ ଫାଲ୍‌ଗୁନ ଶୁକ୍ଳ ଚତୁର୍ଥୀରେ ଭୂମିଷ୍ଠା ହୋଇଥିଲେ । ବ୍ରାହ୍ମ ସମାଜର ପ୍ରଧାନ ନେତା ବଙ୍ଗର ପଣ୍ଡିତ ଶିବନାଥ ଶାସ୍ତ୍ରୀ ମହୋଦୟଙ୍କ ପୁତ୍ର ପ୍ରିୟନାଥ ଭଟ୍ଟାଚାର୍ଯ୍ୟ ଏହାଙ୍କର ପାଣିଗ୍ରହଣ କରିଅଛନ୍ତି । କନ୍ୟାମାନଙ୍କ ମଧ୍ୟରେ ଅବନ୍ତୀ ଦେବୀ ଅପେକ୍ଷାକୃତ ଅଧିକ ସୁଶିକ୍ଷିତା ।

ଚତୁର୍ଥ ଶ୍ରୀମତୀ ଶାନ୍ତି ଦେବୀ ୧୨୯୧ ସାଲ ଆଶ୍ୱିନ ଅମାବସ୍ୟାରେ ଜାତ ହୋଇଥିଲେ । କଟକର ବ୍ରାହ୍ମପ୍ରଚାରକ ଶ୍ରୀଯୁକ୍ତ ରାଜମୋହନ ବସୁଙ୍କ ମଧ୍ୟମ ପୁତ୍ର ଶ୍ରୀଯୁକ୍ତ ପ୍ରଫୁଲ୍ଲଚନ୍ଦ୍ର ବସୁଙ୍କ ସହିତ ଏହାଙ୍କର ଶୁଭପରିଣୟ ସମ୍ପନ୍ନ ହୋଇଅଛି ।

ପଞ୍ଚମ ସନ୍ତାନ ଶ୍ରୀଯୁକ୍ତ ପ୍ରଶାନ୍ତ ରାଓ ସନ ୧୨୯୩ର ମୀନ ସଂକ୍ରାନ୍ତିରେ ଜାତ ହୋଇଥିଲେ । ଭ୍ରାତୃବତ୍ସଳ ମଧୁସୂଦନ ଏହି ପୁତ୍ର ଭୂମିଷ୍ଠ ହେବା ସଙ୍ଗେ ସଙ୍ଗେ ପ୍ରାଣାଧିକ ସୋଦର ଜଗନ୍ନାଥ ରାଓ

ଅପୁତ୍ରିକ ଥିବାରୁ ତଦୀୟ ପତ୍ନୀ ଶ୍ରୀମତୀ ରମା ଦେବୀଙ୍କ ହସ୍ତରେ ପ୍ରଶାନ୍ତଙ୍କୁ ଅର୍ପଣ କରିଥିଲେ । ଭ୍ରାତାଙ୍କ ଆଦେଶାନୁଯାୟୀ ଜଗନ୍ନାଥ ବାବୁ ତାଙ୍କୁ ପୋଷ୍ୟ ପୁତ୍ରରୂପେ ଗ୍ରହଣ କରିଥିଲେ । ପ୍ରଶାନ୍ତ ବାବୁ ପ୍ରାୟ ୨୦ ବର୍ଷ ମୟୂରଭଞ୍ଜରେ ଡେପୁଟି କର୍ମ କରି ୧୯୨୭ ଅଗଷ୍ଟ ମାସରେ ପରଲୋକ ଗମନ କରିଅଛନ୍ତି ।

ଏହାଙ୍କ ପରେ ଦୁଇ ଗୋଟି ସନ୍ତାନ ପର ପର ଜାତ ହୋଇ ଅତି ଶୈଶବରେ ମୃତ୍ୟୁ ଲାଭ କରିବାରୁ ସନ୍ତାନନାଶର ଶୋକରେ ମଧୁସୂଦନ ଅତ୍ୟନ୍ତ ବ୍ୟଥିତ ହୋଇ ପଡ଼ିଲେ । ତତ୍ପରେ ଗୋଟିଏ କନ୍ୟା-ରତ୍ନ ଲାଭରେ ସାନ୍ତ୍ୱନା ପାଇ ତାଙ୍କ ନାମ ସାନ୍ତ୍ୱନା ରଖିଥିଲେ । ସାନ୍ତ୍ୱନାଙ୍କର ସ୍ୱାମୀ ଶ୍ରୀଯୁକ୍ତ ସନ୍ତୋଷକୁମାର ବାନାର୍ଜି ଏମ୍. ଏସ୍‌ସି. ବର୍ତ୍ତମାନ କଲିକତା ବେଥୁନ କଲେଜରେ ଅଧ୍ୟାପକ କର୍ମ କରୁ-ଅଛନ୍ତି ।

ସାନ୍ତ୍ୱନାଙ୍କ ଜନ୍ମର ପ୍ରାୟ ୪ ବର୍ଷ ପରେ ଅର୍ଥାତ୍ ୧୩୦୩ ସାଲର ମାଘ ଅମାବସ୍ୟା ଦିନ ବର୍ତ୍ତମାନ କଟକ ରେଭେନ୍ସା କଲେଜର ବିଜ୍ଞାନାଧ୍ୟାପକ ଶ୍ରୀଯୁକ୍ତ ସୁକାନ୍ତ ରାଓ ଜାତ ହୋଇଥିଲେ । ସୁକାନ୍ତ ବାବୁ ପଣ୍ଡିତ ଶିବନାଥ ଶାସ୍ତ୍ରୀଙ୍କର ଦୌହିତ୍ରୀଙ୍କୁ ଅଳ୍ପଦିନ ପୂର୍ବେ ବିବାହ କରିଅଛନ୍ତି । କନିଷ୍ଠ ସନ୍ତାନ ଶ୍ରୀଯୁକ୍ତ ଶ୍ରୀକଣ୍ଠ ରାଓ ୧୮୯୯ ଖ୍ରୀଷ୍ଟାବ୍ଦର ଫେବ୍ରୁୟାରି ୧୬ ତାରିଖରେ ଭୂମିଷ୍ଠ ହୋଇଅଛନ୍ତି । ସେ ଅବିବାହିତ ଥାଇ ଆପଣାକୁ କୃଷିକର୍ମରେ ନିଯୁକ୍ତ କରିଅଛନ୍ତି ।

ଏମାନଙ୍କ ବ୍ୟତୀତ ତାଙ୍କର ଦୁଇଗୋଟି ଭ୍ରାତୁଷ୍ପୁତ୍ରୀ ତାଙ୍କର କନ୍ୟାସ୍ଥାନୀୟା ଥିଲେ । ପ୍ରଥମା ଶ୍ରୀମତୀ ରେବା ସ୍ୱର୍ଗତ ସାଧୁଚରଣ ରାୟଙ୍କୁ ପତିରୂପରେ ଲାଭ କରିଥିଲେ ଏବଂ ଦ୍ୱିତୀୟା ଶ୍ରୀମତୀ ସରସ୍ୱତୀଙ୍କ ସହିତ କଲିକତା ନବବିଧାନ ସମାଜର ପ୍ରଚାରକ ସୁପ୍ରସିଦ୍ଧ ପଣ୍ଡିତ ଉପାଧ୍ୟାୟ ଗୌରଗୋବିନ୍ଦ ରାୟଙ୍କ ପୁତ୍ର ସ୍ୱର୍ଗୀୟ ଅମୃତାନନ୍ଦ ରାୟଙ୍କର ବିବାହ ସମ୍ବନ୍ଧ ହୋଇଥିଲା ।

ଏଠାରେ ସ୍ୱର୍ଗୀୟ ସାଧୁଚରଣ ରାୟଙ୍କର କିଞ୍ଚିତ ପରିଚୟ ଦେବା ଆବଶ୍ୟକ । କାରଣ ମଧୁସୂଦନଙ୍କର ପାରିବାରିକ ବୈବାହିକ ସମ୍ପର୍କ ଆଲୋଚନା କଲେ ଦେଖାଯାଏ, କେବଳ ଶ୍ରୀମତୀ ରେବାହିଁ ଜଣେ ଉତ୍କଳୀୟଙ୍କୁ ସ୍ୱାମୀରୂପେ ଲାଭ କରିଥିଲେ । ସାଧୁଚରଣ ଯାଜପୁର ସବ୍-ଡିଭିଜନର କଣ୍ଟିଆପୁର ନାମକ ଗ୍ରାମରେ ଖଣ୍ଡାଏତ କୁଳରେ ଜନ୍ମ ଗ୍ରହଣ କରିଥିଲେ । ଏକାଧିକ ଥର ଏଫ୍.ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ନ ପାରି ସେ କଟକ ଏକାଡେମୀରେ ଅଳ୍ପ ବେତନରେ ଶିକ୍ଷକତା କାର୍ଯ୍ୟ ଗ୍ରହଣ କରିଥିଲେ । ସେ ସମୟରେ ସାଧୁଚରଣ ଉତ୍କଳର ଜଣେ ବିଶିଷ୍ଟ ସାହିତ୍ୟିକରୂପେ ପରିଚିତ ହୋଇଥିଲେ । "ଉତ୍କଳ ସାହିତ୍ୟ"ର ସେ ଜଣେ ପ୍ରଧାନ ଲେଖକ ଥିଲେ ଏବଂ ଅନ୍ୟାନ୍ୟ ସାମୟିକ ପତ୍ରରେ ତାଙ୍କର ଲେଖା ପ୍ରକାଶିତ ହୋଇଥିଲା । ତାଙ୍କର ଯେ କେତେଖଣ୍ଡ କବିତା ପୁସ୍ତିକା ଅଛି, ସେଗୁଡ଼ିକ ନୀତି ଓ ଧର୍ମ ଭାବରେ ପୂର୍ଣ୍ଣ । "ନବସମ୍ବାଦ" ନାମକ ପତ୍ରିକାରେ ମଧ୍ୟ ସେ ନିୟମିତ ଭାବରେ ପ୍ରବନ୍ଧାଦି ଲେଖୁଥିଲେ ଏବଂ କିଛି କାଳପାଇଁ ଉକ୍ତ ପତ୍ରିକାର ସମ୍ପାଦକତ୍ୱ ଗ୍ରହଣ କରିଥିଲେ । ତତ୍ପରେ "ଆଶା" ନାମକ ଗୋଟିଏ ମାସିକ ପତ୍ର ସେ ନିଜେ ପ୍ରକାଶ କରିଥିଲେ । ମଧ୍ୟରେ ଏହା କିଛିକାଳ କଟକର ବ୍ରାହ୍ମସମାଜକର୍ତ୍ତୃକ ପରିଚାଳିତ ହୋଇ ପରେ ପୁଣି ବାମଣ୍ଡାର ସ୍ୱର୍ଗୀୟ ରାଜା ସଚ୍ଚିଦାନନ୍ଦ ତ୍ରିଭୁବନଦେବଙ୍କ ଆନୁକୂଲ୍ୟରେ ପ୍ରାୟ ଦୁଇ ବର୍ଷ ଚାଲିଥିଲା । ସେତେବେଳେ ଏହା ଉତ୍କଳରେ ଦ୍ୱିତୀୟ ସ୍ଥାନୀୟ ପତ୍ରିକାରୂପେ ପ୍ରଚାରିତ ହୋଇଥିଲା ।

ସାଧୁଚରଣଙ୍କ କବିତା ମଧ୍ୟରୁ 'ଭାବକୁସୁମ', 'ପୌରାଣିକ କବିତା', 'ଭାବନା', 'ଧ୍ରୁବଚରିତ' ଏବଂ 'କୌତୁକକାହାଣୀ' ଏହି କେତେଖଣ୍ଡ ପୁସ୍ତିକାକାରରେ ପ୍ରକାଶିତ ହୋଇଥିଲା । ତରୁଣ ବୟସରେ ବ୍ରାହ୍ମଧର୍ମ ପ୍ରତି ଆକୃଷ୍ଟ ହୋଇ ସେ କାଳରେ ସେ ଯେଉଁ

ନିର୍ଭୀକତା ଏବଂ ସ୍ୱାର୍ଥତ୍ୟାଗର ଦୃଷ୍ଟାନ୍ତ ଦେଖାଇଥିଲେ, ତାହା କାହାରି ପକ୍ଷରେ ଭୁଲିବାର ନୁହେ ।

ମଧୁସୂଦନ ଛନ୍ଦମାଳାର "ପରିବାର" କବିତାରେ ଲେଖିଅଛନ୍ତି—

"ବୈକୁଣ୍ଠ ସମାନ ଅଟଇ ଅଟେ ସେହି ଘର,
ପରସ୍ପର ସ୍ନେହ ଯହିଁ ଥାଏ ନିରନ୍ତର ।"

କେବଳ ଏତିକି ଲେଖି ଦେଇ ସେ ତାଙ୍କର କର୍ତ୍ତବ୍ୟ ଶେଷ କରି ନାହାନ୍ତି । ନିଜ ପରିବାରରେ ସେ ଏହି ଆଦର୍ଶର ସାର୍ଥକତା ଦେଖାଇ ଯାଇଅଛନ୍ତି । ସେ ଯେପରି ଦୟା ଏବଂ କୋମଳତାର ଆଧାରରୂପେ ଗୋଟିଏ ବୃହତ୍ ପରିବାରର ନେତା ହୋଇ ଏହାକୁ ସୁଶୃଙ୍ଖଳରୂପେ ଚଳାଇଅଛନ୍ତି, ତାହା ଅତି ଅଳ୍ପ ଲୋକଙ୍କଠାରେ ଦେଖାଯାଇଥାଏ ।

## ଦୈନନ୍ଦିନ କର୍ମ ।

ଏହି ପରିବାର ମଧ୍ୟରେ ଥାଇ ମଧୁସୂଦନ କିପରି ତାଙ୍କର ଦୈନନ୍ଦିନ ଜୀବନ ଯାପନ କରୁଥିଲେ, ତାଙ୍କର ଦୈନିକ କାର୍ଯ୍ୟରୁ ପ୍ରତୀୟମାନ ହୁଏ । ମଧୁସୂଦନ ପ୍ରତିଦିନ ଅତି ପ୍ରତ୍ୟୁଷରୁ ଗାତ୍ରୋତ୍ଥାନ କରି ଦନ୍ତଧାବନାନ୍ତେ ପର ସ୍ନାନ ସମାପନ କରୁଥିଲେ । ଗୁଡ଼ାଖୁ ଓ ପାନ ତାଙ୍କର ଅଭ୍ୟାସ ଥିଲା । କିନ୍ତୁ ସେ ଏପରି ସଙ୍ଗୋପନରେ ଏହା ସେବନ କରୁଥିଲେ ଯେ, ଅତି ଅଳ୍ପ ଲୋକେ ଏହା ଦେଖି ପାରି ଅଛନ୍ତି । ଏହା ଗୋଟିଏ ଦୂଷିତ ଅଭ୍ୟାସ ବୋଲି ସେ ବହୁବାର ଘୃଣା କରିଥାନ୍ତି ଏବଂ ମଧ୍ୟେ ମଧ୍ୟେ ତାହା ବର୍ଜନ କରିଥାନ୍ତି, କିନ୍ତୁ ଅନେକ ସମୟରେ ଦେହର ଅସୁସ୍ଥତା ଓ ଦୁର୍ବଳତାନିବନ୍ଧନ ସେ ଏହା ସମ୍ପୂର୍ଣ୍ଣରୂପେ ପରିତ୍ୟାଗ କରି ନ ପାରିବାର ଅନୁମିତ ହୁଏ । ସ୍ନାନ ପୂର୍ବରୁ କିଛିକାଳ ତାଙ୍କର ତୈଳମର୍ଦ୍ଦନରେ ଅତିବାହିତ ହେଉଥିଲା । ଏହି ସମୟ ମଧ୍ୟରେ ସେ ପୁତ୍ର କନ୍ୟାମାନଙ୍କର ପଢ଼ା ଶୁଣା ଦେଖନ୍ତି ଅଥବା ଦର୍ଶନାର୍ଥ

ଗ୍ରନ୍ଥ ଅଲୋଚନାରେ ମଗ୍ନ ଥାନ୍ତି । ସ୍ନାନ ଶେଷରେ କଞ୍ଚା ଅଦା ଲୁଣ ସେବନ କରି କେତେବେଳେ ଏକାକୀ, କେତେବେଳେ ସମସ୍ତ ପରିବାର-ବର୍ଗଙ୍କୁ ଘେନି ଉପାସନାରେ ବସନ୍ତି । ପରିବାରବର୍ଗ ଯେପରି ନିୟମିତ ଉପାସନା କରନ୍ତି, ସେଥି ପ୍ରତି ସେ ସର୍ବଦା ସତର୍କ ଥିଲେ । ପୁତ୍ର କନ୍ୟାମାନଙ୍କ ମଧ୍ୟରୁ କେହି ଦୂରରେ ଥିଲେ ସେମାନଙ୍କ ନିକଟକୁ ପ୍ରତି ପତ୍ରରେ ଏହି ଦୈନନ୍ଦିନ ଉପାସନା ବିଷୟରେ ଉପଦେଶ ଲିଖିତ ଥାଏ । ତାଙ୍କର ଦୈନିକଲିପିରୁ ନିମ୍ନୋକ୍ତ ରୂପରେ ତାଙ୍କର ଉପାସନାର ଧାରର ପରିଚୟ ମିଳେ ।

୪. ୨. ୧୧—ଶନିବାର—ଶ୍ରୀପଞ୍ଚମୀ— My birthday observed today. Divine service with family from 11½ A. M.—1½ P.M.—କି ଘୋର ସଙ୍କଟ ସ୍ଥଳରେ ଆଜି ମୁଁ ଉପସ୍ଥିତ ହୋଇଅଛି ! ମୋହର ପାଷଣ୍ଡ ଜୀବନର ସଙ୍କୀର୍ଣ୍ଣ ବିକାର ମୋତେ କି ନୈରାଶ୍ୟମୟ ଭୟାବହ ସ୍ଥଳକୁ ଅଣିଅଛି । ପର୍ବତର ସାନୁମଞ୍ଚର ପ୍ରାନ୍ତରେ ମୁଁ ଦଣ୍ଡାୟମାନ—ଅତଳ ରସାତଳରେ ପତନର ଶଙ୍କା ଉପସ୍ଥିତ । ପଡ଼ିଲି ପଡିଲି ବୋଲି ପ୍ରାଣ ଭୟରେ ଥରୁଅଛି । ହେ ପ୍ରଭୋ ! ଏ ଘୋର ସଙ୍କଟରେ ତୁମ୍ଭେ ମୋ ସମ୍ମୁଖରେ ଆଶା ଅଭୟର ମହାମହୋଜ୍ଜ୍ୱଳରୂପେ ବିରାଜିତ । ମୋତେ ପତନରୁ ରକ୍ଷା କରିବା ପାଇଁ ପ୍ରତ୍ୟକ୍ଷ ପରିତ୍ରାଣରୂପେ ଉପସ୍ଥିତ ହୋଇଅଛ । ହେ ପ୍ରଭୋ ! ଧନ୍ୟ ତୁମ୍ଭର ନାମ ! ଉଦ୍ଧାର କର ପ୍ରଭୋ ! ଉଦ୍ଧାର କର ।

( Divine service with family in the evening )

ମୋତେ ଏ ଯୁଗରେ ଏ ଦେଶରେ ଜନ୍ମ ଦେଇ ହେ ଜନ୍ମଦାତା, କେତେ ସୁଯୋଗ—କେତେ ସୌଭାଗ୍ୟ ମଧ୍ୟରେ ରଖିଅଛ । ଅତୀତର ଓ ବର୍ତ୍ତମାନର କେତେ ମହାଶିକ୍ଷା, ଏ ଦେଶର ଓ ବିଦେଶର କେତେ ଜ୍ଞାନ ପ୍ରେମର ସଂବାଦ, ସାଧୁ ସାଧ୍ୱୀ ଭକ୍ତ ମହାତ୍ମାମାନଙ୍କର କେତେ ପୁଣ୍ୟୋଜ୍ଜ୍ୱଳ ଚରିତ୍ର, ଆତ୍ମୀୟ ସ୍ୱଜନ ବନ୍ଧୁ ବାନ୍ଧବଙ୍କର କେତେ ସ୍ନେହ

ଦୟା ଦ୍ୱାରା ମୋର ଏ କ୍ଷୁଦ୍ର ଜୀବନକୁ ତୁମ୍ଭର ଶ୍ରେୟୋମାର୍ଗରେ ତୁମ୍ଭର ଆନନ୍ଦାମୃତଶାନ୍ତିଧାମକୁ ଯିବାପାଇଁ ଅନୁକ୍ଷଣ ଡାକୁଅଛ ।”

(ଅନ୍ୟତ୍ର) “ହେ ପ୍ରାଣେଶ୍ୱର ! ଏ ଆତ୍ମାକୁ ସେହି ଦିବ୍ୟ ଭାବରେ ଅନୁପ୍ରାଣିତ କର, ଯଦ୍ୱାରା ଏ ଜୀବନ ଏ ଚରିତ୍ର ନବୀଭୂତ ହେବ । ଦିବ୍ୟ ଦୃଷ୍ଟି, ଶ୍ରୁତି, ଅପାର୍ଥିବ ଆଶା, ଜ୍ୱଳନ୍ତ ବିଶ୍ୱାସ, ଐକାନ୍ତିକ ଉତ୍ସାହପୂର୍ଣ୍ଣ ଇଚ୍ଛା ଦିଅ । ହେ ପ୍ରଭୋ ! ହେ ନାଥ ! ତୁମ୍ଭର ସୌନ୍ଦର୍ଯ୍ୟ ଓ ଶକ୍ତି ଏ ଜୀବନରେ ଅନୁପ୍ରବିଷ୍ଟ ହୋଇ ଏ ଆତ୍ମାକୁ ନବତର ଶୋଭା ଓ ଶକ୍ତିରେ ପୂର୍ଣ୍ଣ କରୁ ।”

“ନାଥ ! ଆଉ ସ୍ୱେଚ୍ଛାଚାରିତା ଭଲ ଲାଗୁ ନାହିଁ । ଏବେ ମୋତେ ତୁମ୍ଭ ଇଚ୍ଛାର କ୍ରୀତଦାସ କର ।”

ଏହି ଆତ୍ମନିବେଦନରେହିଁ ଭକ୍ତର ଚରମ ଶାନ୍ତି । ଏହି ଆତ୍ମ-ନିବେଦନ ଲାଗି ଭକ୍ତ ମଧୁସୂଦନଙ୍କର ଅନ୍ତର ମୁହୁର୍ମୁହୁ ବ୍ୟାକୁଳ ହୋଇ ଉଠିଅଛି । ‘ସ୍ତବ’ କବିତାରେ ମଧ୍ୟ ସେ ତଦ୍‌ଗତଚିତ୍ତରେ ଗାଇଅଛନ୍ତି—

ପ୍ରଭୋ ପରମ ଚରଣ,
ଏ ଜୀବନ ଶ୍ରୀଚରଣେ କଲି ସମର୍ପଣ ।

ଯାହା ହେଉ ଏହିପରି ଉପାସନାନ୍ତେ ଆହାର କରିବା ସମୟ ମଧ୍ୟରେ ସେ କେତେବେଳେ ଗୃହକାର୍ଯ୍ୟର ତତ୍ତ୍ୱାବଧାନ କରୁଥିଲେ ଏବଂ ପୁତ୍ର କନ୍ୟାମାନଙ୍କ ଅଧ୍ୟୟନ ଖବର ବୁଝୁଥିଲେ । କନ୍ୟାମାନଙ୍କର ସଂସ୍କୃତ ଜ୍ଞାନ ବଢାଇବାକୁ ସେ ବିଶେଷ ଯତ୍ନବାନ ଥିଲେ ଏବଂ ହିତୋ-ପଦେଶ, ରଘୁବଂଶ ଓ ଉତ୍ତରଚରିତ ଆଦି କାବ୍ୟ ପଢ଼ି ସେମାନଙ୍କୁ ଶୁଣାଉଥିଲେ । ଆହାର କାଳରେ ସେ ପୁତ୍ର କନ୍ୟାମାନଙ୍କୁ ସଙ୍ଗରେ ନେଇ ବସୁଥିଲେ । କର୍ମଚାରୀମାନଙ୍କର ପୂର୍ବାହ୍ଣ ଦଶଟାରେ ଆହାର

ସମାପନ କରି ତାହାର ଅବ୍ୟବହିତ ପରେ କିଛି ଗୁଡ଼ାଖୁ ସେବନ କରୁଥିଲେ ଏବଂ ସେହି ସମୟ ମଧ୍ୟରେ ସମ୍ବାଦପତ୍ର ପାଠ କରୁଥିଲେ । କର୍ମ ସମୟ ମଧ୍ୟରେ ଯେତେବେଳେ ଅବସର ମିଳୁଥିଲା, ସେତେ-ବେଳେ ପୁସ୍ତକ ପାଠ କିମ୍ବା ପ୍ରଣୟନ ଅଥବା ଭିକ୍ଟୋରିଆ ସ୍କୁଲର କାର୍ଯ୍ୟ ହେଉଥିଲା । ଅପରାହ୍ନରେ କିଛିକ୍ଷଣ ବଗିଚା କାର୍ଯ୍ୟ ଅଥବା ସ୍କୁଲ କାର୍ଯ୍ୟ ତତ୍ତ୍ୱାବଧାନ କରି ସନ୍ଧ୍ୟା ପର୍ଯ୍ୟନ୍ତ ବନ୍ଧୁମାନଙ୍କର ସାକ୍ଷାତ୍-କାରରେ କଟାଇଥାନ୍ତି । ତତ୍ପରେ ଉପାସନା ଏବଂ ପୁସ୍ତକ ଅଧ୍ୟୟନରେ ଆହାର କରିବା ପର୍ଯ୍ୟନ୍ତ ସେ ବ୍ୟସ୍ତ ଥାନ୍ତି । ଆହାର ଶେଷରେ ପୁତ୍ର କନ୍ୟାମାନଙ୍କ ସହିତ ହାସ୍ୟାମୋଦରେ ମଗ୍ନ ହୁଅନ୍ତି । ଦିନକ ଡାଏରିରେ ଲେଖା ଅଛି, "ଆହାରାନ୍ତେ ସାନ୍ତ୍ୱନା ଓ ମୁନି ସଙ୍ଗେ ଟିକିଏ ଖେଳା କଲି ।" ତତ୍ପରେ ସେ ଶଯ୍ୟାରେ ଚିତ ହୋଇ ଶୋଇ ନିଦ୍ରା ହେବା-ଯାଏ ଖଣ୍ଡେ ପୁସ୍ତକ ଧରି ପଢ଼ୁଥାନ୍ତି ଏବଂ ଭୃତ୍ୟ ପାଦ ସମ୍ବାହନ କରୁ-ଥାଏ । ଚିତ ହୋଇ ଶୋଇ ପଢ଼ିବାଦ୍ୱାରା ତାଙ୍କର ଦୃଷ୍ଟିଶକ୍ତି ହ୍ରାସ ହୋଇ ପଡ଼ିଥିଲା ଏବଂ ସେଥିଲାଗି ସେ ତାଙ୍କ ଛାତ୍ରମାନଙ୍କୁ ଏପରି ଭାବରେ ଅଧ୍ୟୟନ କରିବାକୁ ବାରଣ କରିଥାନ୍ତି । ତାଙ୍କର କୌଣସି ଦିନ ସୁନିଦ୍ରା ହୁଏ ନାହିଁ । ଦୈନିକ ବିବରଣୀର ଅନେକ ସ୍ଥଳରେ 'Little sleep' 'ଅନିଦ୍ରାର କଷ୍ଟ ଦାରୁଣ', 'ଦୁଇଟା ପରେ ନିଦ୍ରା' ଏହିପରି ପ୍ରାୟ ଦେଖାଯାଏ । ସୁନିଦ୍ରା ଅଭାବରୁ ସେ ବ୍ୟଥିତ ହୋଇ ବହୁବାର କହିଥାନ୍ତି, "ଯେଉଁମାନଙ୍କର ସୁନିଦ୍ରା ହୁଏ, ତାଙ୍କୁ ସ୍ୱର୍ଗବାସୀ ତୁଲ୍ୟ ଜ୍ଞାନ କରେଁ, ସୁନିଦ୍ର ଲୋକ ପ୍ରତି ମୋହର ବଡ଼ ଈର୍ଷା ହୁଏ ।"

ଭକ୍ତରୂପେ ସହଜ ଭାବରେ ତାଙ୍କର ପ୍ରତି ଦିନଟି ସହଜ ଗତିରେ ଅତିବାହିତ ହୋଇ ଯାଉଥିଲା । ତାଙ୍କ ଜୀବନର ସକଳ ଅବସ୍ଥାରେ ଗୋଟିଏ ସରଳ କମନୀୟତା ଫୁଟି ଉଠୁଥିଲା । ଜୀବନର

ପ୍ରାରମ୍ଭରୁ ଶେଷ ପର୍ଯ୍ୟନ୍ତ ତାଙ୍କଠାରେ ଏହି କବିଜନ-ସୁଲଭ ସରଳ ନୀତି ପରିଦୃଷ୍ଟ ହୁଏ । ମାତା ପିତାଙ୍କ ପ୍ରତି ଭକ୍ତି, ପୁତ୍ର କନ୍ୟା ସହୋଦରମାନଙ୍କ ପ୍ରତି ସ୍ନେହ ଶ୍ରଦ୍ଧା ତାଙ୍କଠାରେ ଯେତେଦୂର ଦେଖାଯାଏ, ତାହାର ତୁଳନା ଅତି ଅଳ୍ପ ସ୍ଥଳରେ ଦେଖିବାକୁ ମିଳେ ।

---

## ତ୍ରୟୋଦଶ ପରିଚ୍ଛେଦ ।

### ମାତା ପିତାଙ୍କ ପ୍ରତି ଭକ୍ତି ।

ପୂର୍ବେ ଉଲ୍ଲେଖ କରା ଯାଇଅଛି, ମଧୁସୂଦନ ଅତି ଶୈଶବରୁ ମାତୃସ୍ନେହରୁ ବଞ୍ଚିତ ହୋଇଥିଲେ । କିନ୍ତୁ ସେ ଆଜୀବନ ହୃଦୟ-ପଟରେ ମାତୃ ମୂର୍ତ୍ତି ଧାରଣ କରି ଜନନୀଙ୍କ ପାଇଁ ଶୋକାଶ୍ରୁ ବିସର୍ଜନ କରିଅଛନ୍ତି । ପାଞ୍ଚବର୍ଷ ଦିନୁ ମାତାଙ୍କୁ ହରାଇ ସେ କିପରି ଭାବରେ ତାଙ୍କ ସ୍ମୃତି ପୋଷଣ କରୁଥିଲେ, ତାହା ତଦୀୟ "ଛନ୍ଦମାଳା"ର "ମୋ ଜନନୀ" କବିତାରୁ ସ୍ପଷ୍ଟ ପ୍ରତୀତ ହୁଏ ।

"ପଡ଼ୁଅଛି ମନେ ମୋର ଶୈଶବର କଥା ହେ
ଶୁଣ ଶିଶୁଗଣ,
ଆଜ କେତେ ସୁଖ ଦୁଃଖ କେତେ ପ୍ରିୟ ଜନ ମୁଖ
ଆକୁଳ ହୃଦୟେ ଆହା କରଇ ସ୍ମରଣ ହେ
କରୁଇ ସ୍ମରଣ ।

କବିଙ୍କ ଜୀବନର ଅପରାହ୍ନ ଆଗତ ହୋଇଅଛି । ସେ କରୁଣ ଦୃଷ୍ଟି ନିକ୍ଷେପ କରି ଆକୁଳ ଭାବରେ ପୂର୍ବାହ୍ନର ସ୍ମୃତି ଭୁଲି ପାରୁ ନାହାନ୍ତି ।

"ନୟନେ ନାଚଇ ଆଜ ସେ ସୁନ୍ଦର ମୁଖ ହେ
ପରମ ସୁନ୍ଦର,

ଅନ୍ଧା କବା ସ୍ନେହଭରେ   ହସି ହସି କି ଆଦରେ
ମୋ ଅଙ୍ଗକୁ ବଢ଼ାନ୍ତି ମା   କୋମଳ ଶ୍ରୀକର ହେ
କୋମଳ ଶ୍ରୀକର ।

ଅଦ୍ୟୋପାନ୍ତ ପାଠ କଲେ କବିତାଟି ଜନନୀସୁଲଭ କୋମଳତା ଓ ପବିତ୍ରତାର ଆଧାରରୂପେ ପ୍ରତୀୟମାନ ହୁଏ । ମାତା ହରାଇ ମଧୁସୂଦନ ନିଜକୁ କିପରି ହତଭାଗ୍ୟ ଜ୍ଞାନ କରୁଥିଲେ, ତାହା ନିମ୍ନୋକ୍ତ ଶ୍ଳୋକରୁ ବୁଝାଯାଏ । ସେଥି ସଙ୍ଗେ ସଙ୍ଗେ ତାଙ୍କର ପ୍ରଗାଢ଼ ଭଗବଦ୍‌ଭକ୍ତି ଏବଂ ମହୋଚ୍ଚ ଦାର୍ଶନିକତା ତାଙ୍କୁ ପରମସାନ୍ତ୍ୱନା ଦେଇଅଛି ।

"ପାଞ୍ଚ ବର୍ଷ ବୟ ମୁହିଁ   ଅଟଇ ଅନାଥ ହେ
ହରାଇ ଜନନୀ;
କିନ୍ତୁ ଅହା ବିଶ୍ୱପତି   ଦୟା ବନ୍ଧୁ ଦୁଃଖୀ ପ୍ରତି
ଦେଇଛନ୍ତି ମୋର ପ୍ରାଣେ   ମହାସ୍ପର୍ଶମଣି ହେ
ମହାସ୍ପର୍ଶମଣି ।
ବିଶ୍ୱାସ-ପରଶମଣି   ହୃଦୟେ ମୁଁ ଧରି ହେ
ଦେଖଇ ପ୍ରତ୍ୟକ୍ଷେ,
ଦିବାନିଶି ଆକାଶରେ   ଜଳ ସ୍ଥଳ ଚରାଚରେ
ମୋହର ଜନନୀ ମୂର୍ତ୍ତି   ଧରି ମୋତେ ବକ୍ଷେ ହେ
ଧରି ମୋତେ ବକ୍ଷେ ।"

ବିଦ୍ୟାସାଗରଙ୍କ ପରି ମଧୁସୂଦନଙ୍କର ମାତୃଭକ୍ତି ଜଗତରେ ଅତୁଳ୍ୟ । ପଠଦ୍ଦଶାରେ ସହାଧ୍ୟାୟୀମାନେ ତାଙ୍କୁ ମାତୃସ୍ମରଣରେ ସଜଳନେତ୍ର ହେବାର ବହୁବାର ଦେଖିଅଛନ୍ତି । ପ୍ରତିବର୍ଷ ମାତାଙ୍କ ଶ୍ରାଦ୍ଧ ବାସରରେ ସେ ଜନନୀଙ୍କ ଉଦ୍ଦେଶ୍ୟରେ ଅଶ୍ରୁଜଳାଞ୍ଜଳି ଅର୍ପଣ କରୁଥିଲେ ଏବଂ କାହାର ନିକଟରେ ସ୍ୱୀୟ ଶୈଶବର କଥା କହିବା ବେଳେ

ଜନନୀଙ୍କ କଥା କହିବା କାଳରେ ତାଙ୍କର ଚକ୍ଷୁ ଚଳଚଳଦୃଷ୍ଟି ହୋଇ ବିନ୍ଦୁ ବିନ୍ଦୁ ଅଶ୍ରୁ ଝଡ଼ି ପଡୁଥିଲା । ରୋଗଯନ୍ତ୍ରଣାରେ ଛଟପଟ ହେଉ-ଥିବା ସମୟରେ ସେ ବାରମ୍ବାର 'ମା' ନାମ ଉଚ୍ଚାରଣ କରି ସାନ୍ତ୍ୱନା ଲଭୁଥିଲେ । ଭଗବାନଙ୍କୁ 'ମା' ସମ୍ବୋଧନ କରିବାରେ ସେ ଅପାର ଆନନ୍ଦ ଅନୁଭବ କରୁଥିଲେ । ଜ୍ୟେଷ୍ଠ କନିଷ୍ଠ ଉଭୟ ପ୍ରିୟ ସ୍ତ୍ରୀଜନଙ୍କୁ 'ମା' ସମ୍ବୋଧନ ଦ୍ୱାରା ହୃଦୟର ଗଭୀର ପ୍ରୀତି, ଭକ୍ତି ପ୍ରଦର୍ଶନ କରୁଥିଲେ ।

ମଧୁସୂଦନଙ୍କର ପିତୃଭକ୍ତି ମଧ୍ୟ ଜଗତରେ ଅଳ୍ପ ସ୍ଥାନରେ ଦେଖାଯାଏ । ବିବେକର ବଶବର୍ତ୍ତୀ ହୋଇ ସେ ପିତାଙ୍କ ଅନିଚ୍ଛାସତ୍ତ୍ୱେ ସମାଜ ତ୍ୟାଗ କରିଥିଲେହେଁ ପିତାଙ୍କ ଶେଷସେବାରୂପ ପୁଣ୍ୟବ୍ରତ ଲଭ କରି ପାରିଲେ ନିଜକୁ ଧନ୍ୟ ମନେ କରୁଥିଲେ । ଥରେ ପିତାଙ୍କ ପଦରେ କୌଣସି ବେଦନା ଜାତ ହେବାରୁ ବହୁଭୃତ୍ୟର ସ୍ୱାମୀ ମଧୁବାବୁ ନିଜେ ପିତାଙ୍କ ପଦତଳରେ ବସି ତୈଳ ମର୍ଦ୍ଦନ କରୁଥିଲେ । ଦୃଶ୍ୟ-ଦର୍ଶନରେ ସ୍ନେହମୟ ପିତା ନିଜର ସୁଯୋଗ୍ୟ ପୁତ୍ରକୁ ଏପରି ଭାବରେ ସେବା କରିବାର ଦେଖି ଆନନ୍ଦରେ ଗଦ୍‌ଗଦ ହୋଇ ପଡ଼ିଲେ । ମଧ୍ୟେ ମଧ୍ୟେ ଭଗୀରଥ ବାବୁ ପୁରୀଠାରୁ ତାଙ୍କୁ ଦେଖିବାପାଇଁ ଆସିଲେ ସୁପୁତ୍ର ମଧୁସୂଦନ ପାଦତଳରେ ଭକ୍ତିଗଦ୍‌ଗଦସ୍ୱରରେ ପ୍ରଣିପାତ କରି ଚରଣଧୂଳିଗ୍ରହଣପୂର୍ବକ ସେବକତୁଲ୍ୟ ତଳେ ବସୁଥିଲେ । ମଧୁସୂଦନଙ୍କ ପ୍ରାଣତ୍ୟାଗର ପ୍ରାୟ ତିନି ବର୍ଷ ପୂର୍ବ ପର୍ଯ୍ୟନ୍ତ ପିତା ଭଗୀରଥ ସ୍ୱର୍ଣ୍ଣ ଜୀବିତ ଥିଲେ । ପିତାଙ୍କ ମୃତ୍ୟୁ ପୂର୍ବରୁ ସମ୍ବାଦ ପାଇ ସେ ନିଜର ପୁତ୍ର-କନ୍ୟାମାନଙ୍କୁ ସଙ୍ଗରେ ଘେନି ପୁରୀଠାରେ ଉପସ୍ଥିତ ହେଲେ ଏବଂ ଅନ୍ତିମ ମୁହୂର୍ତ୍ତ ପର୍ଯ୍ୟନ୍ତ ପିତୃସେବା କରିଥିଲେ । ତଥାପି ସେ ମନୋମତ ପିତୃସେବା କରି ପାରି ନ ଥିବାରୁ ଅନୁତପ୍ତ ହେଉଥିଲେ । ପିତାଙ୍କ ମୃତ୍ୟୁ ଘଟନା ବର୍ଣ୍ଣନ କରି ସେ କନିଷ୍ଠ ଭ୍ରାତା ଜଗନ୍ନାଥଙ୍କ

ନିକଟକୁ ଯେଉଁ ଦୁଇ ପତ୍ର ଲେଖିଥିଲେ ସେଥିରୁ ତାଙ୍କର ମନର ଭାବ ସ୍ପଷ୍ଟ ଜଣାଯାଏ ।

“× × × ସ୍ଥିରଭାବରେ ଊର୍ଦ୍ଧ୍ୱନେତ୍ର ହୋଇ ସମାଧିସ୍ଥ-ଭାବରେ ପ୍ରସନ୍ନବଦନରେ ମୋ ସଙ୍ଗରେ ଏବଂ ଏକାକୀ ହରିନାମ କରିବାକୁ ଲାଗିଲେ । କେତେବେଳେ ବା ଗୀତାର ଶ୍ଲୋକ ଆବୃତ୍ତି କରୁ-ଥିଲେ । ଏହାପରେ ପ୍ରାଣବିୟୋଗର ୫।୭ ମିନିଟ ପୂର୍ବ ପର୍ଯ୍ୟନ୍ତ ଆନନ୍ଦରେ ହରିନାମ କରି ପ୍ରାୟ ସାଢ଼େଦଶଟା ସମୟରେ ସଂସାରସମୁଦ୍ର ଉପରୁ ସହଜରେ ସୁନ୍ଦରରୂପେ ପାର ହୋଇଗଲେ । ସେ ଆନନ୍ଦଜ୍ୟୋତିପୂର୍ଣ୍ଣ ଚକ୍ଷୁ ମୁଦ୍ରିତ ହୋଇଗଲା, କେବଳ ଓଷ୍ଠ ଦୁଇଟି ଦେହାନ୍ତେ ଆହୁରି ହରିନାମ କରିବାପାଇଁ ଖୋଲା ରହିଲା । ବାବା, ଏହାପରେ ଆମର ପିତୃଦେବ ଆନନ୍ଦରେ ଚାଲିଗଲେ, ଆମ୍ଭେମାନେ ଆଉ କାହିଁକି ଅସାର ଶୋକ କରିବା ? ପ୍ରଭୁଙ୍କ ଇଚ୍ଛା ପୂର୍ଣ୍ଣ ହେଲା, ବାବା ମୋ ସ୍ଥାନ ହରି-ପାଦପଦ୍ମ ପାଇଲେ । ଆଉ ଅଧିକ କଣ ଲେଖିବି, ଚକ୍ଷୁ ଅଶ୍ରୁପୂର୍ଣ୍ଣ, ହୃଦୟ ବ୍ୟାକୁଳ, ପୁଣି ସଂସାରର କର୍ମଜାଲରେ ଜୀବନ ବଦ୍ଧ !

ବାବା, ତୁ ତ ସତ୍ପୁତ୍ର ହୋଇ ତାଙ୍କର କେତେ ଆକାଂକ୍ଷା ପୂର୍ଣ୍ଣ କରିଅଛୁ; ମୁଁ ସେ କିଛି କରି ନାହିଁ । ସେଥିପାଇଁ ହୃଦୟ କିପରି ଚଞ୍ଚଳ ହେଉଅଛି, ତାହା କିପରି ଜଣାଇବି ? ତେବେ ଏତିକି ମାତ୍ର ଭରସା ଯେ, ସେହି କ୍ଷମାପୂର୍ଣ୍ଣ ସନ୍ତାନବତ୍ସଳ ପିତା ମୋର ଶତ ଶତ ଅପରାଧକୁ କ୍ଷମା କରିଅଛନ୍ତି । × × ×” (୨୨।୫।୧୯୦୯)

ଜନକଙ୍କ ମୃତ୍ୟୁରେ ବାଳକ ଯେପରି ବାଳକ ନିକଟକୁ ପତ୍ର ଲେଖେ, ଏ ପତ୍ର ସେହିପରି ଲିଖିତ । ମଧୁସୂଦନ ଆଜୀବନ ବାଳକ ରହି ପାରିଥିଲେ, ଏହା ଅଳ୍ପ ଲୋକଙ୍କ ଭାଗ୍ୟରେ ଘଟିଥାଏ । ଅନ୍ୟ ପତ୍ରରେ ଲିଖିତ ଅଛି, “ବାବା, ଏ ସମୟରେ ପ୍ରାଣ ଅତ୍ୟନ୍ତ ଆକୁଳ ହେଉ-

ଅଛୁ ଓ ତୋତେ ବକ୍ଷରେ ଧରି ବାବା ବୋଲି ଡାକିବା ପାଇଁ କ୍ରନ୍ଦନ କରୁଅଛୁ । ତୁ ବାବାଙ୍କ ଆକାଙ୍କ୍ଷା ପୂର୍ଣ୍ଣ କରିବାପାଇଁ ଓ ତାଙ୍କ ଦୁଃଖ ଦୂର କରିବାପାଇଁ ଯାହା ଯାହା କରିଅଛୁ, ତାହା ସ୍ମରଣ କରି ମୋ ପ୍ରାଣ ତୋତେ ବାରମ୍ବାର, ଶତ ସହସ୍ରବାର ଧନ୍ୟ ଧନ୍ୟ କହୁଅଛି । ତୁ ବାବାଙ୍କର ଶେଷକାଳରେ ଆହା କପରି ସୁନ୍ଦର କାର୍ଯ୍ୟ କରିଅଛୁ !" (୨୩।୫।୦୯) । ଅନ୍ୟ ପତ୍ରରେ—"ବାବା, ୪ ତାରିଖର ପତ୍ର ୭ ଦିନ ପରେ ପରିଦିନ ପାଇଲି । ଅଶ୍ରୁପୂର୍ଣ୍ଣ ନୟନରେ ତାହା ପଢ଼ିଲି ଏବଂ ତେତେବେଳେ ଅଶ୍ରୁପୂର୍ଣ୍ଣ ନୟନରେ ଏହା ଲେଖୁଅଛି । ଆମ୍ଭମାନଙ୍କର ଯାହା କିଛି ଉନ୍ନତି ହୋଇଅଛି, ତାହା କେବଳ ପିତୃଦେବଙ୍କ ଆଶୀର୍ବାଦରୁ ଘଟିଅଛି । ସଂସାରରେ କେଉଁ ପିତାଙ୍କର ସ୍ନେହ ବାବାଙ୍କର ସ୍ନେହ ଅପେକ୍ଷା ଅଧିକ ମଙ୍ଗଳକର ଓ ଆଶୀର୍ବାଦମୟ ? ହାୟ, ହାୟ, ସେ ସଂସାରରେ ଥିଲାବେଳେ ତାଙ୍କର ମୂଲ୍ୟ ବୁଝିଲି ନାହିଁ । ଏବେ ଏତିକି ମାତ୍ର ସାନ୍ତ୍ୱନା ଯେ, ତାଙ୍କର ପରଲୋକଗମନ ଆମ୍ଭମାନଙ୍କଠାରୁ ତାହାଙ୍କୁ ଦୂରବର୍ତ୍ତୀ କରି ଦେଇ ନାହିଁ, ଏବେ ପ୍ରଭୁଙ୍କ କୃପାରେ ବାବାଙ୍କୁ ପ୍ରାଣର ନିକଟରେ ବୋଲି ଅନୁଭବ କରୁଅଛୁଁ । ପରମ ପିତାଙ୍କର ପ୍ରତିନିଧି ସେହି ପରମପିତାଙ୍କ କ୍ରୋଡ଼ରେ ଥାଇ ଆହା ଆମ୍ଭମାନଙ୍କ ପ୍ରତି କି ପୂର୍ଣ୍ଣସ୍ନେହାମୃତ ନୟନରେ ଅନାଇ ଅଛନ୍ତି ! ସେହି ହୃଦୟାରାଧ୍ୟ ପ୍ରାଣର ବାବା ଆମ୍ଭମାନଙ୍କ ପ୍ରାଣ ସଙ୍ଗରେ ଅଛନ୍ତି । ସେହି ପାଦପଦ୍ମରେ ଆମ୍ଭମାନଙ୍କର ମତି ସ୍ଥିର ରହୁ ।" (୨୧।୭।୧୮୯୬)



# ଚତୁର୍ଦ୍ଦଶ ପରିଚ୍ଛେଦ ।

## କନିଷ୍ଠମାନଙ୍କ ପ୍ରତି ସ୍ନେହ ।

### ଭ୍ରାତୃସ୍ନେହ ।

ମଧୁସୂଦନଙ୍କର ଭ୍ରାତୃସ୍ନେହ ଏ ଯୁଗରେ ଅତୁଳନୀୟ । ବାଳକ ଯେପରି ଅନନ୍ୟୋପାୟ ହୋଇ କେବଳ କ୍ରନ୍ଦନଦ୍ୱାରା ଜଗତକୁ ଜୟ କରିବାକୁ ବସେ, ସେହିପରି ମଧୁସୂଦନ ଆତ୍ୟନ୍ତିକ ସ୍ନେହ ଓ କ୍ରନ୍ଦନ ଦ୍ୱାରା ସ୍ୱୀୟ ସ୍ୱେଚ୍ଛାଚାରୀ ଭ୍ରାତାଙ୍କୁ କିପରି ସତ୍‌ମାର୍ଗକୁ ଆଣି ପାରିଥିଲେ ତାହା ସ୍ୱର୍ଗୀୟ ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କର ନିମ୍ନୋକ୍ତ ବର୍ଣ୍ଣନାରୁ ସ୍ପଷ୍ଟ ପ୍ରମାଣିତ ହୁଏ ।

"× × ଅତି ଶୈଶବରେ ଜନନୀଙ୍କ ବିୟୋଗ ହେବାରୁ ତାଙ୍କର ଏକମାତ୍ର କନିଷ୍ଠ ସହୋଦର ଜଗନ୍ନାଥଙ୍କ ସହିତ ଏକତ୍ର ଭୋଜନ, ଶୟନ ଓ ଅଧ୍ୟୟନ କରି ବଢ଼ି ଆସିଥିଲେ । ସେତେବେଳେ ମାତୃହୀନ କନିଷ୍ଠ ପ୍ରତି ତାଙ୍କର ସ୍ନେହ ମାତୃସ୍ନେହ ଅପେକ୍ଷା କୌଣସି ଅଂଶରେ ହୀନ ନ ଥିଲା । ତାଙ୍କୁ ନ ଦେଖିଲେ ସେ ଅନ୍ନ ଗ୍ରହଣ କରୁ ନ ଥିଲେ । କେବେ କେବେ ଗୃହକୁ ଆସିବାରେ ବିଳମ୍ବ ଦେଖିଲେ ସେ ସଜଳନୟନରେ ତାଙ୍କୁ ଅନାଇ ବସି ରହୁଥିଲେ ଏବଂ ସହପାଠୀ ବନ୍ଧୁଙ୍କ ନିକଟରେ ବାଳକବତ୍ ରୋଦନ କରି ଅନ୍ୱେଷଣ କରୁଥିଲେ । ପାଠରେ କନିଷ୍ଠଙ୍କର ଅମନୋଯୋଗ ଏବଂ ଗର୍ହିତ ଆଚରଣ ଦେଖି ସେ କେବେ ତିରସ୍କାର ବା କଠୋର ଶାସନ କରି ନାହାନ୍ତି । କେବଳ ଅବିରଳ ଅଶ୍ରୁପାତ । ଏହି ଅଶ୍ରୁବର୍ଷଣରେ ତାଙ୍କର ଚରିତ୍ରଦୋଷ ବିଧୌତ ହୋଇ ଯାଇଥିଲା । କେବେ କେବେ ଅସଦ୍-ବୁଦ୍ଧି ଚାଳନାରେ ଜଗନ୍ନାଥ ନିରୁଦ୍ଦେଶ୍ୟ ଭାବରେ କାହିଁ ଚାଲିଗଲେ ସେ ଗୁରୁଆଡ଼କୁ ସମ୍ବାଦ ଦେଇ ବ୍ୟାକୁଳପ୍ରାଣରେ, ବିଷଣ୍ଣହୃଦୟରେ ଗୃହକୋଣରେ ପଡ଼ି ରହୁଥାନ୍ତି । ପରେ ତାଙ୍କୁ ଆସିବାର ଦେଖିଲେ

ସମସ୍ତ ଅପରାଧ ଭୁଲି ଯାଇ ଆଲିଙ୍ଗନ କରି ବାଳକବତ୍ ଉଚ୍ଚୈଃ-ସ୍ୱରରେ ବିଳାପ କରିବାକୁ ଲାଗିଥିଲେ । ଏପରି ସ୍ନେହସିକ୍ତ ବ୍ୟବହାରରେ କାହାର ହୃଦୟ ବା ତରଳିତ ନ ହେବ ? କିନ୍ତୁ ଏଥିରେ କିଛି ଫଳ ନ ଦେଖି ପ୍ରାଣାଧିକ ଭାଇର ଚରିତ୍ରସଂଶୋଧନ ଉଦ୍ଦେଶ୍ୟରେ ପରୋକ୍ଷରେ ସେ ଯେବେ ଯେପରି ବ୍ୟବହାର କରିଥିଲେ, ତାହା ସ୍ମରଣ କରି କଥାପ୍ରସଙ୍ଗରେ ଜଗନ୍ନାଥ ବାବୁ ସରଳପ୍ରାଣରେ କହିଲେ, 'ମୁଁ ଯୌବନରେ ମନ୍ଦ ମେଳରେ ପଡ଼ି ଅନେକ କୁକାର୍ଯ୍ୟ ଓ ଅମେଧ ସେବନ କରିଅଛି । ସେଥିରେ ଗୋଟିଏ ଦିନର ଘଟଣାରେ ସବୁ ଘୁଞ୍ଚି-ଅଛି । ଦାଦାଙ୍କ ଜ୍ୟେଷ୍ଠ ପୁତ୍ରର ଜନ୍ମର କିଛି କାଳପରେ ଯେବେ କାଳକବଳର ପୂର୍ବ ବର୍ଷାରୁ ବାହାରି ଯାଇ ବାହାରେ ଅର୍ଦ୍ଧରାତ୍ର ଏହିପରି କଟାଇ ଯେତେବେଳେ ଏକାକୀ ଫେରିଲି, ଦ୍ୱାରଦେଶରେ ଆସି ଦେଖିଲି ଯେ ଦାଦା ନୀରବରେ ଠିଆ ହୋଇଅଛନ୍ତି । ମୋତେ ଦେଖିଲାକ୍ଷଣି ସେ ହାତ ଧରି ପକାଇ ବାଷ୍ପରୁଦ୍ଧକଣ୍ଠରେ କହିବାକୁ ଲାଗିଲେ—'ବାବା, ତୁ ଏତେବେଳେ କୁଆଡ଼େ ଯାଇଥିଲୁ ? ଶୈଶବରୁ ମା ତ ଚାଲି ଯାଇଛନ୍ତି ! ତୁ ଏକମାତ୍ର ଥିଲୁ । ଏଥର ଯଦି ତୋକୁ ହରାଇବି, ତାହାହେଲେ ମୋର ସଂସାରରେ ଆଉ କି ସୁଖ ଅଛି ସେ କହିବ ? ତେବେ ତୁ ତୋର ଏ ଘର ସମ୍ଭାଳ, ଏ ସମସ୍ତେ ତୋତେ ଲାଗିଲେ— ମୁଁ ଏହିକ୍ଷଣି କୁଆଡ଼େ ଚାଲି ଯାଉଛି ।' ସମସ୍ତ କଥା ପ୍ରାଣର ଗଭୀର ପ୍ରଦେଶରେ ପ୍ରବେଶ କରିବାରୁ ତତ୍‌କ୍ଷଣାତ୍ ତାଙ୍କ ପାଦ ଧରି ପ୍ରତିଜ୍ଞା କଲି, 'ଦାଦା, ଆଜି ଜୀବନରେ ଆଜିଠାରୁ ଏପରି କରିବି ନାହିଁ ।' ସେହି ଦିନଠାରୁ ତାଙ୍କର ଜୀବନର ଗତି ଏକାବେଳକେ ପରିବର୍ତ୍ତିତ ହୋଇଗଲା । କାର୍ଯ୍ୟକ୍ଷେତ୍ରରେ ପ୍ରବେଶ କଲାବେଳେ ଜଗନ୍ନାଥ ବାବୁ ଯେତେବେଳେ ସ୍ଥାନାନ୍ତରରେ ରହିଲେ, ସେତେବେଳେ ପ୍ରାୟ ଅନେକ ଦିନ ତାଙ୍କୁ ଲିଖିତ ହୋଇଥିଲା ଏବଂ ଅନେକ ପତ୍ରରେ ପ୍ରାୟ ଦର୍ଶନର ଆକାଂକ୍ଷା ଏବଂ ସସ୍ନେହ ଆଲିଙ୍ଗନ ଲାଗି ପ୍ରାଣର ବ୍ୟାକୁଳତା ପ୍ରକାଶ

ଯାଉଥିଲା । ବହୁଦିନ ପରେ ଭାଇଙ୍କୁ ଦେଖିଲେ ସେ ହଠାତ୍ ଆଲିଙ୍ଗନ କରି ଶିରଶ୍ଚୁମ୍ବନ କରୁଥିଲେ । ବୃଦ୍ଧ ବୟସରେ ସୁଦ୍ଧା ଏ ସ୍ରୋତ ସେହିପରି ଥିଲା । ବୃଦ୍ଧ ବୟସରେ ସେ ଯେପରି ଅତୁଲ୍ୟ ସ୍ନେହର ବଶୀବର୍ତ୍ତୀ ହୋଇ ପତ୍ର ଲେଖୁଥିଲେ, ତାହା ପାଠ କଲେ ଜଣାଯିବ, ଜଣେ ଶିଶୁପୁତ୍ର ପ୍ରତି ତାହା ଲିଖିତ । 'ଜ୍ୟେଷ୍ଠଭ୍ରାତା ସମଃ ପିତୁଃ' ଉକ୍ତିର ସତ୍ୟତା ସେ ସ୍ୱଜୀବନରେ ଉଜ୍ଜ୍ୱଳରୂପେ ପ୍ରମାଣ କରି ଦେଇ ଅଛନ୍ତି । 'ଏ ସମୟରେ ପ୍ରାଣ ଅତ୍ୟନ୍ତ ଆକୁଳ ହେଉଅଛି ଓ ତୋତେ ବକ୍ଷରେ ଧରି 'ବାବା' ବୋଲି ଡାକିବା ପାଇଁ କ୍ରନ୍ଦନ କରୁଅଛି ।' ପତ୍ରାନ୍ତରରେ —'ବାବା, ତୁ ଯେ ମୋର କି ଧନ, ତାହା କି କୌଣସି ଭାଷା ଦ୍ୱାରା କହି ହେବ ? ଆଜି ତୁ ମୋତେ କି ଚକ୍ଷୁରେ ଦେଖୁ, ତାହା କି ପ୍ରଭୁ ମୋତେ ବୁଝାଇ ଦେଇ ନାହାନ୍ତି ବା ଦେବେ ନାହାନ୍ତି ? ଆଉ ଅଧିକ କଣ ଲେଖିବି ? ପରମପିତା ଆମ୍ଭ ଦୁହିଙ୍କ ଜୀବନକୁ ତାଙ୍କରି ପାଦପଦ୍ମ ଆଡ଼କୁ ଏକାନ୍ତ ଏକନିଷ୍ଠଭାବରେ ଉନ୍ମୁଖ କରି ରଖନ୍ତୁ ।' ଏ ଜଗତରେ କେତେ ଜଣ ବା ଭାଇକୁ ଏପରି ଦ୍ୱିତୀୟ ଜୀବନ ମଣନ୍ତି ? କେତେ ଜଣ ବା ଏପରି ପୁଣ୍ୟସ୍ନେହର ଅଧିକାରୀ ଏବଂ କେତେ ଜଣ ତାହା ଲାଭ କରି ଧନ୍ୟ ହୋଇଅଛନ୍ତି ? ଅହୋ ! ପ୍ରେମର କି ମହିମା ! ମହାକବି ଭବଭୂତି ରାମଚନ୍ଦ୍ରଙ୍କ ମୁଖରେ କହିଅଛନ୍ତି—"ତତ୍ତସ୍ୟ କିମପି ଦ୍ରବ୍ୟଂ ଯୋ ହି ଯସ୍ୟ ପ୍ରିୟୋଜନଃ ।" ଯଥାର୍ଥରେ ଯେଉଁ ସଂସାରରେ ଭ୍ରାତୃସ୍ନେହ ଏତେ ନିବିଡ଼, ଏପରି ଉଚ୍ଚ, ସେ ସଂସାରକୁ ବୈକୁଣ୍ଠ-ଭୁବନ ନ କହି ରହି ନାହିଁ ।

'ଆଶୀର୍ବାଦ' କବିତାଟିରେ ଯେ ବୋଧ ହୁଏ ଏହି ଅନୁଜଙ୍କୁ ଲକ୍ଷ କରି କହିଅଛନ୍ତି—

"ଆକୁଳ ଅଗ୍ରଜ ତୋର କୃତଜ୍ଞ ଅନ୍ତରେ
ଅକଳଙ୍କ ଜୀବନ ବାଞ୍ଛେ ସୁରୁଚି ଭକ୍ତିରେ

× × ×

ସ୍ନେହର ଚୁମ୍ବନ ଦେଇ ଆନନେ ତୋହର
ବନ୍ଦଇ ଆନନ୍ଦେ ବିଶ୍ୱଜନନୀପଦ୍ମର ।"
"ଧନ୍ୟ ଜ୍ୟେଷ୍ଠ ଭ୍ରାତା ! ତୁମ୍ଭେ ଏ ବିଶାଳ ବିଶ୍ୱର
ଜ୍ୟେଷ୍ଠ ଭ୍ରାତା ହୋଇ ଅଭିଷ୍ଟ ବର୍ଷଣ କର ।"

## ଅପତ୍ୟ ସ୍ନେହ ।

ପୁତ୍ରକନ୍ୟାମାନଙ୍କ ଶିକ୍ଷା ଓ ଚରିତ୍ର ପ୍ରତି ମଧୁସୂଦନଙ୍କର ସର୍ବଦା ତୀକ୍ଷ୍ଣ ଦୃଷ୍ଟି ଥିଲା । ଯଥେଷ୍ଟ ଅର୍ଥବ୍ୟୟରେ ଗୃହଶିକ୍ଷକ ନିଯୁକ୍ତ କରି ଏବଂ ନିଜେ ଅବସରକାଳରେ ପୁତ୍ରକନ୍ୟାମାନଙ୍କର ପଢ଼ା ଶୁଣା ଦେଖୁଥିଲେ । ପୁତ୍ରମାନଙ୍କୁ ବାହାରେ ଖେଳିବା ପାଇଁ କିମ୍ବା ଅନ୍ୟ ପିଲାମାନଙ୍କ ସହିତ ମିଶିବାକୁ ସେ ଛାଡ଼ୁ ନ ଥିଲେ । ସେଥିଲାଗି ଗୃହ-ଚତ୍ୱରରେ ସେମାନଙ୍କର କ୍ରୀଡ଼ାଭୂମି ନିର୍ଦ୍ଦିଷ୍ଟ ଥିଲା । ମଧୁସୂଦନ ନାରୀ ସ୍ୱାଧୀନତାର ସମ୍ପୂର୍ଣ୍ଣ ପକ୍ଷପାତୀ ଥିଲେହେଁ ଏବଂ ନିଜର କନ୍ୟାମାନଙ୍କର ଶିକ୍ଷା ପ୍ରତି ସମଧିକ ଦୃଷ୍ଟି ଦେଉଥିଲେହେଁ କେତେଗୋଟି ନିର୍ଦ୍ଦିଷ୍ଟ ପରିବାର ବ୍ୟତୀତ ଅନ୍ୟ କୌଣସି ସ୍ଥାନକୁ ଯାତାୟାତ କରିବା ପାଇଁ ସେମାନଙ୍କ ପ୍ରତି ଅନୁମତି ନ ଥିଲା । କାରଣ ଏ କଥା ସତ୍ୟ ଯେ ଉତ୍କଳର ତଥାକଥିତ ଶିକ୍ଷିତମାନଙ୍କ ମଧ୍ୟରୁ ମୁଷ୍ଟିମେୟ ମାତ୍ର ପରିବାର ଯଥାର୍ଥରେ ମାର୍ଜିତ ରୁଚିର ପକ୍ଷପାତୀ ଏବଂ ନାରୀଜାତି ପ୍ରତି ଉପଯୁକ୍ତ ସମ୍ମାନ ପ୍ରଦର୍ଶନ ଏବେ ମଧ୍ୟ ଅନେକ ଶିକ୍ଷିତ ପରିବାରଙ୍କର ଶିଖିବାର ଅଛି । ସନ୍ଧ୍ୟା ପରେ ସନ୍ତାନମାନଙ୍କୁ ବାହାରେ ରହିବାକୁ ବାରଣ ଥିଲା । କେହି ନିର୍ଦ୍ଦିଷ୍ଟ ସମୟକୁ ଅତିକ୍ରମ କରି ବାହାରେ ରହିଗଲେ ସେ ଗୃହଦ୍ୱାରରେ ଆସି ଅପେକ୍ଷା କରି ବସୁଥିଲେ ଏବଂ ସେଥିପାଇଁ ଅତ୍ୟନ୍ତ ବିରକ୍ତି ପ୍ରକାଶ କରୁଥିଲେ । କୌଣସି ପ୍ରକାର ଆମୋଦ ପ୍ରମୋଦରେ ସର୍ବ ପରିବାର ପ୍ରାୟ ଯୋଗ ଦେଇ ପାରୁ ନ ଥିଲେ । ଏପରି କି କଟକରେ ଯେତେବେଳେ ବହୁଦିନ ପର୍ଯ୍ୟନ୍ତ ସାର୍କସ

ଥିଏଟରର ଅଭିନୀତ ହୋଇଥିଲା, ସେ ସମୟରେ କୌଣସି ଦିନ ତାଙ୍କ ପରିବାରରୁ କେହି ସ୍ୱାଧୀନଭାବରେ ଅଭିନୟ ଦର୍ଶନ କରିବାକୁ ଯାଇ ନ ଥିଲେ । କିନ୍ତୁ ଦିନେ ଦଳର ପ୍ରଧାନ ଗାୟକ ଜଣେ ମହାରାଷ୍ଟ୍ର ଭଦ୍ରଙ୍କର ନିତାନ୍ତ ଅନୁରୋଧରେ ସେ ସ୍ୱଜାତିପ୍ରୀତିବଶତଃ ଥରେ ମାତ୍ର କନିଷ୍ଠ ପୁତ୍ର ଓ କନ୍ୟା ଦୁହିଙ୍କୁ ନେଇ ଅଭିନୟ ଦର୍ଶନ ପାଇଁ ଯାଇଥିଲେ । କିନ୍ତୁ ଯେତେବେଳେ ମଧ୍ୟରାତ୍ରରେ ଅଭିନୟ ଆରମ୍ଭ ହେବାକୁ ବସିଲା, ସେତେବେଳେ ସେ ପୁତ୍ରକନ୍ୟାମାନଙ୍କ ସଙ୍ଗରେ ନେଇ ଗୃହକୁ ପ୍ରତ୍ୟାବର୍ତ୍ତନ କରିଥିଲେ । ସେ କୌଣସି ପ୍ରକାର ଗୀତ ବାଦ୍ୟରେ କଦାପି ଯୋଗ ଦେଉନ୍ତି ନାହିଁ କିମ୍ବା ସନ୍ତାନମାନଙ୍କୁ ତାହା କରିବା ଦେଉନ୍ତି ନାହିଁ । ପ୍ରତିବେଶୀ ଓ ବନ୍ଧୁବାନ୍ଧବମାନଙ୍କ ସନ୍ତାନ ଏବଂ ନିଜର ଛାତ୍ରମାନଙ୍କ ପ୍ରତି ମଧ୍ୟ ତାଙ୍କର ଏହିପରି ଦୃଷ୍ଟି ଥିଲା । କାହାଠାରେ କୌଣସି ପ୍ରକାର ଅନୈତିକତା ଦେଖିଲେ ତାଙ୍କର କ୍ରୋଧାଗ୍ନି ପ୍ରଜ୍ୱଳିତ ହୋଇ ଉଠୁଥିଲା । ଛାତ୍ରମାନଙ୍କ ମଧ୍ୟରୁ କେହି ମିଥ୍ୟା କହିବାର ଜାଣିପାରିଲେ ମଧ୍ୟ ସେ ଏହିପରି ଭାବରେ ବିଚଳିତ ହୋଇ ପଡୁଥିଲେ । ସେଥିପାଇଁ ଅନେକେ ତାଙ୍କୁ ବଡ଼ କ୍ରୋଧୀ ବୋଲି ମନେ କରିଥାନ୍ତି । କିନ୍ତୁ ସେମାନଙ୍କର ଜାଣି ରଖିବା ଉଚିତ ଯେ, ସେମାନଙ୍କ ଦୃଷ୍ଟିରେ ଯାହା ସାମାନ୍ୟ ତ୍ରୁଟି, ମଧୁସୂଦନଙ୍କ ପକ୍ଷରେ ତାହା ବଡ଼ ଗୁରୁତରରୂପେ ଅନୁଭୂତ ହେଉଥିଲା । କିନ୍ତୁ ତାଙ୍କର ସମସ୍ତ କ୍ରୋଧ କ୍ଷଣିକପାଇଁ । ପରକ୍ଷଣରେ ସେ ବଡ଼ ଶାନ୍ତ କୋମଳ ହୋଇ ପଡୁଥିଲେ ଏବଂ କ୍ରୋଧପାଇଁ ଅନୁତପ୍ତ ହେଉଥିଲେ । ପୁତ୍ରକନ୍ୟାମାନଙ୍କ ପ୍ରତି ତାଙ୍କର ସ୍ନେହ ଏତେଦୂର ନିବିଡ଼ ଥିଲା ଯେ ପୁତ୍ରମାନଙ୍କର ବିଦେଶ ଗମନକାଳରେ ଏବଂ କନ୍ୟାମାନଙ୍କର ଶ୍ୱଶୁରାଳୟ ଯାତ୍ରା ସମୟରେ ସେ ଯେପରି ବ୍ୟାକୁଳ ହୋଇ କ୍ରନ୍ଦନ କରୁଥିଲେ, ତାହା କୌଣସି ଜନନୀ ହିଁ ଏତ କରି ପାରେ ନାହିଁ ।



# ପଞ୍ଚଦଶ ପରିଚ୍ଛେଦ ।

## ଭୃତ୍ୟ ଓ ଅପରବ୍ୟକ୍ତିମାନଙ୍କ ପ୍ରତି ବ୍ୟବହାର ।

ଭୃତ୍ୟମାନଙ୍କ ପ୍ରତି ମଧୁସୂଦନଙ୍କର ବ୍ୟବହାର ଅତି ଉଦାରତାମୂଳକ ଥିଲା । ସେ ତାହାଙ୍କୁ 'ଚପରାସି', 'ପିଅନ' ବା 'ଦପ୍ତରି' ନାମ ଧରି ଡାକୁ ନ ଥିଲେ । କାରଣ ନାମ ଧରି ଡାକିବା ଏବଂ ଏପରି ଭାବରେ ଡାକିବା ମଧ୍ୟରେ କି ପ୍ରଭେଦ ନିହିତ ଅଛି, ସେ ତାହା ଭଲରୂପେ ବୁଝି ପାରୁଥିଲେ । ଏଥିରୁ ମନେ ହୁଏ, ସେ ସଂସାରରେ କୌଣସି ଲୋକକୁ ହୀନ ବୋଲି ମନେ କରୁ ନ ଥିଲେ ଏବଂ ତାହାର ପ୍ରତି ଶ୍ରଦ୍ଧା ଓ ସମ୍ମାନ ପ୍ରଦର୍ଶନରେ ତ୍ରୁଟି କରୁ ନ ଥିଲେ । କାର୍ଯ୍ୟକ୍ଷେତ୍ରରେ ଭୃତ୍ୟର ଦୋଷ ଦେଖି ସେ ମଧ୍ୟ ଅର୍ଥଦଣ୍ଡ ବିଧାନ କରୁଥିଲେ, କିନ୍ତୁ ବେତନ ଦାଇବା ବେଳେ ତାହାର ସେହି ଦେୟଟିକୁ ନିଜ ହସ୍ତରୁ ଦେଉଥିଲେ । ଏହା ବ୍ୟତୀତ କାହାକୁ ମାସରେ ଅଠଅଣା ଟଙ୍କାଏ ଦିଆଯାଉଥିଲା । ଭୃତ୍ୟର ଦୋଷ ଦେଖି ସେ ଯେପରି କ୍ରୋଧରେ ଅଧୀର ହୋଇ ପଡୁଥିଲେ, ପରକ୍ଷଣରେ ମଧ୍ୟ ସେହିପରି କୋମଳ ହୋଇ ତାହା ନିକଟରେ କ୍ଷମାଭିକ୍ଷା କରୁଥିଲେ । ବହୁ ସମ୍ମାନର ଅଧିକାରୀ ମଧୁସୂଦନ ଦିନେ ବୃଦ୍ଧ ଭୃତ୍ୟ ଜଗୁ ନିକଟରେ ହାତଯୋଡ଼ି କହୁଅଛନ୍ତି, "ଜଗୁ, ତୁମେ ବୟସରେ ବଡ଼, କାର୍ଯ୍ୟରେ ହେଳା କରିଥିବାରୁ ରାଗି ଯାଇ ଗାଳି ଦେଲି । ତୁମ ମନରେ କଷ୍ଟ ହୋଇଥିବ । ତୁମେ ମୋତେ କ୍ଷମା ଦିଅ ।" ଜଗୁ ଏହାର କି ଉତ୍ତର ଦେବ ! ଦୋଷ କରିବାରୁ ତ ଗାଳି ଖାଇଛି, ଏଥିରେ ପୁଣି ସେ କ୍ଷମା କଣ ଦେବ ? ନା, ନା, ଗାଳି ଦେବା ଯେ ଅନ୍ୟାୟ ! କ୍ଷମା ନ ଦେଲେ କିପରି ହେବ । ଏତେ ସମ୍ମାନ, ଏତେ ଚରିତ୍ରମାହାତ୍ମ୍ୟରେ ବିଭୂଷିତ ହୋଇ ଜଗୁଠାରୁ ଯେବେ କ୍ଷମା ଲାଭ ନ କରନ୍ତି, ସେ ଯେ ବାବୁଙ୍କର ଗୋଟାଏ

ମସ୍ତ ନୁଟି ରହିଯିବ ! ଅନ୍ୟ ସମୟରେ ପୁଣି ପରିହାସକୁଶଳ ବାବୁ ଜଗୁଙ୍କୁ ଡାକି କହୁଅଛନ୍ତି "ଜଗୁ, ମୁହଁରେ ଟିକିଏ ନିଆଁ ଦିଅ !" ଜଗୁ ହୁକା ଆଣିଲେ ପୁଣି କହନ୍ତି, "ହେଇ ଜଗୁ ମୁହଁରେ ନିଆଁ ଦେବାକୁ ଆସିଲେଣି ।"

ଏକ ସମୟରେ ମଫସଲରୁ ଗୋଟିଏ ଲୋକ ଆସି ତାଙ୍କ ନିକଟରେ ନୂଆ ଚାକର ହେଲା । କିଛିଦିନ ପରେ ତାଙ୍କ କନ୍ୟାଙ୍କର ଗଳାରୁ ସୁନାର ହାରଟି କିଏ କାଟି ନେବାରୁ ଚାରିଆଡ଼େ ଖୋଜା ପଡ଼ିଲା । ଅନେକେ ସେହି ନୂଆ ଚାକର ଉପରେ ସନ୍ଦେହ କଲେ । କିନ୍ତୁ ଗୃହସ୍ୱାମୀ ସମସ୍ତଙ୍କୁ ମନା କରି କହିଲେ କାହାରି ଉପରେ ସନ୍ଦେହ କରିବା ଉଚିତ ନୁହେଁ ଏବଂ ପୁଲିସକୁ ମଧ୍ୟ ଏ ସମ୍ବାଦ ଦିଆଯିବ ନାହିଁ । କିନ୍ତୁ ପୁଲିସ କର୍ମଚାରୀ କୌଣସି ସୂତ୍ରରେ ଏହା ଜାଣିପାରି ଆସି ଦ୍ୱାରଦେଶରେ ଉପସ୍ଥିତ ହେଲେ । ଗୃହସ୍ୱାମୀ ତାଙ୍କୁ ଦେଖି କହିଲେ, "ଆମ ଘରୁ ଚୋରି ଯାଇଛି ସତ୍ୟ, କିନ୍ତୁ କାହାରି ଉପରେ ଆମର ସନ୍ଦେହ ନାହିଁ ।" ପୁଲିସ କର୍ମଚାରୀ କେବଳ ସେ ଭୃତ୍ୟକୁ ପଚାରି ଛାଡ଼ି ଦେବା ପାଇଁ କହି ସଙ୍ଗରେ ନେଇଗଲେ । କିନ୍ତୁ ତାଙ୍କ କଥାର ସତ୍ୟତା ରକ୍ଷା କରି ପାରିଲେ ନାହିଁ । ମଧୁସୂଦନ ଅପରାହ୍ଣରେ ଯେତେବେଳେ ଗୃହକୁ ଫେରିଲେ ସେତେବେଳେ ସେ ବେବୁଦ୍ୟମାନ ଭୃତ୍ୟର ପୃଷ୍ଠଦେଶରେ ଭୀଷଣ ପ୍ରହାରର ଚିହ୍ନ ଦେଖି ବ୍ୟଥିତ ହୋଇ ତା ନିକଟରେ ବସି ପଡ଼ିଲେ ଏବଂ ଧୀରେ ଧୀରେ ତାର ପୃଷ୍ଠଦେଶରେ ହସ୍ତ ସଞ୍ଚାଳନ କରି ବାଷ୍ପରୁଦ୍ଧକଣ୍ଠରେ କହିଲେ, "ବାବୁ ରେ ! ମୋହର କିଛି ଦୋଷ ନାହିଁ—ମୁଁ ଯେତେ ମନା କଲେ ମୂଢ଼ା ସେମାନେ ନ ମାନି ଘରୁ ଡାକି ନେଇ ତୋତେ ଏପରି କଷ୍ଟ ଦେଲେ । ତୁ ମୋହି ଉପରେ ବିରକ୍ତ ହେବୁ ନାହିଁ ।" ପାଠକ ବିଚାର କରନ୍ତୁ, କେତେ ଜଣ ପିତା ଏପରି ଭାବରେ ପୁତ୍ରକୁ ସାନ୍ତ୍ୱନା ଦେଇଥାନ୍ତି ! ପୁଣି ଭୃତ୍ୟ

ଅନ୍ୟ କୌଣସି ମତେ ତାଙ୍କ ଗୃହରେ ରହିବାକୁ ଇଚ୍ଛା ନ କରିବାରୁ ସେ ନୂତନ ବସ୍ତ୍ର ଓ କିଛି ଟଙ୍କା ଭୃତ୍ୟକୁ ପୁରସ୍କାର ଦେଇ ବିଦାୟ ଦେଲେ ।

### ଅତିଥିସେବା ଓ ଅପରିଚିତବ୍ୟକ୍ତିମାନଙ୍କ ପ୍ରତି ବ୍ୟବହାର ।

ପୂର୍ବେ ଦେଖା ଯାଇଅଛି, ମଧୁସୂଦନ ଦୟା ଓ ବିନୟର ଗୋଟିଏ ଜୀବନ୍ତ ଛବି ଥିଲେ । ଶିଶୁ ସଙ୍ଗରେ ସେ ଶିଶୁ, ଛାତ୍ରମାନଙ୍କର ଜନୟିତ୍ରୀ, ଭୃତ୍ୟମାନଙ୍କର ବନ୍ଧୁ, ଗୁରୁଜନଙ୍କର ଏକାନ୍ତ ଅନୁଗତ । ସ୍ତ୍ରୀଲୋକମାନଙ୍କୁ ଯେପରି ସେ 'ମା' ସମ୍ବୋଧନ କରୁଥିଲେ, ପୁରୁଷମାନଙ୍କୁ ମଧ୍ୟ ସେହିପରି ବାବା, ପ୍ରାଣାଧିକ, ପ୍ରାଣର ଭାଇ, ପ୍ରାଣର ସଙ୍ଗାଳି ମୋର, ପରମ ପ୍ରେମାସ୍ପଦ ଆଦି ସମ୍ବୋଧନରେ ତାଙ୍କ ଅନ୍ତରର ଗଭୀର ଶ୍ରଦ୍ଧା ଓ ସ୍ନେହର ପରିଚୟ ମିଳେ । ସେ ବରଂ ଗୁରୁଜନମାନଙ୍କ ପ୍ରତି ଶ୍ରଦ୍ଧାସ୍ପଦେଷୁ, ପ୍ରାଣର ଦେବ, ପୂଜ୍ୟପାଦ, ଦେବାତ୍ମନ୍ ଇତ୍ୟାଦି ପ୍ରକାର ଯଥେଷ୍ଟ ସମ୍ବୋଧନ କରନ୍ତି, କିନ୍ତୁ ତାଙ୍କ ପ୍ରତି କେହି ସେପରି ଶବ୍ଦ ପ୍ରୟୋଗ କଲେ ସେ ବିନୀତଭାବରେ ନିଷେଧ କରିଥାନ୍ତି, "ମୋ ପ୍ରତି 'ପୂଜ୍ୟପାଦ' ପ୍ରଭୃତି ଶବ୍ଦ ପ୍ରୟୋଗ କରିବ ନାହିଁ । ବନ୍ଧୁଭାବରେ ବଡ଼ ଭାଇର ଯାହା ପ୍ରାପ୍ୟ, ସେତିକି ମାତ୍ର ମୋତେ ଦେବ ।" ବନ୍ଧୁମାନଙ୍କ ଦୁଃଖରେ ସେ ଯେପରି ସାନ୍ତ୍ୱନା ପ୍ରଦାନ କରୁଥିଲେ, ତାହା ଇହଜଗତରେ ଅତୁଳନୀୟ । ଉତ୍କଳ ସାହିତ୍ୟର ସମ୍ପାଦକ ସ୍ୱନାମଧନ୍ୟ ଶ୍ରୀଯୁକ୍ତ ବିଶ୍ୱନାଥ କର ତାଙ୍କର ପ୍ରାଣପ୍ରିୟ କନିଷ୍ଠ ସହୋଦର ଭୋଳାନାଥ ଓ ଲୋକନାଥଙ୍କୁ ଅକାଳରେ ହରାଇ ଯେତେବେଳେ ଶୋକସନ୍ତପ୍ତ ହୋଇ ପଡ଼ିଲେ, ସେତେବେଳେ ସେ କିପରି ସାନ୍ତ୍ୱନାମୃତ ଢାଳି ବିଶ୍ୱନାଥ ବାବୁଙ୍କୁ ଆଶ୍ୱସ୍ତ କରାଇଥିଲେ ତାହା ନିମ୍ନୋଦ୍ଧୃତ ପତ୍ରରୁ ପ୍ରତୀୟମାନ ହେବ ।

ଓଁ

ରଘୁନାଥପୁର

ପରମ ବ୍ରହ୍ମସ୍ମାରକଂ । ୭-୮-୧୯

ପ୍ରାଣର ବିଶ୍ୱନାଥ,

କି ସାନ୍ତ୍ୱନା ଦେବି ! ଯାହାଙ୍କର ଧନ ସେହି ନେଇଗଲେ । ସେହି ଏକା ସାନ୍ତ୍ୱନା ଦେବେ । ତୁମର ପ୍ରାଣର ଭୋଲାନାଥ, ଲୋକନାଥ ତୁମର ପ୍ରାଣନାଥଙ୍କ କୋଳରେ ସ୍ୱର୍ଗର ଅମୃତ ପାନ କରୁଅଛନ୍ତି, ସେମାନେ ଏ ଜଞ୍ଜାଳଭୂମିରେ କି ଅଦ୍ଭୁତ ଦୃଷ୍ଟାନ୍ତ ଦେଖାଇ ଗଲେ ! ଧନ୍ୟ ସେମାନଙ୍କର ଜୀବନ !

ତୁମେ ସେମାନଙ୍କଠାରୁ ଅନେକ ଆଶା କରିଥିଲ । ସେ ଆଶା ପୂର୍ଣ୍ଣ ହେଲା ନାହିଁ । ତୁମର ଶୋକ ଅନ୍ତର୍ଯାମୀ ବିନା କିଏ ବୁଝିବ ? ଆହା, ମା ତୁମ ହୃଦୟରେ ସାନ୍ତ୍ୱନାମୃତ ଢାଳି ଦିଅନ୍ତୁ ! ମା ତୁମକୁ କୋଳରେ ବସାଇ ତୁମର ମୁଖ ଚୁମ୍ବନ କରି ତୁମର ଭଗ୍ନହୃଦୟକୁ ଆଲିଙ୍ଗନ କରନ୍ତୁ । ମାଙ୍କୁ ସର୍ବଦା ଡାକ । ତାଙ୍କ ବିନା ଆଉ କିଏ ଅଛି ?

ପ୍ରାଣର ବିଶ୍ୱନାଥ, ଅଧୀର ହୁଅ ନାହିଁ । ତୁମର ପିତାମାତାଙ୍କୁ ତୁମ ବିନା ଆଉ କିଏ ସାନ୍ତ୍ୱନା ଦେବ ? ସେମାନଙ୍କ ଶୋକ ଯେପରି ବୃଦ୍ଧି ନ ହେଉ । ଭାଇ, ତୁମର ଗୁରୁ କର୍ତ୍ତବ୍ୟଭାର ସ୍ମରଣ କରି, ପ୍ରଭୁଙ୍କ ଉପରେ ନିର୍ଭର କରି ସମ୍ମୁଖବର୍ତ୍ତୀ କର୍ତ୍ତବ୍ୟ ସାଧନ କର । Bibl: ରେ Job ଚରିତ ପଢିଅଛ, ତୁମ ଜୀବନରେ ପ୍ରଭୁ କି ସେହିପରି ଭାଗବତ ଅଙ୍କିତ କରୁଅଛନ୍ତି ?

ମୁଁ ତୁମ ସ୍ତ୍ରୀହଠାକୁ ଖଣ୍ଡେ ପତ୍ର ଲେଖୁଅଛି ।

ତୁମ୍ଭର ଜଣେ ଅଯୋଗ୍ୟ
ଭାଇ
ମଧୁସୂଦନ

ଗୁରୁଜନମାନଙ୍କୁ ଦେଖିଲାବେଳେ ସେ ତାଙ୍କର ପଦଧୂଳି ନେଇ ମସ୍ତକରେ ଲଗାଉଥିଲେ । ସ୍ତ୍ରୀନମାନଙ୍କ ସହିତ କିପରି ବନ୍ଧୁଭାବରେ ବ୍ୟବହାର କରୁଥିଲେ, ତାହା ପୂର୍ବେ କହା ଯାଇଅଛି । ବିଦେଶାଗତ ଅନେକ ପ୍ରଖ୍ୟାତନାମା ପୁରୁଷ ତାଙ୍କ ଗୃହରେ ଆତିଥ୍ୟ ଗ୍ରହଣ କରୁଥିଲେ । ତାଙ୍କର ଦୟା ଦାକ୍ଷିଣ୍ୟ ଓ ବିନୟାଦି ଅଲୌକିକ ଗୁଣରାଶି ସନ୍ଦର୍ଶନ କରି ସେମାନେ ତାଙ୍କୁ ଉତ୍କଳର 'ବିଦ୍ୟାସାଗର', 'ଭକ୍ତକବି' 'ଋଷିପ୍ରାଣ' ଆଦି ଉପାଧି ଦ୍ୱାରା ଭୂଷିତ କରି ଯାଇଅଛନ୍ତି । ଅତିଥିପରିଚର୍ଯ୍ୟାର ଗୋଟିଏ ଦୃଷ୍ଟାନ୍ତ ଏଠାରେ ଉଲ୍ଲେଖ କରିବା ଅସଙ୍ଗତ ହେବ ନାହିଁ । ଥରେ ଜଣେ ବୃଦ୍ଧ ଶିକ୍ଷକ ତାଙ୍କ ଗୃହରେ ଅତିଥି ହୋଇଥିଲେ । ତାଙ୍କର ଖାଦ୍ୟ ପେୟାଦିର ସୁବନ୍ଦୋବସ୍ତ ଯେପରି କରା ଯାଇଥିଲା, ସେଥିରେ ତ ଆଶ୍ଚର୍ଯ୍ୟର ବିଷୟ କିଛି ନାହିଁ । କିନ୍ତୁ ଅର୍ଦ୍ଧରାତ୍ର ସମୟରେ ସ୍ୱୟଂ ମଧୁସୂଦନ ତାଙ୍କ ଶୟନକକ୍ଷରେ ଉପସ୍ଥିତ ହୋଇ ଅତିଥିଙ୍କର ପଦ-ସେବା କରିବାକୁ ଆରମ୍ଭ କଲେ । ଏ ବ୍ୟବହାରରେ ଅତିଥି ଯୁଗପତ୍ ବିସ୍ମୟ ଓ ସଙ୍କୋଚ ବୋଧ କରି ଅନୁନୟଦ୍ୱାରା ଅନିଚ୍ଛା ପ୍ରକାଶ କରିବାରୁ ସେ ଧୀରେ ଧୀରେ ଉତ୍ତର କଲେ, "ଆପଣ ଯେ ଆଜି ମୋ ଘରେ ଅତିଥି ।" ହିଁ, ଅତିଥିଙ୍କର ସେବା ବାଞ୍ଛନୀୟ, କିନ୍ତୁ ସେଥିପାଇଁ କଣ ଭୃତ୍ୟର ଅଭାବ ଥିଲା ! ଏହା ଆଧୁନିକ ଅନେକ ଶିକ୍ଷିତଙ୍କୁ ବାହୁଲ୍ୟ ବୋଧ ହେବ । କାରଣ ସେମାନେ ମାତା ପିତାଙ୍କର ଅସୁସ୍ଥାବସ୍ଥାରେ ମଧ ଏପରି ସେବା କରିବାକୁ ସଙ୍କୋଚ ବୋଧ କରନ୍ତି । କିନ୍ତୁ ମଧୁସୂଦନଙ୍କ ଗୃହ ଯେ ସ୍ୱର୍ଗତୁଲ୍ୟ, ମଧୁସୂଦନଙ୍କର ଅନ୍ତର ଯେ ଶିଶୁର ସାରଲ୍ୟରେ ମହିମାନ୍ୱିତ—ସେଠାରେ ଏତେ ଦ୍ୱିଧା, ଏତେ ସଙ୍କୋଚର ସ୍ଥାନ କାହିଁ ?

ଏ ସବୁ ଘଟନା ଆମ୍ଭମାନଙ୍କୁ ବାସ୍ତବରେ ବଡ଼ ଅଦ୍ଭୁତ ଅସମ୍ଭବ ପରି ମନେ ହୁଏ । କିନ୍ତୁ ଏ ତ କାହାର କପୋଳକଳ୍ପନା ନୁହେ ।

ଯେଉଁମାନେ ଏହା ସ୍ୱଚକ୍ଷୁରେ ଦେଖିଅଛନ୍ତି, ସେହିମାନେହିଁ ପ୍ରକାଶ କରନ୍ତୁ । କୌଣସି ଅତିଥି ତାଙ୍କଠାରୁ ବିଦାୟ ଘେନିବାବେଳେ ସେ ଯେପରି ଜନନୀତୁଲ୍ୟ ସ୍ନେହସଜଳଦୃଷ୍ଟିରେ ନିଜର ଅନିଚ୍ଛା ପ୍ରକାଶ କରୁଥିଲେ, ତାହା ତାଙ୍କର ପରିଚିତ ଅନେକେ ଦେଖିଅଛନ୍ତି । ଏଥିରେ ତାଙ୍କୁ କଣ କହାଯାଇ ପାରେ ? କର୍ତ୍ତବ୍ୟନିଷ୍ଠା ଓ କୋମଳତାର ଅବତାର ? କିନ୍ତୁ ଏହାଦ୍ୱାରା ତାଙ୍କର ପ୍ରକୃତ ଛବି ପରିସ୍ଫୁଟ ହେଲା କି ?

---

## ଷୋଡ଼ଶ ପରିଚ୍ଛେଦ ।

### ସମାଜ ଧର୍ମ ଓ ଶିକ୍ଷା ସଂସ୍କାର ।

### ସମାଜ ସଂସ୍କାର ।

ମଧୁସୂଦନ ତାଙ୍କର ପାରିବାରିକ କର୍ତ୍ତବ୍ୟ ଅପେକ୍ଷା ସାମାଜିକ କର୍ତ୍ତବ୍ୟକୁ କୌଣସି ଅଂଶରେ ସାମାନ୍ୟ ଜ୍ଞାନ କରୁ ନ ଥିଲେ । ସାମାଜିକ ସକଳ ସଦନୁଷ୍ଠାନରେ ତାଙ୍କର ଯୋଗ ଥିଲା । ନିଜ ପରିବାରରେ ସେ ଯେପରି ସ୍ତ୍ରୀଶିକ୍ଷାର ପ୍ରଚୁର ଓ ସଙ୍କୀର୍ଣ୍ଣ ଆଚାର ପଦ୍ଧତିର ଖଣ୍ଡନଦ୍ୱାରା ସତ୍ୟର ପ୍ରତିଷ୍ଠା କରିଥିଲେ, ସମାଜରେ ତାହା ପ୍ରବର୍ତ୍ତନ କରିବାପାଇଁ ମଧ୍ୟ ସେ ସେହିପରି ପକ୍ଷପାତୀ ଥିଲେ । କିନ୍ତୁ ସେ କୌଣସି ଦିନ ଉଚ୍ଛୃଙ୍ଖଳତାର ପ୍ରୟାସୀ ନ ଥିଲେ । ସତ୍ୟର ପକ୍ଷ ସମର୍ଥନ କରି ସେ ସାରଦର୍ଶରେ ଆତ୍ମବଳି ଦେବାକୁ କୁଣ୍ଠିତ ନ ଥିଲେ । ବ୍ରାହ୍ମ ସମାଜର ଅନ୍ତର୍ଭୁକ୍ତ ହୋଇ ନିଜର ପରମାରାଧ୍ୟ ପିତା ଓ ପ୍ରିୟ ସ୍ୱଜନଙ୍କର ଅସନ୍ତୋଷର ପାତ୍ର ହେଲେ ମଧ୍ୟ, ତଥାକଥିତ ରକ୍ଷଣ-ଶୀଳଦଳଙ୍କର ଅଭିଷ୍ଠାଗ୍ରହରେ ବାରମ୍ବାର ଉତ୍ୟକ୍ତ ହେଲେ ମଧ୍ୟ ସେ

ଯାହା ସତ୍ୟ ବୋଲି ବୁଝିଥିଲେ ସେଥିରୁ ତିଳେ ହେଲେ ବିଚ୍ୟୁତ ହୋଇ ନାହାନ୍ତି ।

କିନ୍ତୁ ସବୁ ସ୍ଥଳରେ ତାଙ୍କର ସଂଯମ ଓ ସାହସର ସୁନ୍ଦର ସମନ୍ୱୟ ଥିଲା । ଥରେ ଜଣେ ଉତ୍ସାହୀ ଯୁବକ ତାଙ୍କୁ କହିଲେ, "ଆପଣଙ୍କର ଦେଶୀୟତାର ପତାକାସ୍ୱରୂପ ଆପଣଙ୍କର ବୈଦେଶିକତା ସଂସ୍ଥାପନ କଲେ ପରିଣାମରେ ସାମଞ୍ଜସ୍ୟ ଆସିଯିବ ।" କିନ୍ତୁ ସେ ଧୀର ଗମ୍ଭୀର ଭାବରେ ଉତ୍ତର କରିଥିଲେ, "ସତ୍ୟର ଜୟ ଅବଶ୍ୟମ୍ଭାବୀ । ଯାହା ପ୍ରକୃତ ଲକ୍ଷ୍ୟ, ତାହାରହିଁ ପ୍ରତିଷ୍ଠା କର । ଅଧିକ ନୁହେଁ କି ଅଳ୍ପ ନୁହେଁ ।" ବିଦେଶର ହେଉ ଅଥବା ସ୍ୱଦେଶର ହେଉ ଯାହା ସତ୍ୟ, ସୁନ୍ଦର, ଆଦର୍ଶ ତାହା ଗ୍ରହଣୀୟ ଏବଂ ଯାହା ଅସାର, ଅସତ୍ୟ, ତାହା ବର୍ଜନୀୟ, ଏହାହିଁ ତାଙ୍କର ଜୀବନର ମତ ଥିଲା । ସ୍ୱୀୟ କବିତାରେ ମଧ୍ୟ ସେ ଏ ମତରୁ ବିଚ୍ୟୁତ ହୋଇ ନାହାନ୍ତି ।

ସଂସ୍କାରପ୍ରଣୋଦିତ ଯୁବକମାନଙ୍କର ଅନର୍ଥକ ଉଚ୍ଛୃଙ୍ଖଳତାରେ ଲୋକଙ୍କ ପ୍ରାଣରେ କଷ୍ଟ ଦେବାର ସେ ଆଦୌ ପକ୍ଷପାତୀ ନ ଥିଲେ । ଥରେ ପଣ୍ଡିତ ନୀଳକଣ୍ଠ ଦାସ କଥାପ୍ରସଙ୍ଗରେ କେତେକ କୁସଂସ୍କାର ଓ ସମାଜର କୁସଂସ୍କାରମାନଙ୍କର ତୀବ୍ର ନିନ୍ଦା କରୁଥିଲେ । ସେ ତାହା ଶୁଣି ତାଙ୍କୁ ଧୀର ଗମ୍ଭୀର ଭାବରେ କହିଥିଲେ, "This is a soul of truth even in superstition. ଆମ୍ଭେମାନେ କଦାପି କୁସଂସ୍କାରର ପ୍ରଶ୍ରୟ ଦେବା ନାହିଁ, କିନ୍ତୁ ସମସ୍ତଙ୍କର ଭାବ ପ୍ରତି ଶ୍ରଦ୍ଧା ଓ ଆଦର କରିବା ଉଚିତ ।" ଆଉ ଦିନେ ତାଙ୍କର ଗୋଟିଏ ସାମାଜିକ ଲେଖାକୁ ଲକ୍ଷ୍ୟ କରି ସେ କହିଥିଲେ, "ମୁଁ ଏପରି Satire (ବ୍ୟଙ୍ଗ) କେବେ ଦେଖି ନାହିଁ, କିନ୍ତୁ ଲୋକଙ୍କ ପ୍ରାଣରେ ଏଥିରେ ବଡ଼ ତୀବ୍ର ଆଘାତ ଲାଗିଥିବ ।" ଏହା ତାଙ୍କର ଉଦାର ମତ ଓ ସଂଯମର ପ୍ରକୃଷ୍ଟ ପରିଚୟସୂଚକ ।

## ଧର୍ମସଂସ୍କାର ଓ ଧର୍ମପ୍ରଚାର ।

ମଧୁସୂଦନ ଚିରକାଳ ନୀରବ ସାଧକ ଥିଲେ । ଜୀବନକୁ ଯଥାର୍ଥରେ ସେ ସାଧନାର ମନ୍ଦିରରୂପେ ଜ୍ଞାନ କରିଥିଲେ । ଧର୍ମରେ, କର୍ମରେ ସେ ଯାହାକୁ ସର୍ବୋତ୍କୃଷ୍ଟ ବୋଲି ବୁଝିଅଛନ୍ତି, ତାହାହିଁ ବୀରଦର୍ପରେ ଗ୍ରହଣ କରିଅଛନ୍ତି । ଅନେକେ ହୁଏ ତ ମନେ କରି ପାରନ୍ତି, ନିଜ ସମାଜକୁ ତ୍ୟାଗ କରି, ଧର୍ମକୁ ପରିହାର କରି କିପରି ସଂସ୍କାର ଅବଲମ୍ବନ କରାଯାଇ ପାରେ । କିନ୍ତୁ ଧୀରଭାବରେ ଅନୁଧ୍ୟାନ କଲେ ଦେଖାଯାଏ, ମଧୁସୂଦନ ଧର୍ମ କିମ୍ବା ସମାଜ କିଛିହିଁ ତ୍ୟାଗ କରି ନାହାନ୍ତି । ହିନ୍ଦୁସମାଜର ଯାହା କିଛି ବାହୁଲ୍ୟ ଏବଂ ଦୂଷିତ ବୋଲି ସେ ବୁଝିଅଛନ୍ତି, ତାହାକୁହିଁ ସେ ତ୍ୟାଗ କରି ସତ୍ୟକୁ ଗ୍ରହଣ କରିଅଛନ୍ତି । ହିନ୍ଦୁଧର୍ମର ଯାହା ପ୍ରକୃଷ୍ଟ ପନ୍ଥା, ତାହାହିଁ ସେ ଆଦର କରିଅଛନ୍ତି । ଏହି ଭିତ୍ତି ଉପରେହିଁ ବ୍ରାହ୍ମସମାଜ ପ୍ରତିଷ୍ଠିତ । ବ୍ରାହ୍ମର ଏହାହିଁ ମୂଳମନ୍ତ୍ର—

ଜ୍ୟୋତିଷାମପି ତଜ୍ଜ୍ୟୋତିଃ ତମଃ ପାରେ ବ୍ୟବସ୍ଥିତଂ
ଜ୍ଞାନଂ ଜ୍ଞେୟଂ ଜ୍ଞାନଗମ୍ୟଂ ସର୍ବେଷାଂ ହୃଦି ସଂସ୍ଥିତଂ
ଏତଦ୍ ଜ୍ଞେୟଂ ନିତ୍ୟମେବାତ୍ମସଂସ୍ଥଂ
ନାତଃ ପରଂ ବେଦିତବ୍ୟଂ ହି କିଞ୍ଚିତ୍ ।

(ଶ୍ୱେତାଶ୍ୱତର)

ଏହାହିଁ ଜାଣିବା ପାଇଁ ସେ ଆଜୀବନ ସାଧନ କରି ଯାଇଅଛନ୍ତି । ଏହି ସର୍ବୋଚ୍ଚ ଜ୍ଞେୟ ବସ୍ତୁରେହିଁ ହିନ୍ଦୁର ସର୍ବଶ୍ରେଷ୍ଠ ଲକ୍ଷ୍ୟ ଓ ଚରମ ପରିଣତି ନିହିତ । ହିନ୍ଦୁଜାତିର ମହା ଔଦାସୀନ୍ୟକୁ ମୋଚନ କରିବାପାଇଁ ଯେଉଁ କେତେ ଜଣ ବୀର ପୁରୁଷଙ୍କର ସେ ସମୟରେ ଆବିର୍ଭାବ ହୋଇଥିଲା, ସେହିମାନଙ୍କ ସହିତ ସମସ୍ୱରେହିଁ ମଧୁସୂଦନ

ଉଚ୍ଚକଣ୍ଠରେ ଗାଇ ଉଠିଥିଲେ, "ଉତ୍ତିଷ୍ଠତ ଜାଗ୍ରତ ପ୍ରାପ୍ୟ ବରାନ୍ ନିବୋଧତ ।"

ମଧୁସୂଦନ ଯେ ଆଧୁନିକ ଯୁଗର ଧର୍ମ ଓ ରୁଚିର ସଂସ୍କାର ଲାଗି ପ୍ରୟାସୀ ହୋଇଥିଲେ, ସେଥିପାଇଁ ତାଙ୍କୁ ଗ୍ରାମେ ଗ୍ରାମେ ନଗରେ ନଗରେ ଭ୍ରମଣ କରି ବକ୍ତୃତା ଆନ୍ଦୋଳନାଦି କରିବାକୁ ହୋଇ ନାହିଁ । ସେ ନୀରବରେ ସ୍ୱୀୟ କର୍ମ କରି ଯାଇଅଛନ୍ତି । ଯୁଗଧର୍ମର ପ୍ରବାହ କେଉଁ ଦିଗକୁ ଗତି କରୁଅଛି, ତାହା ଅବଲୋକନ କରି ସେ ଅଗ୍ରଗାମୀ ହୋଇ ସେଥିରେ ଯୋଗ ଦେଇଅଛନ୍ତି । ଅଥଚ ମର୍ମେ ମର୍ମେ ସେହି ରୁଚି ଆଜି ଉଜ୍ଜୀବିତ ହୋଇ ଉଠିଅଛି । ପ୍ରକାଶ୍ୟରେ ବ୍ରାହ୍ମ ନ ହେଲେ ମଧ୍ୟ ଅଧିକାଂଶ ହିନ୍ଦୁ ଶିକ୍ଷିତଙ୍କର କ୍ରିୟାକାଣ୍ଡ ପଦ୍ଧତିରୁ ବିଶ୍ୱାସ ତୁଟି ଯାଉଅଛି । ପଣ୍ଡା ପୁରୋହିତଙ୍କର ପଦଧୂଳି ଗ୍ରହଣ କରିବା ଲାଗି ପ୍ରାୟ ସକଳ ଶିକ୍ଷିତ ହିନ୍ଦୁ ଆଜି ପଶ୍ଚାତ୍ପଦ । ଏହି ଯୁଗଧର୍ମର ପ୍ରବାହକୁ ମଧୁସୂଦନ ପ୍ରବର୍ତ୍ତନ କରନ୍ତୁ ବା ନ କରନ୍ତୁ, ସେ ଯେ ଏ ଉତ୍କଳ ଦେଶରେ ଅଗ୍ରଗାମୀ ହୋଇ ଏଧାରେ ବିଜୟଗାନ ଗାଇଅଛନ୍ତି ଏଥିପାଇଁ ସେ ସ୍ମରଣୀୟ ହୋଇ ରହିବେ ।

ସକଳ ଭେଦାଭେଦ ଦୂରରେ ଫିଙ୍ଗି ଦେଇ ସକଳ ସଙ୍କୀର୍ଣ୍ଣତାର ମୂଳୋତ୍ପାଟନ କରି "ଯୋ ବୈ ଭୂମା ତତ୍ସୁଖଂ ନାଲ୍ପେ ସୁଖମସ୍ତି" ଭାରତର ଏହି ଶ୍ରେଷ୍ଠ ବାଣୀ ଉଦାତ୍ତସ୍ୱରରେ ଘୋଷଣା କରିବା ପାଇଁ ସେ ଯେପରି ଭାବେ ପ୍ରାଣପଣେ ଲାଗି ପଡ଼ିଥିଲେ, ଉତ୍କଳର କେଉଁ ଶିକ୍ଷିତ ପୁରୁଷ ଆଜି ତହିଁରେ ପଶ୍ଚାତ୍ପଦ ହେବ ? ସେ ଯେପରି ଭାବେ ଗାଇ ଉଠିଥିଲେ—

"ଯଥା ନଦ୍ୟଃ ସ୍ୟନ୍ଦମାନାଃ ସମୁଦ୍ରେଽସ୍ତଂ ଗଚ୍ଛନ୍ତି ନାମରୂପେ ବିହାୟ
ତଥା ବିଦ୍ୱାନ୍ ନାମରୂପାଦ୍ ବିମୁକ୍ତଃ ପରାତ୍ପରଂ ପୁରୁଷମୁପୈତି ଦିବ୍ୟଂ ।"

କେଉଁ ବିଦ୍ୱାନ୍ ଆଜି ତାହା ଭ୍ରମାତ୍ମକ ବୋଲି କହିବାକୁ ସାହସୀ ହେବ ?

ମଧୁସୂଦନଙ୍କର ଧର୍ମୋପାସନା ଅତ୍ୟନ୍ତ ମର୍ମସ୍ପର୍ଶୀ ଥିଲା । ସେ ନିର୍ଜନରେ ନୀରବରେ ବସି ଉପାସନା କରିବାକୁ ଯେପରି ଭଲ ପାଉଥିଲେ ବନ୍ଧୁସ୍ୱଜନଙ୍କ ସହିତ ଅଗ୍ନୁଯ୍ୟ ଚୂପରେ ବସି ମଧୁର-ସ୍ୱରରେ ଭଗବତ୍ ପ୍ରୀତିବାକ୍ୟ ଉଚ୍ଚାରଣ କରିବା ପାଇଁ ତଦପେକ୍ଷା ଅଧିକ ଭଲ ପାଉଥିଲେ । ତାଙ୍କର ଉପାସନାରେ ଯେ ଥରେ ଯୋଗ ଦେଇଅଛି, ସେ ତାହା ଜୀବନରେ ଭୁଲି ପାରିବ ନାହିଁ । ତାଙ୍କର ଉପାସନାରେ ଆକୃଷ୍ଟ ହୋଇ ଅନେକ ହିନ୍ଦୁ ମଧ ସେଥିରେ ଯୋଗ ଦେଉଥିଲେ ଏବଂ ମୁଗ୍ଧହୃଦୟରେ ଅମିୟ ଦ୍ରବ୍ୟ ରସ ପାନ କରି ନିଜକୁ ଧନ୍ୟ ମନେ କରୁଥିଲେ । ଆଜି ମଧ ଯେଉଁମାନେ ବ୍ରହ୍ମୋ-ପାସନାରେ ବସନ୍ତି, ସେମାନେ ତାଙ୍କର ସେହି ଆକୁଳ ବାଣୀ ଅନୁଭବ କରନ୍ତି ନାହିଁ କି ?

"ସତ୍ୟ ପଥେ ଧର୍ମ ପଥେ ଘେନଯାଅ ମୋତେ
ଭସାଅ ପରାଣ ମୋର ତବ ପ୍ରେମସ୍ରୋତେ
ପ୍ରଭୋ ପରମ ଶରଣ
ଏ ଜୀବନ ଶ୍ରୀଚରଣେ କଲି ସମର୍ପଣ ।"

ଆଜି ସେହି ଋଷିଆତ୍ମା ବ୍ରହ୍ମମନ୍ଦିରରେ ବିଚରଣ କରେ ନାହିଁ କି ? ସେହି ଋଷିକଣ୍ଠର ଉଦାର ସ୍ୱର ଗମ୍ଭୀରଭାବରେ ପ୍ରତିଧ୍ୱନିତ ହୁଏ ନାହିଁ କି ?

ଶୃଣ୍ୱନ୍ତୁ ବିଶ୍ୱେ ଅମୃତସ୍ୟ ପୁତ୍ରାଃ
ଯେ ଧାମାନି ଦିବ୍ୟାନି ଆତସ୍ଥୁଃ ।
ବେଦାହମେତଂ ପୁରୁଷଂ ମହାନ୍ତ—
ମାଦିତ୍ୟବର୍ଣ୍ଣଂ ତମସଃ ପରସ୍ତାତ୍ ।
ତମେବ ବିଦିତ୍ୱାତିମୃତ୍ୟୁମେତି
ନାନ୍ୟଃ ପନ୍ଥା ବିଦ୍ୟତେଽୟନାୟ ।

ଉପାସନାବେଦୀରେ ତାଙ୍କର ସେହି ଧ୍ୟାନମଗ୍ନ ସ୍ୱରୂପ, ସେହି ଅଶ୍ରୁ ବିଗଳିତ ଗଣ୍ଡଯୁଗ, ସେହି ଅପାର୍ଥିବ ତେଜରେ ଉଦ୍ଭାସିତ ଲଲାଟ-ଦେଶ ଅଦ୍ୟ ମଧ୍ୟ ବ୍ରହ୍ମୋପାସକମାନଙ୍କ ଦୃଷ୍ଟି ସମକ୍ଷରେ ପ୍ରକଟିତ ହୁଏ ନାହିଁ କି ?

## ଶିକ୍ଷା ବିସ୍ତାର ଓ ଭିକ୍ଟୋରିଆ ସ୍କୁଲ ।

ଦେଶରେ ଶିକ୍ଷା ବିସ୍ତାର କାର୍ଯ୍ୟରେ ମଧୁସୂଦନ କିପରି ଘନିଷ୍ଠ ଭାବରେ ସମ୍ପୃକ୍ତ ଥାଇ ଆଜୀବନ ଅକ୍ଳାନ୍ତ ପରିଶ୍ରମ କରି ଯାଇଅଛନ୍ତି, ତାହା ପୂର୍ବେ ସମ୍ୟକ୍ ଆଲୋଚିତ ହୋଇଅଛି । କିନ୍ତୁ ତାଙ୍କର ସକଳ ଚେଷ୍ଟା ଓ ସାଧନା ସ୍ଥାୟୀ ଓ ମୂର୍ତ୍ତିମନ୍ତ ହୋଇଅଛି । କଟକ ଟାଉନ ଭିକ୍ଟୋରିଆ ହା: ଇ: ସ୍କୁଲରେ ତାଙ୍କର ଅନ୍ତରର ଆକାଂକ୍ଷା ଏହିଠାରେହିଁ ପୁଞ୍ଜୀଭୂତ ଓ ଜୀବନ୍ତ ହୋଇଅଛି ।

ସେ ଯେତେବେଳେ କଟକଜିଲ୍ଲାର ସ୍କୁଲସମୂହର ଡେପୁଟି ଇନ୍‌ସ୍ପେକ୍ଟର ଥିଲେ, ସେତେବେଳେ ସେ 'ଟାଉନ୍ ସ୍କୁଲ' ନାମ ଦେଇ ଗୋଟିଏ ମାଇନର ସ୍କୁଲ ପ୍ରଥମେ ବସାଇଥିଲେ । ଏହା ସ୍ଥାପନ କରିବା ପାଇଁ ତାଙ୍କୁ ଯେ ନିଜର ବହୁ ସମୟ ଓ ଅର୍ଥ ବ୍ୟୟ କରିବାକୁ ହୋଇଥିଲା, ଏହା କହିବା ବାହୁଲ୍ୟ ମାତ୍ର । ଉତ୍କଳର ଯୁବସମାଜ ସାମାଜିକ ଭ୍ରାନ୍ତଧାରଣାର ବଶବର୍ତ୍ତୀ ନ ହୋଇ ଉଚ୍ଚ ଉଦାର ଭାବ ଗ୍ରହଣ କରିବାହିଁ ତାଙ୍କର ଲକ୍ଷ୍ୟ ଥିଲା ଏବଂ ମାଇନର ସ୍କୁଲର ମୂଳରେ ଏହି ଲକ୍ଷ୍ୟହିଁ ନିହିତ ଥିଲା । ଏହି ସମୟରେ ପ୍ୟାରୀମୋହନ ଏକାଡେମୀ ନିୟମିତଭାବରେ ଚଳୁଥିଲା ଏବଂ ମଧୁସୂଦନଙ୍କର ମାଇନର୍ ସ୍କୁଲଟି କ୍ରମେ ଏନ୍‌ଟ୍ରାନ୍ସକୁ ଉନ୍ନୀତ ହୋଇ ଦୁଇ ବର୍ଷ ପରେ ଉପର ଦୁଇ ଶ୍ରେଣୀ ଏକାଡେମୀ ସହିତ ମିଶି ଯାଇଥିଲା । ମାଇନର ସ୍କୁଲଟି ପୂର୍ବବତ୍ ମଧୁସୂଦନଙ୍କ ତତ୍ତ୍ୱାବଧାନରେ ଚଳିଲା । ସମଗ୍ର ଓଡ଼ିଶାର ମାଇନର

ସ୍କୁଲମାନଙ୍କ ମଧ୍ୟରେ ଏହି ସ୍କୁଲଟି ସର୍ବୋଚ୍ଚ ସ୍ଥାନ ଅଧିକାର କରିଥିଲା । ବର୍ଷ ପରେ ବର୍ଷ ଏହାର ଛାତ୍ରମାନେ ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରି ସରକାରୀ ବୃତ୍ତି ପାଇଥିଲେ । ଅନେକ ସମୟରେ ଦୁଇଟା ସରକାରୀ ବୃତ୍ତି ଏହାର ଭାଗ୍ୟରେ ପଡୁଥିଲା ।

୧୯୦୧ ଖ୍ରୀଷ୍ଟାବ୍ଦରେ ମଧୁସୂଦନ ପୁଣି ଏହି ସ୍କୁଲଟି ସହିତ ମହାରାଣୀ ଭିକ୍ଟୋରିଆଙ୍କ ନାମ ସଂଯୋଗ କରି ହାଇସ୍କୁଲରେ ପରିଣତ କରିଥିଲେ । ସ୍କୁଲଟିର ସୁପରିଚାଳନା ପାଇଁ ସେ ସମଗ୍ର ଉତ୍କଳରୁ ଚାନ୍ଦା ସଂଗ୍ରହ କରିବାରେ ଲାଗି ପଡ଼ିଥିଲେ । ସ୍କୁଲ ଗୃହ ନିର୍ମାଣ ପାଇଁ ସେ ୧୯୦୧ରୁ ୧୯୧୬ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଅକ୍ଳାନ୍ତ ପରିଶ୍ରମ କରି ଘର ଘର ବୁଲି ଚାନ୍ଦା ଆଦାୟ କରିଥିଲେ । ଏ ସ୍କୁଲରେ ମାର୍ଜିତ-ରୁଚି ଓ ସଂସ୍କାରର ପ୍ରବର୍ତ୍ତନ କରିବାହିଁ ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲା । ସେଥିଲାଗି ସ୍କୁଲର ପ୍ରଧାନ ଶିକ୍ଷକ ବ୍ରାହ୍ମ ହେବେ ବୋଲି ସେ ନିୟମ କରି ଯାଇଅଛନ୍ତି । ସେହିଦିନୁ ଏହି ନିୟମ ପ୍ରତିପାଳିତ ହୋଇ ଆସୁଅଛି । କିନ୍ତୁ ତାଙ୍କର ପ୍ରଧାନ ଉଦ୍ଦେଶ୍ୟ ସ୍କୁଲର ଛାତ୍ରମାନଙ୍କ ନିକଟରେ କେତେ ଦୂର ଚରିତାର୍ଥ ହୋଇଅଛି, ତାହା ଆମ୍ଭମାନଙ୍କ ଗୋଚର ନାହିଁ । ଦୁର୍ବିପାକବଶତଃ ଏହି ମହଦୁଦ୍ଦେଶ୍ୟ ସାଧନ ପୂର୍ବରୁ ମଧୁସୂଦନଙ୍କର ତିରୋଧାନ ଘଟିଅଛି ।



# ସପ୍ତଦଶ ପରିଚ୍ଛେଦ ।

## ଅନ୍ତିମ ଶଯ୍ୟା ।

ପୂର୍ବେ କହା ଯାଇଅଛି, ଡେପୁଟି ଇନ୍‌ସ୍ପେକ୍ଟର ଥିବା ସମୟରେହିଁ ମଧୁସୂଦନ ଅମ୍ଳଶୂଳ ରୋଗରେ ଆକ୍ରାନ୍ତ ହୋଇଥିଲେ । ଏହି ରୋଗହିଁ ତାଙ୍କ ଜୀବନର ନିଦାନ ହୋଇଥିଲା । ସେ ୧୯୦୯ ଖ୍ରୀଷ୍ଟାବ୍ଦ ଜୁଲାଇ ମାସରୁ ସରକାରୀ କର୍ମରୁ ଅବ୍ୟାହତି ଲାଭ କରି ମାତ୍ର ତିନୋଟି ବର୍ଷ ଦେଶର ସାଧାରଣ କର୍ମରେ ଯୋଗ ଦେବା ପାଇଁ ଅବସର ଲାଭ କରିଥିଲେ । ଏହି ସମୟ ମଧ୍ୟରେ ଭିକ୍ଟୋରିଆ ସ୍କୁଲ, ନୈଶ ବିଦ୍ୟାଳୟ, ଅସ୍ପୃଶ୍ୟ ଜାତିମାନଙ୍କ ପାଇଁ ବିଦ୍ୟାଳୟ, ସାଧାରଣ ସଭା ସମିତି ପ୍ରଭୃତି ଉଦ୍ୟମରେ ସେ ପ୍ରାଣପଣେ ଲାଗି ପଡ଼ିଥିଲେ ।

ମଧୁସୂଦନଙ୍କ ମୃତ୍ୟୁ ସମ୍ବନ୍ଧରେ ଗୋଟିଏ ଅଦ୍ଭୁତ ଘଟନା ବର୍ଣ୍ଣିତ ଅଛି । ମୃତ୍ୟୁର ଦୁଇ ବର୍ଷ ପୂର୍ବରୁ ଅର୍ଥାତ୍ ୧୯୧୦ ଖ୍ରୀଷ୍ଟାବ୍ଦ ଡିସେମ୍ବର ୨୮ ତାରିଖ ରାତିରେ ସେ ଗୋଟିଏ ଅଦ୍ଭୁତ ସ୍ୱପ୍ନ ଦେଖିଥିଲେ । ସେ ଦିନ ତାଙ୍କର ପରମାତ୍ମୀୟ ବନ୍ଧୁ ପ୍ୟାରୀମୋହନଙ୍କର ଶ୍ରାଦ୍ଧ ଦିବସ । ସେ ଦିନ ରାତିରେ ସେ ସ୍ୱପ୍ନରେ ଦେଖିଥିଲେ, ଊର୍ଦ୍ଧ୍ୱଦେଶରେ ତାଙ୍କର ବନ୍ଧୁ ପ୍ୟାରୀମୋହନ ଓ ଗୁରୁ ରାଧାନାଥ ଗୋଟିଏ ଶିଶୁକୁ ସଙ୍ଗରେ ଘେନି ତାଙ୍କ ଆଡ଼କୁ କଣ ସଙ୍କେତ କରୁଅଛନ୍ତି । ପ୍ୟାରୀ-ମୋହନ ପଚାରିଲେ, ‘‘ମଧୁ, ଆଜି ଡିସେମ୍ବର ୨୮ ତାରିଖ, ମନେ ଅଛି ତ ? ତତ୍ପରେ ଶିଶୁଟିକୁ ଦେଖାଇ କହିଲେ, ‘‘ଏହାକୁ ଚିହ୍ନି ପାରୁ-ଅଛ ?’’ ମଧୁସୂଦନ ତାକୁ କିଛି ସମୟ ନିରୀକ୍ଷଣ କରି ଚିହ୍ନି ପାରିଲେ ଯେ ସେ ତାଙ୍କର ନବସ୍ୱର୍ଗବାସୀ ଶିଶୁ ପୌତ୍ର । ମଧୁସୂଦନ ବଡ଼ ଭକ୍ତି-ବିଶ୍ୱାସୀ ଥିଲେ ଏବଂ ମୃତ୍ୟୁରେ ଲୋକ ଯେ ସୂକ୍ଷ୍ମ ଶରୀରରେ ସ୍ୱର୍ଗରେ

ବାସ କରେ, ଏଥିରେ ତାଙ୍କର ସନ୍ଦେହ ନ ଥିଲା । ସୁତରାଂ ଏଥିରେ ସନ୍ଦିଗ୍ଧଭାବରେ ବିଶ୍ୱାସ କରି ସେ ଏ ସ୍ୱପ୍ନଟିକୁ ବନ୍ଧୁ ବାନ୍ଧବଙ୍କ ସମକ୍ଷରେ ପ୍ରକାଶ କରିଥିଲେ ଏବଂ ଏହି ୨୮ ତାରିଖ ଡିସେମ୍ବରଟି ତାଙ୍କର ମୃତ୍ୟୁ ଦିବସ ବୋଲି ବିଶ୍ୱାସ କରିନେଲେ । ଯଥାର୍ଥରେ ଏହାହିଁ ଘଟିଥିଲା । ଠିକ୍ ଦୁଇ ବର୍ଷ ପରେ ୧୯୧୨ ଖ୍ରୀଷ୍ଟାବ୍ଦ ଡିସେମ୍ବର ୨୮ ତାରିଖ ଦିନ ସେ ଇହଲୀଳା ସମ୍ବରଣ କରିଗଲେ । ପୂର୍ବେ ଏହିପରି କେତେଗୋଟି ସ୍ୱପ୍ନ ଦ୍ୱାରା ତାଙ୍କର ଧର୍ମଜୀବନ ଆରମ୍ଭ ଓ ନିୟନ୍ତ୍ରିତ ହୋଇଥିଲା ବୋଲି ଦେଖା ଯାଇଅଛି । ବର୍ତ୍ତମାନ ଏହି ସ୍ୱପ୍ନରେହିଁ ତାହାର ପରିଣତି ଘଟିଅଛି ।

୧୯୧୨ ଖ୍ରୀଷ୍ଟାବ୍ଦ ଡିସେମ୍ବର ମାସରେ ତାଙ୍କର ବହୁକାଳ-ବ୍ୟାପୀ ଅମ୍ଳଶୂଳରୋଗ ଅତି ପ୍ରବଳଭାବରେ ତାଙ୍କୁ ଆକ୍ରମଣ କରିଥିଲା । ସେହି ମାସ ୧୬ ତାରିଖ ବେଳକୁ ସେ ଏତେଦୂର ଆକ୍ରାନ୍ତ ହୋଇ ପଡ଼ିଲେ ଯେ, ଆଉ ଶଯ୍ୟାରୁ ଉଠିବା ପାଇଁ ତାଙ୍କର ଶକ୍ତି ରହିଲା ନାହିଁ । ସେ ଦିନ କଟକ ଟାଉନ୍ ହଲରେ ତାଙ୍କର ପରମ ସଖା ଗୁରୁ ରାଧାନାଥଙ୍କର ପ୍ରତିମୂର୍ତ୍ତି ଉନ୍ମୋଚିତ ହେବାର କଥା । ମଧୁସୂଦନ ସୁସ୍ଥ ଥିଲେ ଏହି ପବିତ୍ର କର୍ମର ପୁରୋଧା ହୋଇ ଅତ୍ୟନ୍ତ ଆନନ୍ଦ-ସହକାରେ ଉକ୍ତ କାର୍ଯ୍ୟ ସମ୍ପାଦନ କରିଥାନ୍ତେ । କିନ୍ତୁ ତାଙ୍କର ପୀଡ଼ା ଏତେଦୂର ବୃଦ୍ଧିପ୍ରାପ୍ତ ହେଲା ଯେ ଖଣ୍ଡିଏ ପତ୍ର ଦ୍ୱାରା ନିଜର ଅନୁପସ୍ଥିତି-ଜନିତ ଦୁଃଖ ଜଣାଇବାକୁ ମଧ୍ୟ ସେ ଅସମର୍ଥ ହୋଇ ପଡ଼ିଲେ । ସଭାସ୍ଥଳରେ ମଧ୍ୟ ବନ୍ଧୁମାନେ ତାଙ୍କର ଅନୁପସ୍ଥିତିର କାରଣ ଉତ୍କଟ ପୀଡ଼ା ବ୍ୟତୀତ ଆଉ କିଛି ନୁହେଁ ବୋଲି ନିଶ୍ଚୟ କରିଥିଲେ । ରୋଗ-ଶଯ୍ୟାରେ ଦୁଃସହ ଯନ୍ତ୍ରଣା ସତ୍ତ୍ୱେ ସେ ଦିନ ସଭାର ବିବରଣ ଜାଣିବା ପାଇଁ ସେ ଉତ୍ସୁକଭାବରେ ସଭାପ୍ରତ୍ୟାଗତ ବନ୍ଧୁମାନଙ୍କୁ ସଭାର ଆମୂଳ-ଚୂଳ ଘଟନା ପଚାରି ବୁଝିଥିଲେ । ରାଧାନାଥଙ୍କ ସ୍ମୃତିସମ୍ବନ୍ଧରେ ଯୋଗ ନ ଦେବା ତାଙ୍କର ଏହାହିଁ ପ୍ରଥମ ଓ ଶେଷ । ରାଧାନାଥଙ୍କ ପ୍ରତିକୃତି

ଉଦ୍‌ଘାଟନ ପରେ ସେ ଦିନ ଶ୍ରୀଯୁକ୍ତ ସୁକାନ୍ତ ରାଓ ଗୃହକୁ ଫେରି ଆସିବାର ଦେଖି ସେ ତାଙ୍କୁ ପଚାରିଲେ, "ମାଗୁଣି ମିଶ୍ରଙ୍କ ପୁଅ କଣ ପୁରୀକୁ ଫେରି ଆସିଲେଣି ?" ସେ ଉତ୍ତର କଲେ, "ମୁଁ ଜାଣେ ନାହିଁ ।" ତତ୍ପରେ ସେ ନିକଏ ବିରକ୍ତିପୂର୍ଣ୍ଣ ସ୍ୱରରେ କହିଲେ, "ତୁମ୍ଭେମାନେ କିଛି କରିବ ନାହିଁ, ସବୁ କଣ ଏହି ମଧୁସୂଦନ ରାଓଙ୍କୁ କରିବାକୁ ହେବ ?" କାରଣ ଭୀଷଣ ରୋଗଯନ୍ତ୍ରଣାରେ ମଧ୍ୟ ସେ ଗୃହର ସମସ୍ତ କାର୍ଯ୍ୟ ପର୍ଯ୍ୟବେକ୍ଷଣ କରୁଥିଲେ । ସେ ଦିନ ବଢି ଆଠଟା ବେଳେ ସେ ବମନ କରିବାକୁ ଲାଗିଲେ । ସକଳ ରୋଗଯନ୍ତ୍ରଣା ସେ ଧୀର ଗମ୍ଭୀର ଭାବରେ ସହ୍ୟ କରୁଥିଲେ. ତାଙ୍କର ଏପରି ଧୈର୍ଯ୍ୟଚ୍ୟୁତି ଦେଖି ପରିବାରର ସମସ୍ତେ ଭୀତ ହୋଇ ପଡ଼ିଲେ ।

ପୀଡ଼ା ଉତ୍ତରୋତ୍ତର ବୃଦ୍ଧିଲାଭ କରିଥିଲା । ଅନ୍ୟାନ୍ୟ ଡାକ୍ତରଙ୍କ ସହିତ ଡାକ୍ତର ସାହେବଙ୍କୁ ଅଣାଇ ବିଧିମତେ ଚିକିତ୍ସାର ସୁବ୍ୟବସ୍ଥା କରାଗଲା । କିନ୍ତୁ ସେ ଚିକିତ୍ସାରେ ତାଙ୍କର ବିଶ୍ୱାସ ଓ ଆଗ୍ରହ ଦୂରରେ ଥାଉ ଆନ୍ତରିକ ଘୃଣା ପ୍ରକାଶ ପାଇବାର ଜଣା ଯାଉଥିଲା । ଔଷଧାଦି ଗ୍ରହଣ କାଳରେ ସେ ବଡ଼ ଅନିଚ୍ଛା ପ୍ରକାଶ କରୁଥିଲେ । ଦିନେ ଜଣେ ବନ୍ଧୁ ଔଷଧ ଦେବାକୁ ଆସିବାରୁ ସେ ତାଙ୍କୁ କହିଥିଲେ, "ଦେଖନ୍ତୁ, ଆଉ କି ଧରେ ରଖା ଭଲ ଦେଖାନ୍ତି ?" ଡାକ୍ତର ସାହେବ ପ୍ରତ୍ୟହ ସକାଳେ ତାଙ୍କୁ ଦେଖିବା ପାଇଁ ଆସୁଥିଲେ । ଦିନେ ତାଙ୍କୁ ଦେଖି ସେ କ୍ଷୀଣସ୍ୱରରେ କହିଲେ, "ବୋଧ ହୁଏ ମୋତେ ରକ୍ଷା କରିବା ଲାଗି ଈଶ୍ୱର ଆପଣଙ୍କୁ ପଠାଇ ଅଛନ୍ତି ।" ସାହେବ ବିଶ୍ରାମ କରିବାକୁ ଅନୁରୋଧ କରିବାରୁ ସେ ପ୍ରତ୍ୟୁତ୍ତରରେ କହିଲେ, "I am dying inch by inch and I will take rest in God." (ମୁଁ ଅଳ୍ପେ ଅଳ୍ପେ ମୃତ୍ୟୁର ନିକଟବର୍ତ୍ତୀ ହେଉଅଛି ଏବଂ ଶେଷରେ ଭଗବାନଙ୍କଠାରେ ବିଶ୍ରାମ ଲାଭ କରିବି) । ଆଉ ଦିନେ କଥା-ପ୍ରସଙ୍ଗରେ ଜଣେ ଡାକ୍ତର ବନ୍ଧୁଙ୍କୁ କହିଲେ, "ଏ ସଂସାରେ ସକଳର

ଅସ୍ଥିର ।" ହୃଦୟକୁ ଅଙ୍ଗୁଳି ନିର୍ଦ୍ଦେଶ କରି କହିଲେ, "କେବଳ ଏହାହିଁ ସ୍ଥିର ।" ମଧୁସୂଦନ ରୋଗଶଯ୍ୟାରେ ଯନ୍ତ୍ରଣା ପ୍ରତି ଭ୍ରୂକ୍ଷେପ ନ କରି ତାଙ୍କର ଆଦ୍ୟ ଜନନୀଙ୍କ ନିକଟକୁ ଯିବାପାଇଁ କେବଳ ପ୍ରସ୍ତୁତ ହେଉଥିଲେ । ଜନନୀ ନାମ ସ୍ମରଣରେ ତାଙ୍କ ଅନ୍ତର ଦିବ୍ୟ ଅମୃତ ରସରେ ଆପ୍ଲୁତ ହୋଇ ଉଠୁଥିଲା, ଜନନୀ ନାମ ଉଚ୍ଚାରଣରେ ତାଙ୍କର ସୌମ୍ୟ ମୁଖଶ୍ରୀ ସ୍ୱର୍ଗୀୟ ଆଲୋକରେ ଉଦ୍ଭାସିତ ହେଉଥିଲା । ତାଙ୍କର କୌଣସି କୌଣସି ଘନିଷ୍ଠ ବନ୍ଧୁଙ୍କ ମୁଖରୁ ଶୁଣା ଯାଇଅଛି ଯେ, ସେ ବାଲ୍ୟାବସ୍ଥାରେ ଅନ୍ୟ ବାଳକମାନଙ୍କ ପରି ଧୂଳିଖେଳ ଖେଳିବାର ବଡ଼ ଅନୁରକ୍ତ ଥିଲେ । ତାଙ୍କ ଧୂଳିଘରଟି କେହି ଭାଙ୍ଗି ଦେଲେ ସେ ପ୍ରାଣରେ ଦାରୁଣ ବେଦନା ଅନୁଭବ କରୁଥିଲେ । କ୍ରୀଡ଼ାରେ ଏକନିଷ୍ଠତାରୁ ତାଙ୍କ ଜୀବନର ପରବର୍ତ୍ତୀ କାଳର ଐକନିଷ୍ଠତା ସୂଚିତ ହେଉଥିଲା । କିନ୍ତୁ ଖେଳୁ ଖେଳୁ ସନ୍ଧ୍ୟା ସମୟରେ ଯେତେବେଳେ ତାଙ୍କର 'ମା' ମନେ ପଡ଼ୁଥିଲେ, ସେତେବେଳେ ସେ ସମସ୍ତ ଖେଳ ପଛକୁ ଫିଙ୍ଗାଇ ଦେଇ ଜନନୀର ଅଭୟ ଅଙ୍କର ଆଶ୍ରୟ ଲାଭ କରିବାକୁ ଦ୍ରୁତ ପ୍ରସ୍ଥାନ କରୁଥିଲେ ।

ପରବର୍ତ୍ତୀ ଜୀବନରେ ମଧ୍ୟ ସଂସାରର ଧୂଳିଖେଳରେ ଲିପ୍ତ ଥାଇ ସନ୍ଧ୍ୟା ସମୟରେ ଉପାସନାକାଳୀନ ମାତୃନାମ ଉଚ୍ଚାରଣ କରିବା ଲାଗି ସବୁ କାମ ପଛକୁ ପକାଇ ଦେଇ ଛୁଟି ଆସୁଥିଲେ । ଅନ୍ତିମଶଯ୍ୟାରେ ମଧ୍ୟ ତୀବ୍ର ରୋଗଯନ୍ତ୍ରଣାରେ ମାତୃଅଙ୍କରେ ସ୍ଥାନ ଲଭିବାକୁ ସେ ଲାଳାୟିତ ହେଉଥିଲେ । ସେଥିପାଇଁ ତାଙ୍କ ମୁଖ ସର୍ବଦା ପ୍ରସନ୍ନତାପୂର୍ଣ୍ଣ ଥିଲା । ଚିକିତ୍ସକମାନଙ୍କ ନିଷେଧ ନ ମାନି ସେ ଏହି ସମୟରେ ମଧ୍ୟ ଦର୍ଶନାର୍ଥୀ କୌଣସି ବନ୍ଧୁଙ୍କୁ ଦେଖିଲେ ଆଗ୍ରହସହକାରେ ତାଙ୍କୁ ପାର୍ଶ୍ୱକୁ ଡାକି କୁଶଳପ୍ରଶ୍ନ ଜିଜ୍ଞାସା କରୁଥିଲେ । ମଧ୍ୟେ ମଧ୍ୟେ ସେ ଭଗବଦ୍‌ଭାବରେ ଅନୁପ୍ରାଣିତ ହୋଇ ପଡ଼ୁଥିଲେ । ସେତେବେଳେ ତାଙ୍କର ଶରୀର ସ୍ଥିର, ମୁଖ ଗମ୍ଭୀର ଓ ନୟନଯୁଗଳ ଅଶ୍ରୁପୂର୍ଣ୍ଣ ହୋଇ

ପଡୁଥିଲା । ପୁଣି କେତେବେଳେ ରୋଗଯନ୍ତ୍ରଣାରେ ଅଧୀର ହୋଇ ସେ ଅତ୍ୟନ୍ତ ବ୍ୟାକୁଳ ହୋଇ ପଡୁଥିଲେ । ସେ ସମୟରେ ମଧ୍ୟ ବନ୍ଧୁମାନଙ୍କୁ ଦେଖି ହସ୍ତୋତ୍ତୋଳନଦ୍ୱାରା ନମସ୍କାର ଜ୍ଞାପନ କରୁଥିଲେ ଏବଂ କନିଷ୍ଠ-ମାନଙ୍କ ମସ୍ତକରେ ହସ୍ତସଞ୍ଚାଳନପୂର୍ବକ ଆଶୀର୍ବାଦ କରୁଥିଲେ ।

୧୯ ତାରିଖର ଘଟନା ଅତ୍ୟନ୍ତ ଅଦ୍ଭୁତ । କକ୍ଷରେ ବେଶି ଲୋକ ନ ଥିବା ସମୟରେ କନିଷ୍ଠ ଜାମାତା ଶ୍ରୀଯୁକ୍ତ ପ୍ରଫୁଲ୍ଲଚନ୍ଦ୍ର ବସୁଙ୍କ କରତଳରେ ୨୮ ଅଙ୍କ ଲେଖି ଦେଲେ । ସେ କିଛି ବୁଝି ନ ପାରି ଅବାକ୍ ହୋଇ ରହିବାରୁ ମଧ୍ୟମ ପୁତ୍ର ଶ୍ରୀଯୁକ୍ତ ପ୍ରଶାନ୍ତ ସର୍ବଙ୍କ ହାତ ଟାଣି ନେଇ ଅଙ୍ଗୁଳିରେ ସେହି ଅଙ୍କ ଲେଖି ଦେଲେ ଏବଂ ସେହି ତାରିଖ ମନେ ରଖିବା ପାଇଁ ସଙ୍କେତ ଦେଲେ । ସେତେବେଳେ ଅବଶ୍ୟ ସେମାନେ ଏଥିରୁ କିଛି ବୁଝି ପାରି ନ ଥିଲେ । କିନ୍ତୁ ଦୁଇ ବର୍ଷ ପୂର୍ବର ସ୍ୱପ୍ନ-ଦୃଷ୍ଟ ବୃତ୍ତାନ୍ତ ମଧୁସୂଦନଙ୍କର ସମ୍ପୂର୍ଣ୍ଣ ସ୍ମରଣରେ ଥିଲା । ଯନ୍ତ୍ରଣାର ଟିକିଏ ଉପଶମ ଦେଖିଲେ ସେ ବସିବାକୁ ଭଲ ପାଉଥିଲେ ଏବଂ ଆଲୋକମୟ ପ୍ରଶସ୍ତ କକ୍ଷରେ ରହିବାକୁ ଇଚ୍ଛା ପ୍ରକାଶ କରୁଥିଲେ । ଦିନେ ଡାକ୍ତର ସାହେବଙ୍କ ନିର୍ଦ୍ଦେଶକ୍ରମେ ସେହିପରି ଗୋଟିଏ ବଡ଼ ଘରକୁ ତାଙ୍କୁ ଅଣା ଯାଇଥିଲା । ଗୃହରେ ପ୍ରବେଶ ମାତ୍ରକେ ମହା ଉଲ୍ଲାସରେ କହିଲେ, "ଆହା, କି ସୁନ୍ଦର ଆଲୋକ !" ପ୍ରାତଃ-କାଳରେ ସୂର୍ଯ୍ୟାଲୋକ ଦେଖିବା ପାଇଁ ସେ ଅତ୍ୟନ୍ତ ଆଗ୍ରହ ପ୍ରକାଶ କରୁଥିଲେ । ଦ୍ୱାର ଗବାକ୍ଷାଦି ମଧ୍ୟରେ ଯେତେବେଳେ ଊଷାର ପ୍ରଥମ ଆଲୋକ ଗୃହ ମଧ୍ୟରେ ପ୍ରବେଶ କରୁଥିଲା, ତେତେବେଳେ ତାଙ୍କ ମୁଖରେ କ୍ଷୀଣ ହାସ୍ୟ-ରେଖା ଫୁଟି ଉଠୁଥିଲା । ଦିନେ ଏହିପରି ସମୟରେ ପୁତ୍ର ସୁକାନ୍ତଙ୍କୁ କହିଥିଲେ, "May German father Goethe come." ଏହିପରି ସମୟରେ ଦିନେ ସେ ଧ୍ୟାନମଗ୍ନ-ଚିତ୍ତରେ ଚୈତନ୍ୟମୂର୍ତ୍ତି ଜନନୀଙ୍କର ଆରାଧନା ଶେଷ କରି ବ୍ରହ୍ମାନନ୍ଦ କେଶବ-ଚନ୍ଦ୍ର ଓ ଡାକ୍ତର ମାର୍ଟିନୋ ପ୍ରଭୃତିଙ୍କ ଚରଣପଦ୍ମ ଦେଖିବାକୁ ମାଗିଥିଲେ ।

ତାଙ୍କର ଜୀବନଚରିତ ଲେଖିବା ପାଇଁ କନ୍ୟା ଅବନ୍ତୀ ଦେବୀ ବହୁ ଆଗ୍ରହ ପ୍ରକାଶ କରିଥିଲେ ଏବଂ ସେ ପୀଡ଼ାର ଅବ୍ୟବହିତ ପୂର୍ବରୁ ତାଙ୍କ ନିକଟକୁ ଲେଖିଥିଲେ, "ଅନେକଙ୍କର ଅଜ୍ଞାତ କେତୋଟି ଗୁପ୍ତ କଥା ମତେ କହି ଦେବ।" କିନ୍ତୁ ତାହା କହି ଦେବା ପାଇଁ ସମୟ ଆଉ ଅପେକ୍ଷା କଲା ନାହିଁ !

୨୨ ତାରିଖ ଦିନ ଡାକ୍ତର ସାହେବ ତାଙ୍କର ପୀଡ଼ାର ଉପଶମ ଓ ନାଡ଼ୀର ଅବସ୍ଥା ପୂର୍ବାପେକ୍ଷା ଭଲ ଦେଖି କହିଲେ, "I see you have much improved" (ମୁଁ ଦେଖୁଛି ଆପଣ ବହୁ ପରିମାଣରେ ସୁସ୍ଥ ହୋଇଅଛନ୍ତି)। କିନ୍ତୁ ମଧୁସୂଦନ ନିମ୍ନୋକ୍ତ ପ୍ରକାରର ଅଦ୍ଭୁତ ଉତ୍ତର କରି ଡାକ୍ତର ସାହେବଙ୍କ ଭ୍ରାନ୍ତି ଦୂର କରି ଦେଇଥିଲେ, "I am feeling well, but there is a proverb- -frog says, o frogling, the world is changing every moment (ହଁ, ମୋତେ ଭଲ ବୋଧ ହେଉଅଛି, କିନ୍ତୁ ଗୋଟିଏ ପ୍ରବଚନ ଅଛି—ବେଙ୍ଗ ବୋଲେ ବେଙ୍ଗୁଲି ଲୋ, ମହୀ କ୍ଷଣକ୍ଷଣକେ ଆନ।)

ଆଉ ଦିନେ ଉଦର ଯନ୍ତ୍ରଣାରେ ଛଟପଟ ହେଉଥିବାର ଦେଖି ତାଙ୍କର ଜ୍ୟେଷ୍ଠ ପୁତ୍ର ଡାକ୍ତର ଜୟନ୍ତ ରାଓ କହିଲେ, "ଅଳ୍ପ କ୍ଷଣ ପରେ ଏନିମା ଦେବ, ତାହାହେଲେ ଭଲ ବୋଧ ହେବ।" ଉତ୍ତରରେ ପିତା ହସି ହସି ଧୀର ସ୍ୱରରେ କହିଲେ, "ଏନିମା ଜାନିନା, ଜାନି ସେଇ ଚିନ୍ନମା—ଚିନ୍ନମା—ଚିନ୍ମୟୀ ମା।" ଏହା କହି ପ୍ରଫୁଲ୍ଲ ଉନ୍ମୀଳିତ ନେତ୍ରରେ ଊର୍ଦ୍ଧ୍ୱଦେଶକୁ ସଙ୍କେତ କଲେ। ଯେପରି ତାଙ୍କର ସେହି ଚିନ୍ମୟୀ ଜନନୀଙ୍କୁ ପ୍ରତ୍ୟକ୍ଷରେ ଦର୍ଶନ କରୁଅଛନ୍ତି। ଏହି ସମୟରେ କୌଣସି ବନ୍ଧୁ ଉପାସନା କରିବାକୁ ଜଣାଇଲେ ସେ ଆଗ୍ରହରେ ସେଥିରେ ଯୋଗ ଦେବାପାଇଁ ଇଚ୍ଛା ପ୍ରକାଶ କରୁଥିଲେ। ଦିନେ

ତାଙ୍କର ଗୁଣାନୁରକ୍ତ ବନ୍ଧୁ ମାନ୍ୟବର ମଧୁସୂଦନ ଦାସ ସି. ଆଇ. ଇ. ଆସି ତାଙ୍କ ଶଯ୍ୟା ପାର୍ଶ୍ୱରେ ବସି ଉପାସନା କରିବାକୁ ଅନୁମତି ମାଗିବାରୁ ସେ ମହୋଲ୍ଲାସରେ ତାହାଙ୍କ ପ୍ରାର୍ଥନାରେ ଯୋଗ ଦେଇଥିଲେ । ପ୍ରାର୍ଥନା ଶେଷରେ ମଧୁ ବାବୁ ପଚାରିଲେ, "ଭାଇ, ବିଶେଷ କଷ୍ଟ ହେଉଅଛି କି ?" କିନ୍ତୁ ଉତ୍ତର ପାଇଲେ, "ନା, ମୋହର କିଛି କଷ୍ଟ ହେଉ ନାହିଁ ।" ବାହ୍ୟ ଶୁଚି ବିଷୟକୁ ମଧୁସୂଦନଙ୍କର ଚିରକାଳ ତୀକ୍ଷ୍ଣ ଦୃଷ୍ଟି ଥିଲା । କାରଣ ତାଙ୍କର ବିଶ୍ୱାସ ଥିଲା, ଧର୍ମସାଧନପାଇଁ ଉଭୟ ବାହ୍ୟ ଓ ଅଭ୍ୟନ୍ତରୀଣ ଶୁଚିତ୍ୱ ଆବଶ୍ୟକ । ପରିଷ୍କୃତ ପରିଚ୍ଛନ୍ନ ନ ରହିଲେ ତାଙ୍କ ମନରେ ଶାନ୍ତି ଆସୁ ନ ଥିଲା । ଏପରି କି ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ କୌଣସି ଦିନ ଦନ୍ତଧାବନ କ୍ରିୟାରୁ ବିରତ ହୋଇ ନ ଥିଲେ ।

୨୭ ତାରିଖ ଦିନ ତାଙ୍କର ପ୍ରାଣାଧିକ କନିଷ୍ଠ ଜଗନ୍ନାଥ ସ୍ୱର୍ଣ୍ଣଙ୍କୁ ବିଶେଷ ଆବଶ୍ୟକ ଥିବାରୁ କଲିକତା ଯିବାକୁ ପଡ଼ିଲା । ତହୁଁ ସେ ପିତୃସମ ଜ୍ୟେଷ୍ଠଭ୍ରାତାଙ୍କ ନିକଟରେ ଉପସ୍ଥିତ ହୋଇ ପ୍ରକାଶ କଲେ, "ଦାଦା, ଯଦି ଅନୁମତି ଦେବ, ତାହାହେଲେ ଦୁଇ ତିନି ଦିନ ମଧ୍ୟରେ କଲିକତାର କାର୍ଯ୍ୟ ସାରି ଫେରି ଆସିବି ।" ସେ ଦିନ ତାଙ୍କର ନାଡ଼ୀର ଅବସ୍ଥା ଭଲ ନ ଥିଲେହେଁ ସେ ନିଷେଧ ନ କରି କହିଲେ, 'ଯାଅ ବାବା, କିନ୍ତୁ ପରଦିନ ( ୨୮ ତାରିଖ ) ସକାଳେ ଯେପରି ଆସିବାକୁ ହେବ ।" ଜଗନ୍ନାଥ ବାବୁ ସେଥିରେ ସ୍ୱୀକୃତ ହୋଇ କଲିକତା ପ୍ରସ୍ଥାନ କଲେ ।

୨୭ ତାରିଖରେ ତାଙ୍କର ରୋଗ ଯନ୍ତ୍ରଣା ପ୍ରବଳ ହୋଇ ଉଠିଲା ଏବଂ ନାଡ଼ୀର ଅତି କ୍ଷୀଣ ଅବସ୍ଥା ଦେଖି ପରିବାରସ୍ଥ ସମସ୍ତେ ବ୍ୟାକୁଳଭାବରେ ରୋଦନ କରିବାକୁ ଲାଗିଲେ । କୋମଳପ୍ରାଣ ମଧୁସୂଦନ ସେମାନଙ୍କୁ ସାନ୍ତ୍ୱନା ଦେଇ କହିଲେ, "ମୋର ଯିବାକୁ ବିଳମ୍ବ ଅଛି,

ତୁମ୍ଭେମାନେ ଏହିକ୍ଷଣି କାହିଁକି କାନ୍ଦୁଛ ? ଯାଅ, ଅହ୍ଲାଦ କର ।” ସେ ଦିନ ସକାଳ ପର୍ଯ୍ୟନ୍ତ ତାଙ୍କର କଥା ବହୁ ସୁସ୍ପଷ୍ଟ ଥିଲା, କିନ୍ତୁ କ୍ରମେ ତାହା କ୍ଷୀଣତର ହୋଇ ଆସିଲା, ଶେଷରେ ସେହି ସାଙ୍କେତିକ ୨୮ ତାରିଖ ଉପସ୍ଥିତ ହେଲା । ପ୍ରଭାତ ସମୟରେ ଜଗନ୍ନାଥ ବାବୁ କଲିକତାରୁ ଫେରି ଆସି ପହଞ୍ଚିଲେ । ତାଙ୍କୁ ଦେଖିବା ଉତ୍ତାରେ ତାଙ୍କର ଶେଷ ବାୟୁ ପ୍ରବାହିତ ହେବାକୁ ଲାଗିଲା । କିଛିକ୍ଷଣ ହରି ନାମ ଶ୍ରବଣ କରିବା ପରେ ଭକ୍ତସନ୍ତାନ ମଧୁସୂଦନ ବାହୁ ତୋଳି ସେହି ଚିନ୍ମୟୀ ଜନନୀଙ୍କ କୋଳକୁ ଯିବା ପାଇଁ ଯେପରି କି ସଙ୍କେତ କଲେ । ପୂର୍ବାହ୍ନ ୯ ଘଟିକା ସମୟରେ ବନ୍ଧୁସ୍ୱଜନଙ୍କର ଶୋକୋଚ୍ଛ୍ୱାସ ମଧ୍ୟରେ ସେ ସେହି ଚିରବାଂଛିତ ଆନନ୍ଦଧାମକୁ ନୀରବରେ ପ୍ରସ୍ଥାନ କଲେ ।

ମଧୁସୂଦନ ସେହି ଜ୍ୟୋତିର୍ମୟ ଦେଶ, ସେହି ଅମୃତ ଲୋକକୁ ଆଜି ପ୍ରସ୍ଥାନ କରିଅଛନ୍ତି । ଯେଉଁ ଦେଶକୁ ଯିବାପାଇଁ ଚିରନ୍ତନ ପୁରୁଷ କ୍ରନ୍ଦନ କରିଅଛନ୍ତି, “ତମସୋମା ଜ୍ୟୋତିର୍ଗମୟ, ମୃତ୍ୟୋର୍ମାଽମୃତଂ ଗମୟ,” ଏ ଦେଶର ଇନ୍ଦ୍ରଦ୍ୟୁମ୍ନ ମହାପାତ୍ର ସେହି ଦେଶକୁ ଗମନ କରିଅଛନ୍ତି, ଉପେନ୍ଦ୍ର, ଅଭିମନ୍ୟୁ, ରାଧାନାଥ ସେହି ସ୍ଥାନକୁ ପ୍ରୟାଣ କରିଅଛନ୍ତି । ଏମାନଙ୍କୁ ଏ ଦେଶ ଯେପରି ଭୁଲି ପାରି ନାହିଁ, ମଧୁସୂଦନଙ୍କୁ ମଧ୍ୟ ସେହିପରି ଭୁଲିବ ନାହିଁ । କାରଣ, ଏମାନଙ୍କର ଦେହର ମୃତ୍ୟୁ ହେଲେ ମଧ୍ୟ ଏମାନଙ୍କର ଆତ୍ମା ଚିରକାଳ ଏ ଦେଶରେ କାର୍ଯ୍ୟକାରୀ ଶକ୍ତିରୂପେ ଦେଦୀପ୍ୟମାନ ରହିବ । ପରୋକ୍ଷରେ ବା ପ୍ରତ୍ୟକ୍ଷରେ ଏମାନଙ୍କଠାରୁ ଦେଶବାସୀ ଶକ୍ତି ଓ ସାହସ ସଞ୍ଚୟ କରୁଥିବେ ।



# ଅଷ୍ଟାଦଶ ପରିଚ୍ଛେଦ ।

## ଗ୍ରନ୍ଥପରିଚୟ ।

ଅମ୍ଭେମାନେ ଯଥାସାଧ୍ୟ ପୁଣ୍ୟାତ୍ମା ମଧୁସୂଦନଙ୍କ ଧର୍ମଜୀବନର କାହାଣୀ ବର୍ଣ୍ଣିତ କରୁଅଛୁଁ । ତାଙ୍କର ସ୍ଥୂଳ ଶରୀରର ମୃତ୍ୟୁ ପରେ ସେ ଯେଉଁ ଦେହରେ ଏ ଦେଶରେ ଜୀବନ୍ତ ହୋଇ ରହିଅଛନ୍ତି ଓ ରହିବେ, ତାହାର କିଞ୍ଚିତ୍ ପରିଚୟ ଏଠାରେ ନ ଦେଲେ ପୁସ୍ତକଟି ପୂର୍ଣ୍ଣତା ପ୍ରାପ୍ତ ହେବ ନାହିଁ ।

ଏହିପୂର୍ବେ ସୂଚିତ ହୋଇଅଛି, ମଧୁସୂଦନ ଆଜୀବନ ପୀଡ଼ାଗ୍ରସ୍ତ ଥାଇ ଏବଂ ସାଂସାରିକ ନାନା କର୍ମରେ ବ୍ୟସ୍ତ ରହି ମଧ୍ୟ ମାତୃଭୂମି ଓ ମାତୃଭାଷା ପାଇଁ କଠୋର ପରିଶ୍ରମ କରି ଯାଇଅଛନ୍ତି । ଏପରି କି, ଅମ୍ଳଶୂଳ ବେଗରେ, ଉଦରଯନ୍ତ୍ରଣାରେ ବ୍ୟଥିତ ହୋଇ ମଧ୍ୟ ସେ ପେଟ-ତଳେ ତକିଆ ରଖି ଅଧଃଶୟନ କରି ଲିଖନରେ ସର୍ବଦା ବ୍ୟସ୍ତ ଥାନ୍ତି । ଏପରି ସମୟରେ କେହି ବନ୍ଧୁ ଆସି ନିଷେଧ କଲେ ସେ ପରିହାସ-ଛଳରେ ଉତ୍ତର କରନ୍ତି, "ଲେଖାରେ କି ପଢ଼ାରେ ମନଟା ଟିକିଏ ଲାଗିଗଲେ ଯାତନାଟା ଟିକିଏ ଊଣା ହେଲା ପରି ଜଣା ପଡ଼େ । ପେଟ କୁଟୁକୁଟୁ ହୋଇ କାଟୁଛି, ମୁଁ କୁଟୁ କୁଟୁ ହୋଇ ଲେଖିଛି । ଦେଖାଯାଉ କାହାର କେତେ ବଳ ।" କିନ୍ତୁ ଶେଷରେ ତାଙ୍କର ବଳହିଁ ଅଧିକ ବୋଲି ଦେଖା ଯାଇଅଛି । ତାଙ୍କର ଭକ୍ତ ଲୋକମାନଙ୍କ ମୁଖରେହିଁ ନିମ୍ନୋକ୍ତ ପ୍ରକାରର ବାକ୍ୟ ଶୋଭା ପାଇଥାଏ ।

"ମାତୃଭୂମି ମାତୃଭାଷା ଉଭୟେ ଜନନୀ,
ସେବ ତାଙ୍କୁ ଭକ୍ତିଭରେ ଦିବସ ରଜନୀ,

ଏ ମାନବ ଜନ୍ମ ହେଉ ସଫଳ ମୋହର,
ଏ ଭିକ୍ଷା କରନ୍ତୁ ପୂର୍ଣ୍ଣ ପ୍ରଭୁ ମହେଶ୍ୱର ।"

ମଧୁସୂଦନ ନାନା ଭାଷାବିତ୍ ଥାଇ ସର୍ବଦା ଉତ୍କୃଷ୍ଟ ଗ୍ରନ୍ଥାଦିର ଆଲୋଚନା କରୁଥିଲେ । ସେ ଯେଉଁ ସକଳ ଗ୍ରନ୍ଥ ଅତ୍ୟନ୍ତ ଆଦର କରୁଥିଲେ, ତାହାର ଗୋଟିଏ ଖସଡ଼ା ନିମ୍ନରେ ଦେଲେ ଅସଙ୍ଗତ ହେବ ନାହିଁ ।

ଗୀତା, ବାଇବେଲ, କୋରାଣ ବ୍ୟତୀତ ଉପନିଷଦ୍ ଏବଂ ବୌଦ୍ଧ ଓ ବ୍ରାହ୍ମଧର୍ମର ବହୁଧ ସାହିତ୍ୟ ବା ଧର୍ମଗ୍ରନ୍ଥମାନ ସେ ଏକାଧିକ ଥର ଅଧ୍ୟୟନ କରିଥିଲେ । ଏହା ବ୍ୟତୀତ—

୧ । ଇଂରାଜୀ ଭାଷାରେ—ମାର୍ଟିନୋ (Martineau), ନିଉମ୍ୟାନ୍ (Newman), ରସ୍କିନ୍ (Ruskin), ଇମାର୍ସନ (Emarson), ଥିଓଡର ପାର୍କର (Theoder Parkar), ଭଏସି (Voisy), ଭିକ୍ଟର ହ୍ୟୁଗୋ (VictorHugo), ମେଥ୍ୟୁ ଆର୍ନଲ୍ଡ (Mathew Arnold), ଆର୍ମଷ୍ଟ୍ରଂ (Armstrong) ପ୍ରଭୃତି ମନୀଷିଗଣଙ୍କର ଦର୍ଶନୋପନ୍ୟାସ ଗ୍ରନ୍ଥ ଏବଂ ଟେନିସନ୍ (Tennyson), ୱାର୍ଡ୍ସୱାର୍ଥ (Wordsworth) ଶେଲି (Shelly), ବ୍ରାଉନିଂ (Browning) ପ୍ରଭୃତି ପ୍ରତିଭାଶାଳୀ ବ୍ୟକ୍ତିମାନଙ୍କର କାବ୍ୟସାହିତ୍ୟ ଗ୍ରନ୍ଥ ।

୨ । ସଂସ୍କୃତରେ ପଞ୍ଚଦଶୀ, ଭବଭୂତିଙ୍କର ଉତ୍ତରଚରିତ ଓ ମାଳତୀମାଧବ, କାଳିଦାସଙ୍କର ରଘୁବଂଶ ଓ ଅଭିଜ୍ଞାନଶକୁନ୍ତଳା, ବାଲ୍ମୀକି ରାମାୟଣ, ଶ୍ରୀମଦ୍‌ଭାଗବତ ଏବଂ ବେଦାନ୍ତ ଦର୍ଶନ ଗ୍ରନ୍ଥ ।

୩ । ବଙ୍ଗ ଭାଷାରେ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର, ମାଇକେଲ୍ ମଧୁସୂଦନ ଦତ୍ତ, ଭୂଦେବଚନ୍ଦ୍ର ମୁଖୋପାଧ୍ୟାୟ ଏବଂ ରବୀନ୍ଦ୍ରନାଥ

ଠାକୁରଙ୍କର କବିତା ରଚନାବଳୀ ଓ ରାମମୋହନ, କେଶବଚନ୍ଦ୍ରଙ୍କର ଗ୍ରନ୍ଥାବଳୀ ।

୪ । ହିନ୍ଦୀଭାଷାରେ ତୁଳସୀ ଦାସଙ୍କ ରାମାୟଣ ଓ ଦୋହାବଳୀ ।

୫ । ଓଡ଼ିଆ ଭାଷାରେ ଶାରଳା ଦାସଙ୍କ ମହାଭାରତ, ଜଗନ୍ନାଥ ଦାସଙ୍କ ଶ୍ରୀମଦ୍‌ଭାଗବତ, ଦୀନକୃଷ୍ଣଙ୍କ ରସକଲ୍ଲୋଳ ଏବଂ ବଳରାମ ଦାସଙ୍କ ରାମାୟଣ ।

୬ । ମହାରାଷ୍ଟ୍ର ଭାଷାରେ ଭକ୍ତ ତୁକାରାମଙ୍କ ଉପଦେଶାବଳୀ ଏବଂ ଆଧୁନିକ କେତେକ ପଣ୍ଡିତଙ୍କର ରଚନାବଳୀ । ସେ ଯାହା ପଢ଼ୁଥିଲେ, ତାକୁ ସମ୍ପୂର୍ଣ୍ଣରୂପେ ଅନୁଭବ କରୁଥିଲେ । ସେଥିରେ ଅଳ୍ପ କିଛି ମଳଧୂଳି ସଂଶୟ ଦ୍ୱିଧା ରହୁ ନ ଥିଲା । ପୁନଃ ପୁନଃ ପୁଙ୍ଖାନୁପୁଙ୍ଖରୂପେ ପାଠ କରି ସେ ସମସ୍ତ ହୃଦୟସ୍ଥ କରି ରଖୁଥିଲେ ।

ପାଠ୍ୟ ପୁସ୍ତକ ରଚନା ଦ୍ୱାରା ମଧୁସୂଦନ ଉତ୍କଳରେ ଯେତେ ବେଶି ପରିଚିତ ହୋଇ ପାରିଅଛନ୍ତି, ଆଧୁନିକ ଯୁଗରେ ରାଧାନାଥ କିମ୍ବା ଫକୀରମୋହନ ସେତେଦୂର ହୋଇ ନାହାନ୍ତି । ଶିଶୁଠାରୁ ଆରମ୍ଭ କରି ବୃଦ୍ଧ ପର୍ଯ୍ୟନ୍ତ ଉତ୍କଳରେ ଯାହାର ଅକ୍ଷରପରିଚୟ ହୋଇଅଛି, ସେ ମଧୁସୂଦନଙ୍କ ଲେଖା ପାଠ ନ କରି ନାହିଁ । ସେ ନିଜ ଜୀବନକୁ ଯେପରି କଠୋର ନୀତିପଥରେ ପରିଚାଳିତ କରିଥିଲେ, ସ୍ୱରଚିତ କବିତାବଳୀ ଓ ପ୍ରବନ୍ଧାଦିରେ ମଧ୍ୟ ସେହି ନିୟମ ରକ୍ଷା କରିଅଛନ୍ତି । ନୀତି ହିସାବରେ ତାଙ୍କ ଲେଖା ଦୋଷଶୂନ୍ୟ ବୋଲି ସହଜରେ ବୋଲିଯାଇ ପାରେ ଏବଂ ବିନା ଆପତ୍ତିରେ ତାହା ପୁତ୍ର ଜନନୀ ନିକଟରେ, କନ୍ୟା ପିତା ନିକଟରେ, ଭ୍ରାତା ଭଗିନୀ ନିକଟରେ ପାଠ କରି ପାରେ । ଏପରି କି, ଧର୍ମମର୍ମରେ ମଧ୍ୟ ଯହିଁରେ ଏହି ନୀତିର ତାରତମ୍ୟ ହେବାର ଆଶଙ୍କା କରିଅଛି, ସେ ତାହାର ଦ୍ୱାରଦେଶ ସ୍ପର୍ଶ କରି ନାହାନ୍ତି । ସେହି କାରଣରୁ ଶ୍ରୀକୃଷ୍ଣଙ୍କର ପ୍ରେମ ଓ

ଐଶ୍ୱର୍ଯ୍ୟ ଧର୍ମ ସମ୍ବନ୍ଧରେ ସେ କୌଣସି ସ୍ଥଳରେ ଲେଖଣୀ ଚାଳନା କରିଅଛନ୍ତି ବୋଲି ମନେ ହୁଏ ନାହିଁ । କାବ୍ୟ ଦୃଷ୍ଟିରୁ ଏହା ଅବଶ୍ୟ ଗୋଟିଏ ତ୍ରୁଟି ବୋଲି ଗଣ୍ୟ ହୋଇ ପାରେ । କାରଣ ଯଥାର୍ଥ କାବ୍ୟ ଯାହା, ସେ ସତ୍ୟ, ଶିବ ଓ ସୁନ୍ଦରର ଏକତ୍ର ସମାବେଶ, ତାହା ନୀତି ଅନୀତି ବାଛି ବିଚାରର ଊର୍ଦ୍ଧ୍ୱରେ । ମଧୁସୂଦନ 'ସତ୍ୟ' ଓ 'ଶିବ'ର ଉପାସକ ଥିଲେ, 'ସୁନ୍ଦର' ସମ୍ବନ୍ଧରେ ସେ ଯଥେଷ୍ଟ ଉଦାରତା ଦେଖାଇ ପାରି ନାହାନ୍ତି । ସେଥିଲାଗି ଉତ୍କଳବାସୀ ତାଙ୍କୁ ଭକ୍ତ-କବି ଆଖ୍ୟା ପ୍ରଦାନ କରିଅଛନ୍ତି; ସେ ଆଗେ ଭକ୍ତ, ତତ୍ପରେ କବି । ସତ୍ୟ ଓ ଶିବର ନିମ୍ନରେ ସୁନ୍ଦରର ସ୍ଥାନ ନିର୍ଦ୍ଦେଶ କରିଅଛନ୍ତି ।

ମଧୁସୂଦନ ଗ୍ରେ, ଲଂଫେଲୋ, ୱିମ୍ୟାନ୍ସ, ୱାର୍ଡ୍ସ୍‌ୱାର୍ଥ ପ୍ରଭୃତିଙ୍କ ଦରର କବି । ସେ ଯାହା କିଛି ଲେଖୁଥିଲେ, ତାହା ବାରମ୍ବାର ପରିବର୍ତ୍ତନ, ପରିମାର୍ଜନ ଓ ପରିବର୍ଦ୍ଧନାଦି କରୁଥିଲେ । ତାଙ୍କର ପ୍ରତିଭା ଟେନିସନ୍, ଷ୍ଟିଭେନ୍‌ସନ୍ ପ୍ରଭୃତିଙ୍କ ଧରଣର ପ୍ରତିଭା । ଥରେ ଲେଖି ସାରି ଦ୍ୱିତୀୟ ଥର ତାକୁ ନ ଛୁଇଁବା ତାଙ୍କର ପ୍ରକୃତି ନ ଥିଲା । ପୁଙ୍ଖାନୁପୁଙ୍ଖରୂପେ ଦେଖି ସଂଶୋଧନ ନ କଲେ ତାଙ୍କର ତୃପ୍ତି ଆସୁ ନ ଥିଲା ଏବଂ ତାହା ସେ ପ୍ରକାଶ କରୁ ନ ଥିଲେ । ସେଥିଲାଗି କେବେ କେବେ ସେ କହୁଥିଲେ, "I have the honour to state ଏହି ଗ୍ରନ୍ଥରେ ଅନର୍ଗଳ ଅବାରିତ କବିତା ଲେଖିବାକୁ ମୁଁ ଅସମର୍ଥ ।"

ମଧୁସୂଦନଙ୍କର ପ୍ରାୟ ସମସ୍ତ କବିତାରେ 'ବିଭୁପ୍ରେମ' 'ବିଭୁ-ଦର୍ଶନ'ର ଆଭାସ ମିଳିଥାଏ, ତାଙ୍କର ଅଧିକାଂଶ ରଚନା ଭକ୍ତିରସାତ୍ମକ । ସେ ପ୍ରାୟ ମହାକାବ୍ୟ ଲେଖି ନାହାନ୍ତି କହିଲେ ଚଳେ । ବାଳିରାମାୟଣ, କର୍ଣ୍ଣବଧ ପ୍ରଭୃତି ଅଳ୍ପ କେତେଖଣ୍ଡି ଯେ ଅପେକ୍ଷାକୃତ ବୃହତ୍ ଗ୍ରନ୍ଥ ସେ ରଚନା କରିଅଛନ୍ତି, ତାକୁ ଠିକ୍ ମହାକାବ୍ୟ କହାଯାଇ ନ

ଯାଇର । ସେ ସବୁ ପୁରାଣ ଭାଗବତ ଶ୍ରେଣୀର ; ନାୟକ ନାୟିକାର ପ୍ରେମ ବର୍ଣ୍ଣନାରେ କୌଣସି ସ୍ଥାନରେ ତାଙ୍କର କବିତା ସରସ ହୋଇ ଉଠି ନାହିଁ । କିନ୍ତୁ ତାଙ୍କର ସ୍ତବ, ସନ୍ଧ୍ୟା, ପୃଥିବୀ ପ୍ରତି, କ୍ଷୋଭ, ଧ୍ୱନି, ଋଷିପ୍ରାଣେ ଦେବାବତରଣ, ଋତୁ ବର୍ଣ୍ଣନା, ପତିତା ରମଣୀ ପ୍ରଭୃତି କବିତାଗୁଡ଼ିକରେ ଯେଉଁ କାନ୍ତି, ସଙ୍ଗୀତ, ବିମଳ ମାଧୁର୍ଯ୍ୟ ଫୁଟି ଉଠିଅଛି, ତାହା ତାଙ୍କର ଅସାଧାରଣ କବିପ୍ରତିଭା ପକ୍ଷରେ ସାକ୍ଷ ଦେବା ପାଇଁ ଯଥେଷ୍ଟ । କାରଣ ସାଧାରଣ ଲେଖକ ପକ୍ଷରେ ଏହି ସକଳ ବିଷୟ ନେଇ ଏତେଦୂର ମନୋମୁଗ୍ଧକର କବିତା ରଚନା କରିବା ସହଜ ସାଧ୍ୟ ନୁହେ ।

ମଧୁସୂଦନଙ୍କ ଗ୍ରନ୍ଥାବଳୀକୁ ନିମ୍ନୋକ୍ତ ରୂପରେ ବିଭାଗ କରି ଯାଇ ପାରେ ।

୧ ଶିଶୁଗୀତିକା—ପ୍ରଭାତ, ସୁନ୍ଦର ସଂସାର, ସ୍ତବ, ବସନ୍ତ, ଗ୍ରୀଷ୍ମ, ବର୍ଷା ଆଦି ଷଡ଼୍‌ଋତୁ ବର୍ଣ୍ଣନା, ଜନ୍ମ ମରଣ, ସତ୍ୟବ୍ରତ, ପରିଶ୍ରମ ଇତ୍ୟାଦି ।

୨ ବର୍ଣ୍ଣନାତ୍ମକ କବିତା—ନଦୀ ପ୍ରତି, ପଦ୍ମ, ଶରତ୍ ପ୍ରଭାତ, ମହାଦେବୀ ଭିକ୍ଟୋରିଆ, ସୀତାବନବାସ, ଭଞ୍ଜଭୂମିପତି ଶ୍ରୀରାମଚନ୍ଦ୍ର, ବସନ୍ତଗାଥାର ସନେଟ୍ ଆଦି କେତେକ କବିତା, ଉତ୍କଳଗାଥା ।

୩ ଭାବନାତ୍ମକ—କୁସୁମାଞ୍ଜଳି, ଋଷିପ୍ରାଣେ ଦେବାବତରଣ, ହିମାଚଳେ ଉଦୟ ଉତ୍ସବ ।

୪ ଧର୍ମ ଓ ନୀତି ବିଷୟକ କବିତା—ଜୀବନଚିନ୍ତା, ବିବିଧ କବିତା ଇତ୍ୟାଦି ।

* ସଙ୍ଗୀତମାଳା, ଅନୁବାଦ ଓ ବ୍ୟଙ୍ଗାତ୍ମ ଅନ୍ୟାନ୍ୟ କବିତା ।

ଏହା ଅବଶ୍ୟ ଗୋଟିଏ ସ୍ଥୂଳ ବିଭାଗ । ରସ ଓ ଅନ୍ୟାନ୍ୟ ଦିଗରୁ ମଧ୍ୟ ତାଙ୍କ କବିତାକୁ ବିଭକ୍ତ କରାଯାଇ ପାରେ ।



## ଊନବିଂଶ ପରିଚ୍ଛେଦ ।

### ଶିଶୁଗୀତିକା ।

ପୂର୍ବେ କହାଯାଇଅଛି, ମଧୁସୂଦନ ଉତ୍କଳର ପ୍ରଧାନ ଶିକ୍ଷାଗୁରୁ ଥିଲେ । ବର୍ଣ୍ଣପରିଚୟରୁ ଆରମ୍ଭ କରି ଉଚ୍ଚାଙ୍ଗର ସାହିତ୍ୟ ଚର୍ଚ୍ଚା ପର୍ଯ୍ୟନ୍ତ ସବୁ କ୍ଷେତ୍ରରେ ଉତ୍କଳବାସୀ ତାଙ୍କର ଉପସ୍ଥିତି ଅନୁଭବ କରିଥାନ୍ତି । ସକଳ ଅବସ୍ଥାରେ ସେ ଏହି ଦୁଃସ୍ଥ ଉତ୍କଳବାସିଙ୍କର ହୃଦୟକୁ ଆନନ୍ଦ ଯୋଗାଇଅଛନ୍ତି । ଶିଶୁପାଠ୍ୟ ଲେଖିବା ବେଳେ ସେ ଯେପରି ନିଜେ ଶିଶୁଭାବରେ ଅନୁପ୍ରାଣିତ ହୋଇ ଯାଇଅଛନ୍ତି ।

"ଯାହା ମୁଁ କରଇ, ଯାହା ମୁଁ କହଇ,
ଯାହା ମୁଁ ଚିନ୍ତଇ ମନେ,
ଜଗତର କର୍ତ୍ତା ପରମ-ଈଶ୍ୱର
ଜାଣୁଛନ୍ତି ପ୍ରତିକ୍ଷଣେ ।"

ପ୍ରତି କ୍ଷଣରେ ସେ ଯେପରି ନିକଟତମ କରି ଭଗବତ୍‌କୃପା ଅନୁଭବ କରିଅଛନ୍ତି, ଶିଶୁମାନଙ୍କ ହୃଦୟକୁ ପ୍ରଥମରୁ ସେହିପରି ଭାବରେ ଅନୁପ୍ରାଣିତ କରିବାକୁ ଚେଷ୍ଟା କରିଅଛନ୍ତି । ଶିଶୁଚକ୍ଷୁରେ ଯେଉଁପରି ଦୃଶ୍ୟମାନ ଜଗତ୍ ସହଜରେ ପ୍ରତୀୟମାନ ହୁଏ, ତାହାର ମଧ୍ୟରେ ସେ

ବିଶ୍ୱନିଯନ୍ତାଙ୍କର ଅଙ୍ଗୁଳିସ୍ପର୍ଶ ଦେଖାଇ ଦେଇଅଛନ୍ତି । 'ସ୍ତବ' କବିତାରେ ଅଛି—

ସୂର୍ଯ୍ୟ ଚନ୍ଦ୍ର ତାରା ତୁମ୍ଭର ଆଜ୍ଞାରେ
ବରଷନ୍ତି ଜ୍ୟୋତିରାଶି,
ତୁମ୍ଭର କୁସୁମ ପ୍ରତି ପ୍ରଭାତରେ
ହସଇ ଆନନ୍ଦେ ଭାସି ।
ପିତା ମାତା ବନ୍ଧୁ ଭାଇ ଭଗିନୀର
ହୃଦୟେ ଦେଇଛ ପ୍ରୀତି,
ତେଣୁ ମୁଁ ସଂସାରେ ରହିଛି ଆନନ୍ଦେ
ସୁଖ ଭୁଞ୍ଜି ନିତି ନିତି ।"

ମଧୁସୂଦନ ଶିଶୁମାନଙ୍କ ଉଦ୍ଦେଶ୍ୟରେ ଯାହା ଲେଖିଅଛନ୍ତି, ସେଥିରେ ସେ ସ୍ଥାନେ ସ୍ଥାନେ ଗୁରୁ ବା ଉପଦେଶକର ଆସନ ଗ୍ରହଣ କରି- ଅଛନ୍ତି, ଯାହା ତାଙ୍କ ପକ୍ଷରେ ଅଶୋଭନୀୟ ନୁହେ, କିନ୍ତୁ କବି ବା କଳାବିତ୍ (artist) ହିସାବରେ ତାଙ୍କ ସ୍ଥାନକୁ ଉଚ୍ଚତର କରି ପାରି ନାହିଁ । କିନ୍ତୁ ପୂର୍ବେ ସୂଚିତ ହୋଇଅଛି, ଭକ୍ତ-ମଧୁସୂଦନ କବି- ମଧୁସୂଦନଙ୍କ ଅପେକ୍ଷା ଅନେକ ବଡ଼ । ସେ ପ୍ରଥମେ ଭଗବଦ୍ଭକ୍ତିରେ ଅନୁପ୍ରାଣିତ ହୋଇ ପରେ ଅନ୍ୟମାନଙ୍କୁ ସେହି ମଧୁର ଭକ୍ତିରସ ପାନ କରି ଆନନ୍ଦ ଲାଭ କରିବା ପାଇଁ ଆହ୍ୱାନ କରିଅଛନ୍ତି । ସେଠାରେ ମନେ ହୁଏ, ସେ ନିଜର ଶ୍ରେଷ୍ଠତ୍ୱ, ନିଜେ ଉପଦେଷ୍ଟା ବୋଲି ଯେପରି ଭୁଲି ଯାଇଅଛନ୍ତି । ଶିଶୁ ସଙ୍ଗରେ ଶିଶୁ ହୋଇ ଯୁବକ ବା ବୃଦ୍ଧ ସହିତ ତଦବସ୍ଥାପନ୍ନ ହୋଇ ଏକ କଣ୍ଠରେ ହରିନାମ କୀର୍ତ୍ତନ କରିବାର ଆଗ୍ରହ ତାଙ୍କ ପ୍ରାଣରେ ଜାତ ହୋଇଅଛି । ଯେପରି 'ହରିଗୀତ' କବିତାରେ—

"ହରିଙ୍କ ଗାଇଲେ ସଙ୍ଗୀତ,
ଆହା କି ମନୋହର,
ସେ ଗୀତ ଶ୍ରବଣେ ହୃଦୟ
ନାଚି ଉଠେ ମୋହର ।

ବନ୍ଧୁଙ୍କ ସଙ୍ଗତେ ବାଳକେ,
ଗାଅ ଆନନ୍ଦ ମନେ
ହୃଦୟେ ସୁମରି ଜଗତ ପିତା
ସୃଷ୍ଟି କାରଣେ ।"

ପ୍ରଥମେହିଁ ତାଙ୍କ ହୃଦୟ ନାଚ ଉଠିଅଛି ଏବଂ ସେ ଆନନ୍ଦବିହ୍ୱଳ ହୋଇ ବାଳକମାନଙ୍କୁ ସେ ଆନନ୍ଦର ଭାଗୀ କରିବାପାଇଁ ଡାକିଅଛନ୍ତି, ସେ ଅସୀମ ଆନନ୍ଦ ଏକାକୀ ଅନୁଭବ କରିବାକୁ ଭକ୍ତ ଅନ୍ତର ଅସମର୍ଥ ହୋଇ ପଡ଼ିଅଛି, ଅଥବା ସେ ଆନନ୍ଦ ଏକାକୀ ଉପଭୋଗ କରି ଅନ୍ୟମାନଙ୍କ ବଞ୍ଚିତ କରିବାର ସ୍ୱାର୍ଥପରତା ତାଙ୍କର ନାହିଁ ।

ମଧୁସୂଦନ ସଂସାରର ନାନା ବଞ୍ଚନା ସହ୍ୟ କରିଅଛନ୍ତି, ରୋଗ ଓ ଦାରିଦ୍ର୍ୟ ସହିତ ଚିରଦିନ ଯୁଦ୍ଧ କରିଅଛନ୍ତି, କିନ୍ତୁ ଚିରଦିନ ସେ ସେ ତାଙ୍କ ଅନ୍ତରକୁ ଶିଶୁର ଅନ୍ତର କରି ରଖି ପାରିଅଛନ୍ତି, ଏହାହିଁ ତାଙ୍କ ଜୀବନରୁ ଆମ୍ଭମାନଙ୍କର ସର୍ବୋଚ୍ଚ ଶିକ୍ଷା । ତାଙ୍କର ରସପୂର୍ଣ୍ଣ ହୃଦୟ ଚିରଦିନ ଶିଶୁର ସରଳତାରେ ପରିପୂର୍ଣ୍ଣ ଥିଲା । ଶିଶୁଗୀତିକା-ଗୁଡ଼ିକ ସେହିପରି ଶିଶୁସୁଲଭ ସ୍ନେହ, ସାରଲ୍ୟ, ଆନନ୍ଦ ମାଧୁର୍ଯ୍ୟରେ ରସାଣିତ । 'ମୋ ଜନନୀ' କବିତାରେ ମଧୁସୂଦନ ସ୍ୱୀୟ ହୃଦୟର ଶିଶୁତ୍ୱର ଯେପରି ପରାକାଷ୍ଠା ଦେଖାଇଅଛନ୍ତି, ତାହା କବିତାରାଜ୍ୟରେ ବହୁଳ ପରିଦୃଷ୍ଟ ହୁଏ ନାହିଁ ।

ଆକାଶ ଉପରେ କି ସୁନ୍ଦର,
ତାହାକୁ ବୋଲେ ଈଶ୍ୱର ।

ଏ ଦୁଇଟି ପଂକ୍ତିରେ ମଧୁସୂଦନଙ୍କର ଶିଶୁ-ଅନ୍ତର ଯେପରି ମୂର୍ତ୍ତିମନ୍ତ ହୋଇ ବାହାରି ପଡ଼ିଅଛି । ଶିଶୁଗୀତିକାଗୁଡ଼ିକ ଯେଉଁ ଉଦ୍ଦେଶ୍ୟରେ ଲିଖିତ ହୋଇଅଛି, ସେ ଚିରକାଳ ତାର ଚରମ ସିଦ୍ଧି ସମ୍ପାଦନ କରୁଥିବ । ମଧୁସୂଦନଙ୍କ ପୂର୍ବେ ଉତ୍କଳରେ ଶିଶୁପ୍ରାଣକୁ

କବିତାରେ ଅନୁପ୍ରାଣିତ କରିବାକୁ କେହି କବି ଲେଖନୀ ଧରି ନ ଥିଲେ ଏବଂ ପରେ ଯଦି କେହି ସେ ଚେଷ୍ଟା କରନ୍ତି, ତେବେ ତାଙ୍କୁ ପ୍ରଥମେ ମଧୁସୂଦନଙ୍କୁହିଁ ଗୁରୁରୂପେ ଗ୍ରହଣ କରିବାକୁ ହେବ ।

ଶିଶୁଗୀତିକାରେ କବି ଯେଉଁ ସବୁ ପ୍ରକୃତିବର୍ଣ୍ଣନା ଓ ଉପମାଦି ପ୍ରୟୋଗ କରିଅଛନ୍ତି, ତାହା ଏପରି ପ୍ରାଞ୍ଜଳ ଓ ସୁସ୍ପଷ୍ଟ ଯେ, ଶିଶୁ ପଢ଼ି ହୃଦୟରେ ଅଙ୍କିତ ହୋଇ ରହେ । ଛନ୍ଦମାଳାର 'ପ୍ରଭାତ' କବିତାର ନିମ୍ନୋକ୍ତ ବର୍ଣ୍ଣନାଟି ଅତି ପରିଚିତ ଓ ହୃଦୟଗ୍ରାହୀ ।

କୋଇଲି ଦମ୍ଭାନ୍ତି କଜଳପାଖର
କାକଳିକୁ ବନ୍ଦି ଅଣଇ ସମୀର ।
କାଆ କାଆ ରବେ ଘରେ ଘରେ ସାଇ
କୁଆଏ ବୁଲନ୍ତି ଜଗତ ଜଗାଇ ।

'ବସନ୍ତ' କବିତାରେ ମଧ୍ୟ—

ସୁନ୍ଦର ପଲ୍ଲବ ପୁଷ୍ପ ସ୍ତବକେ
ସର୍ବାଙ୍ଗ ମଣ୍ଡିତ ଦେଖି ଅଶୋକେ ।
ହଳଦିବସନ୍ତ ତଥି ଉପରେ
କରଇ ସଙ୍ଗୀତ ମଧୁର ସ୍ୱରେ ।
ରକ୍ତବର୍ଣ୍ଣ ରମ୍ୟ ପଲାଶ ବନ
ଦୂରରୁ ହରଇ ନୟନ ମନ ।
× × ×
ଦିବସ ରଜନୀ ପ୍ରଦୋଷ ଊଷା
ସର୍ବେ ଦିଶୁଛନ୍ତି ବସନ୍ତ ଭୂଷା ।

ବାଳକର ଦୃଷ୍ଟିରେ କବି ପ୍ରକୃତିକୁ ଯେପରି ଦେଖିଅଛନ୍ତି, ତାହାହିଁ ଲିପିବଦ୍ଧ କରି ଯାଇଅଛନ୍ତି ।

'ଗ୍ରୀଷ୍ମ' କବିତାରେ ମୃଗତୃଷ୍ଣାର ଉଲ୍ଲେଖଟି ଅତି ପ୍ରାସାଦ୍ୟ ଓ ମନୋହର ।

ନିର୍ଜନ ପ୍ରାନ୍ତରେ ଚଳନ୍ତେ ପଥିକ
ତୃଷା-ବିଭ୍ରାନ୍ତ-ନୟନେ
ଦୂରେ ନିରେଖଇ ରମ୍ୟ ମୃଗତୃଷ୍ଣା
ଅତି ଆନନ୍ଦିତ ମନେ ।
କଳାଭ୍ରମରକୁ ଜିଣି ନୀଳିମାରେ
ଦିଶେ ମୃଗତୃଷ୍ଣା ଜଳ
ଧାଆଁନ୍ତେ ପଥିକ ଅଦୃଶ୍ୟ ହୁଅଇ
ପଥିକ **ଆଶା** ବିଫଳ ।

ଛନ୍ଦମାଳା ଅପେକ୍ଷାକୃତ ବୟସ୍କ ବାଳକମାନଙ୍କ ଉଦ୍ଦେଶ୍ୟରେ ଲିଖିତ । ସୁତରାଂ ଏହାର ଭାଷା, ଭାବ ଓ ବର୍ଣ୍ଣନା ଶିଶୁମାନଙ୍କ ଉଦ୍ଦେଶ୍ୟରେ ଲିଖିତ କବିତାଗୁଡ଼ିକର ଭାଷା ଭାବ ପ୍ରଭୃତି ଅପେକ୍ଷା ଟିକିଏ କଠିନ ।

'ବର୍ଷା' କବିତାର

ଶ୍ୟାମଳ ଦୁର୍ବାଦଳେ ଶୋଭିତ ମହୀ,
ସାଧବବୋହୂ ତଥି ପଦର ଶୋଭଇ ।

× × ×

ପୁଷ୍ପେ ଶୋଭିତ ଛଣଦଣ୍ଡ କଅଁସ,
ସୁବର୍ଣ୍ଣ ଜିଣି କାନ୍ତି କି ମନୋହର !

ଅତି ମନୋରମ ! ଏହି ଋତୁରେ ଦେବେ ବର୍ଣ୍ଣନାକୁ ଗୋଟିଏ ସୁନ୍ଦର ଉପମାଦ୍ୱାରା କପରି ମନୋମୁଗ୍ଧକର କରିଅଛନ୍ତି ଦେଖନ୍ତୁ ।

ଏକାଳେ ଗିରି ଶୋଭା ନୟନ ହରେ,
ମଣ୍ଡିତ ଶୈଳଦେହ ଶୁଭ୍ର ନିର୍ଝରେ ।
ଶୁଭ୍ର ମେଘମୁକୁଟ ଶୋଭେ ମସ୍ତକେ,
ତହିଁ ପୁଣି ବଗୁଲା-ଶ୍ରେଣୀ ଝଟକେ ।

ଶରତର ଶୁଭ୍ର ଶୋଭା ବର୍ଣ୍ଣନାରେ ମଧ୍ୟ କବିଙ୍କ ପଟୁତା ଅତୁଳନୀୟ ।

କାଶତଣ୍ଡୀ ଫୁଲେ ମହୀ ଦିଶଇ ଧବଳ,
ସରୋବରେ ଫୁଟିଛନ୍ତି କୁମୁଦ କମଳ ।
ସୁନ୍ଦର ମାଳତୀ ଗଙ୍ଗଶିଉଳୀ ଝଟରେ
ଧବଳିତ ଉପବନ ଜନମନ ହରେ ।

ଏ କାଳରେ କୁମାରୀମାନଙ୍କର ଅନାବିଲ ସୁଷମା ବର୍ଣ୍ଣନାରେ କବି ସ୍ୱୀୟ ସୌନ୍ଦର୍ଯ୍ୟଗ୍ରାହିତାର ପରିଚୟ ପ୍ରଦାନ କରିଅଛନ୍ତି ଓ ସେଥିସଙ୍ଗରେ ସ୍ୱୀୟ ଅକଳୁଷ ହୃଦୟର ସ୍ୱଚ୍ଛତା ପରିସ୍ଫୁଟ କରି ପାରିଅଛନ୍ତି ।

ରଜନୀରେ କୁମାରୀଏ ମହା ଆନନ୍ଦରେ
ମଣ୍ଡିଣ ସୁନୀଳ କେଶ ଶୁଭ୍ର କୁସୁମରେ
ତାରକମଣ୍ଡିତ ନୀଳ ଗଗନକୁ ଚାହିଁ
ହରନ୍ତି ମାନସ ନାନା ରଙ୍ଗେ ଗୀତ ଗାଇ ।

ଶୁଭ୍ର-କୁସୁମମଣ୍ଡିତ ସୁନୀଳ କେଶ ସହିତ ତାରକମଣ୍ଡିତ ଶରତର ନୀଳଗଗନର ଯେ ମଧୁର ଉପମାର ଅବତାରଣା କରାଯାଇଅଛି, ସେଠାରେ ଉଭୟ ଉପମା ଓ ଉପମେୟ ଏକାନ୍ତ ପ୍ରୟୋଜ୍ୟ ଏବଂ ଦିବ୍ୟ ରସରେ ପରିପୂତ । ଆଧୁନିକ ସଭ୍ୟତାର ଜଣେ ପ୍ରଧାନ ଅଗ୍ରଣୀ ହୋଇ କବି ଗ୍ରାମ୍ୟ-ଦୃଶ୍ୟ ବର୍ଣ୍ଣନାରେ ଯେପରି ସିଦ୍ଧହସ୍ତତା ଦେଖାଇ-

ଅଛନ୍ତି, ସେଥିରୁ ଅନୁମିତ ହୁଏ, ସନ୍ଧ୍ୟାରେ ଅବଦକାଏବାକୁ ସେ ଗ୍ରାମ୍ୟ ସାରଲ୍ୟ ଅପେକ୍ଷା ବଡ଼ ଜ୍ଞାନ କରୁ ନ ଥିଲେ । 'ହେମନ୍ତ' କବିତାରେ ବର୍ଣ୍ଣିତ ଅଛି,

ପକ୍ୱଶାଳପୂର୍ଣ୍ଣ କେଦାର ଦେଖି କୃଷକଙ୍କଗଣେ
ଗୀତ ଗାଇ ଶସ୍ୟ କାଟନ୍ତି ଅତି ପ୍ରଫୁଲ୍ଲ ମନେ ।
ଖଳା କରି ଗ୍ରାମସୀମାରେ ଧାନ ଅମଳ କରି
ଗୃହକୁ ନିଅନ୍ତି ଆନନ୍ଦେ ବନ୍ଧୁଦସ୍ୟୁ ସ୍ମରି ।

ଦୃଶ୍ୟଟି ଯେପରି ଅତି ପରିଚିତ, ସେହିପରି ଅତି ସରଳ ଭାବରେ ବର୍ଣ୍ଣିତ । ଶିଶିର ଋତୁରେ ସୋରିଷ କିଆରିରେ ଶିଶିର ପଡ଼ି ଥିବାର ଅନେକେ ଦେଖିଥିବେ ଏବଂ ତାର ସୁଗନ୍ଧ ଅନେକେ ଲାଭ କରିଥିବେ । ଶୁଷ୍କ ଶୀତ-ଋତୁର ସେହି ନୟନମନହରଣକାରୀ ସୋରିଷ ଫୁଲକୁ କବି ଭୁଲି ନାହାନ୍ତି,

ସ୍ୱର୍ଣ୍ଣକାନ୍ତିଜିଣା ସୋରିଷ ଶତବର୍ଗ କୁସୁମେ
ରଞ୍ଜିତ ଅତି ଶୋଭିତ ଜନନୟନ ରମେ ।
କିବା ମନୋହର ସେ ଶୋଭା କାହିଁ ତା ପଟାନ୍ତର,
ଧରଣୀ ରାଣୀ କି ପିନ୍ଧିଛି ଚାରୁ ପୀତ ଅମ୍ବର ।

'ସତ୍ୟବ୍ରତ' 'ପରିଶ୍ରମ' 'ବିଦ୍ୟା' 'ସୁଶୀଳତା' ଆଦି କବିତାରେ କବି ସମ୍ପୂର୍ଣ୍ଣରୂପେ ଉପଦେଶକ ହୋଇ ପଡ଼ିଅଛନ୍ତି । ସ୍କୁଲମାଷ୍ଟର ଛାତ୍ରକୁ ସୁଶୀଳ ହେବା ପାଇଁ ଯେପରି ଆଦେଶ କରିଥାନ୍ତି, ଏଠାରେ ସେ ସେହିପରି । ସୁତରାଂ ଏଗୁଡ଼ିକରେ କବିତ୍ୱର କୌଣସି ଚମତ୍କାରିତା ଦେଖାଯାଏ ନାହିଁ ।

ଯଥା— ବାଳକେ ମୋର ବୋଲ କର,
ସତ୍ୟ ପାଳିବ ନିରନ୍ତର ।

ପୁନଶ୍ଚ—　　　ଅଳସ ପଣ ପରିହରି
　　　　　ଆନନ୍ଦେ ପରିଶ୍ରମ କରି ।

ବିଦ୍ୟା କବିତାଟିରେ ମଧ୍ୟ

　　　　　ବିଦ୍ୟା ଅଟଇ ମହା ଧନ,
　　　　　ବାଳକେ କର ଉପାର୍ଜନ ।

କିନ୍ତୁ "ଜନ୍ମ ମରଣ" କବିତାରେ କବି ଗୋଟିଏ ମହତ୍ତ୍ୱ ଭାବର ଅବତାରଣା କରିଅଛନ୍ତି । ଜନ୍ମକାଳରେ ଶିଶୁ କ୍ରନ୍ଦନ କରେ, କିନ୍ତୁ ବନ୍ଧୁସ୍ୱଜନମାନେ ହର୍ଷ ପ୍ରକାଶ କରନ୍ତି । ମୃତ୍ୟୁ ଜନ୍ମର ବିପରୀତ ଅବସ୍ଥା । ଗୋଟିକରେ ଆବିର୍ଭାବ ଏବଂ ଅନ୍ୟଟିରେ ତିରୋଧାନ । ସୁତରାଂ ଯେପରି ଘଟନା ମଧ୍ୟରେ ଆବିର୍ଭାବ ହୁଏ, ତାହାର ବିପରୀତ ଘଟନା ମଧ୍ୟରେ ତିରୋଧାନ ହେବା ଉଚିତ । ଅର୍ଥାତ୍ ଜନ୍ମ କାଳରେ ଶିଶୁ ଯେପରି କ୍ରନ୍ଦନ କରେ ଓ ଅନ୍ୟମାନେ ଆନନ୍ଦିତ ହୁଅନ୍ତି, ମରଣ ସମୟରେ ସେହିପରି ମନୁଷ୍ୟ ଯେପରି ହସି ହସି ମରି ପାରେ ଏବଂ ଅପର ବ୍ୟକ୍ତିମାନେ କ୍ରନ୍ଦନ କରନ୍ତି । ଜୀବିତ କାଳ ମଧ୍ୟରେ ଏହିପରି କାର୍ଯ୍ୟ କରିଯିବା ଉଚିତ, ଯେପରି ତାର ସେହି ମହତ୍ତ୍ୱ ପରିଣତି ହୋଇ ପାରେ ।

　　　　　ଜନନୀ ଗର୍ଭୁଁ ଯେଉଁ କ୍ଷଣି
　　　　　ଜନ୍ମି ଛୁଇଁଲ ଏ ଧରଣୀ ।
　　　　　ତୁମ୍ଭଙ୍କୁ ଦେଖି ହର୍ଷଭରେ
　　　　　ହସିଲେ କେତେ ନାରୀ ନରେ ।
　　　　　କିନ୍ତୁ ହେ ତୁମ୍ଭେ ମାତୃକୋଳେ
　　　　　କ୍ରନ୍ଦନ କଲ ମହାରୋଳେ ।
　　　　　ଏବେ ଦୁର୍ଲଭ ଏ ଜୀବନ
　　　　　ଏମନ୍ତେ କର ହେ ଯାପନ ।

ଯେଉଁଠେ ହେ ଶାନ୍ତଭାବେ ବସି
ଆନନ୍ଦେ ତୁମ୍ଭେ ହସ ହସି ।
ମୁଦିବ ଅନ୍ତେ ନେତ୍ର ଦୋଳେ,
କାନ୍ଦିବେ ତୁମ୍ଭ ମହାଶୋକେ
ଶୋକେ ଆକୁଳ କରନାହିଁ
ନୟନୁ ଢାଳି ଅଶ୍ରୁ ବାରି ।

ମଧୁସୂଦନ କେବଳ ଉପଦେଶକ ନ ଥିଲେ । ସ୍ୱୟଂ ସାଧକ ଥିଲେ । ସେ ବାଳକମାନଙ୍କୁ ଯେଉଁ ଅମୂଲ୍ୟ ଉପଦେଶାବଳୀ ଦାନ କରିଅଛନ୍ତି, ସେ ସକଳ ନିଜ ଜୀବନରେ ମଧ୍ୟ ଅନୁଶୀଳନ ଓ ସାର୍ଥକ କରି ଯାଇଅଛନ୍ତି । ସ୍ୱୀୟ ପାରିବାରିକ ଜୀବନରେ ସେ ଯେଉଁ ମନୋହର ଆଦର୍ଶ ରଖି ଯାଇଅଛନ୍ତି, ତାହାକୁହିଁ ଯେପରି ଭାଷାରେ ବ୍ୟକ୍ତ କରିଅଛନ୍ତି ।

ପିତା ମାତା ପରି ଆଉ କେ ଅଛି ସଂସାରେ,
ଧନ୍ୟ ସେ ଯେ ଦିଏ ପ୍ରାଣ ତାଙ୍କରି ସେବାରେ ।

ପୁନଶ୍ଚ—

ଭାଇ ଭଉଣୀଙ୍କଠାରେ ସ୍ନେହଭାବ ବହ
ତୋଷିବ ତାହାଙ୍କୁ ସଦା ମିଷ୍ଟ କଥା କହ ।

ମଧୁସୂଦନ ନିଜ ଗୃହକୁ ଯେପରି ସ୍ନେହ ଶ୍ରଦ୍ଧାରେ ସ୍ୱର୍ଗଭୁବନ କରି ଗଢ଼ିଥିଲେ, ଉତ୍କଳର ପ୍ରତି ପରିବାରକୁ ସେହିପରି କରିବା ତାଙ୍କର ବାସନା ଥିଲା । ସେଥିପାଇଁ ଶିଶୁମାନଙ୍କୁ ଅନୁରୋଧ କରିଅଛନ୍ତି,

ପାଳିବ ଆନନ୍ଦେ ସଦା ଗୁରୁଜନ କଥା
କଦାପି କାହାରି ମନେ ଦେବ ନାହିଁ ବ୍ୟଥା ।

କାରଣ,

ବୈକୁଣ୍ଠ ସମାନ ଅହା ଅଟେ ସେହି ଘର,
ପରସ୍ପର ସ୍ନେହ ଯହିଁ ଥାଏ ନିରନ୍ତର ।

---

## ବିଂଶ ପରିଚ୍ଛେଦ ।

### ବର୍ଣ୍ଣନାତ୍ମକ କବିତା ।

ବର୍ଣ୍ଣନାତ୍ମକ ଲେଖାରେ ମଧୁସୂଦନ ଯେଉଁ ସିଦ୍ଧହସ୍ତତା ଦେଖାଇଅଛନ୍ତି, ତାହା ସାଧାରଣ ନୁହେ । ସେ ମହାକାବ୍ୟ ଲେଖି ନାହାନ୍ତି, ସୁତରାଂ ମହାକାବ୍ୟର ବିଶାଳ ବର୍ଣ୍ଣନା ତାଙ୍କ କବିତାରୁ ଆଶା କରିବା ଉଚିତ ନୁହେ । କିନ୍ତୁ ତାଙ୍କର କ୍ଷୁଦ୍ର କବିତାଗୁଡ଼ିକରେ ଯେ ଯେ ବର୍ଣ୍ଣନାପଟୁତା ଦେଖାଇଅଛନ୍ତି, ତାହା ସାମାନ୍ୟ ଲେଖକ ପକ୍ଷରେ ସମ୍ଭବ ନୁହେ । କେଉଁଠାରେ ଭୀମ-ଶ୍ମଶାନର ରୁଦ୍ର ଭୈରବ ଦୃଶ୍ୟ, କେଉଁଠାରେ ବିମଳ ଉଷାର ଶାନ୍ତ ମଧୁର ପ୍ରକୃତି, କେଉଁଠାରେ ମହାପୁରୁଷମାନଙ୍କର ଶିକ୍ଷାପ୍ରଦ ଚରିତ୍ରଚିତ୍ରଣ ଆଦି ସକଳ କ୍ଷେତ୍ରରେ ତାଙ୍କ ଲେଖନୀର ମହତ୍ତ୍ୱ ଫୁଟି ଉଠିଅଛି । 'ନଗ୍ନ ପ୍ରାତ' କବିତାର ପ୍ରତି ଶ୍ଳୋକର ବର୍ଣ୍ଣନାଗୁଡ଼ିକ ଗୋଟିଏ ଗୋଟିଏ ଫଟୋ ପରି ପାଠକଚିତ୍ତରେ ଅଙ୍କିତ ହୋଇଯାଏ । ଚିତ୍ରଗୁଡ଼ିକ ନିତାନ୍ତ ସ୍ୱଦେଶୀ । ଯଥା—

କାହିଁ ଦେବମନ୍ଦିରେ ଭକ୍ତଗଣ ଗମ୍ଭୀରେ
ପଢ଼ନ୍ତି ସ୍ତବ ଶୁଦ୍ଧ ମନେ,
କାହିଁ ଲୋକ ଗହଳ କିବା ନିଶା ଚହଳ
କାହିଁ ଚଷନ୍ତି କୃଷୀ ଜନେ,
କାହିଁ ବା କୁଟେ ଗୃହାଳରେ
ପଢନ୍ତି ପୋଥି ଧୀରେ ଧୀରେ,

କାହିଁ ବସିଛି ହାଟ କାହିଁ ସ୍ନାନ ଘାଟ
ରଜତ ସୋପାନଶ୍ରେଣୀରେ ।

ଏଠାରେ ଗୃହମାନେ ଗୃହାଳରେ ଧୀରେ ଧୀରେ ପୋଥି ପଢିବା ବର୍ଣ୍ଣନାଟି ଅବଶ୍ୟ ଯଥାର୍ଥ ସ୍ୱାଭାବିକ ହୋଇ ପାରି ନାହିଁ । 'ଧୀରେ ଧୀରେ' ଶବ୍ଦ ପ୍ରୟୋଗରେ କବି କେବଳ ପଦ ମିଳନ କଲା ପରି ଅନୁମିତ ହୁଏ । କାରଣ ଗୃହାଳ ଗୃହ ସାଧାରଣତଃ ମହା କଳରବ କରି ଅଧ୍ୟୟନ କରିଥାନ୍ତି । କିନ୍ତୁ ବର୍ଣ୍ଣନାର ବାହାଦୁରୀ ପ୍ରତ୍ୟେକ ପଂକ୍ତିରେ ପରିଦୃଷ୍ଟ ହୁଏ । ଆଉ ମଧ୍ୟ—

କାହିଁ ନଉଡ ଧରି ଚରାଏ ଗୋବାଳୁରୀ
ଗଉଡ ମୁରଲି ବଜାଇ,
କାହିଁ ଧାନ ଅମଳ କରଇ କୃଷୀବଳ
ଝଳାରେ ବେଙ୍ଗଳା ପକାଇ,
କାହିଁ ବା ଚଣ୍ଡ କାନନରେ
ଭୀଷଣ ଶାର୍ଦ୍ଦୂଳ ରବରେ,
କାହିଁ ଭୀମ ଶ୍ମଶାନେ ଗୃଧ୍ର ଶୃଗାଳ ଶ୍ୱାନେ
ବୁଲନ୍ତି ବିକଟ ନାଦରେ ।

ଏହିପରି ଗୋଟିଏ ଗୋଟିଏ ଶ୍ଳୋକକୁ ନେଇ ସମ୍ପୂର୍ଣ୍ଣ ଗୋଟିଏ ଲେଖାଏଁ ଛବି ଅଙ୍କନ କରାଯାଇ ପାରେ ।

'ପଦ୍ମ' କବିତାଟିର ବର୍ଣ୍ଣନା ସ୍ୱଚ୍ଛ ଓ ପବିତ୍ର ଭାବର ଉଦ୍ରେକ କରାଏ । ଏହି ପୁଷ୍ପଟିର ବିମଳ ଶୋଭା ସୌରଭ କବି ପ୍ରାଣେ ପ୍ରାଣେ ଅନୁଭବ କରିଅଛନ୍ତି —

ଚଳ ଚଳ ସୁନୀଳ ସରସୀଜଳ,
ଚଳ ଚଳ ଶ୍ୟାମଳ ନଳିନୀଦଳ,

ଟଳ ଟଳ ଭାସ୍ୱର ରଶ୍ମି ଉଜ୍ଜ୍ୱଳ,
ତା ମଧ୍ୟେ ଟଳ ଟଳ ଶୁଦ୍ଧ କମଳ ।

କିନ୍ତୁ ଏ ସୁଷମାରାଶିରେ ସେ ନିଜକୁ କେବଳ ହଜାଇ ନାହାନ୍ତି, ସର୍ବଦା ସେ ଦୃଶ୍ୟମାନ ଜଗତରୁ ଯାହା କିଛି ପବିତ୍ର, ମଧୁର, ତାହା ବାଛି ବାଛି ନିଜ ଜୀବନରେ ପ୍ରୟୋଗ କରିବାକୁ ପ୍ରୟାସୀ ହୋଇ-ଅଛନ୍ତି ।

କଳୁଷ ପଙ୍କେ ମୁହିଁ କେବେହେଁ ମଳିନ,
କେମନ୍ତେ ପର ତୋର ହେବ ନଳିନ,
ପଙ୍କଜ ଅଟୁ ଶୁଦ୍ଧ ତେଣୁ ଭରସା,
ତୋ ପରି ଶୁଭ୍ର ହେବ ଲଭି ସୁଦଶା ।

କିନ୍ତୁ ସ୍ୱୟଂ ପବିତ୍ର ବା ଶୁଦ୍ଧ ହେବା ତାଙ୍କର ସିଦ୍ଧି ବା ପରିଣତି ନୁହେଁ । ଏହା ଏକ ଉଚ୍ଚତର ପରିଣତି ଲାଭ କରିବାର ଉପାୟ ମାତ୍ର ।

ଅନନ୍ତ ମହେଶ୍ୱରେ ମୋ ପ୍ରାଣସାଇଁ
ବୋଲି ରଜାବ, ସଦା ଥିବ ଅନାଇ ।

ଉପମାଟି ଅତି ସୁନ୍ଦର । ପଦ୍ମର ସକଳ ଅନାବିଳ ସୁଷମା ଓ ପୂତ ସୌରଭ ଯେପରି ତାର ପ୍ରାଣସାଇଁ ସବିତାଙ୍କ ଦର୍ଶନପାଇଁ ଏକ ଆୟୋଜନ ମାତ୍ର । କବିଙ୍କର ସେହିପରି ସକଳ ନୈତିକତା, ସକଳ ଶୁଦ୍ଧି ତାଙ୍କର ପ୍ରାଣସାଇଁ ଅନନ୍ତ ମହେଶ୍ୱରଙ୍କୁ ଲାଭ କରିବାର ସାଧନା । ପ୍ରାୟ ସକଳ ବର୍ଣ୍ଣନାତ୍ମକ କବିତା ଶେଷରେ ସେ ଏହିପରି ଏ ଜଡ଼ ପ୍ରକୃତିର ବର୍ଣ୍ଣନାକୁ ଭୁଲି ଯାଇ ଆତ୍ମା ସହିତ ପରମାତ୍ମାଙ୍କ ସମ୍ବନ୍ଧ ବ୍ୟାଖ୍ୟାନ କରିଅଛନ୍ତି ।

'ଶ୍ମଶାନ' କବିତାଟିରେ ମଧୁସୂଦନ ଯେଉଁ ଭୀଷଣ ରସର ଅବତାରଣା କରିଅଛନ୍ତି, ସେଥିରେ ତାଙ୍କୁ କେବଳ ଶାନ୍ତ, ସୁଶୀଳ, କୋମଳାତ୍ମା କବି କହିଲେ ଠିକ୍ ହେବ ନାହିଁ ।

ଅସ୍ଥିମାଳା ନରମୁଣ୍ଡେ ଧବଳିତ ଦେଶ,
ଭସ୍ମରାଶି ଚିତାନଳେ ବିକଟ ବିଶେଷ,
ଭୀମନାଦେ ଚଉପାଶେ ବେଢ଼ି ଶିବାଗଣ
କ୍ରୂର ହର୍ଷେ ଶବରାଶି କରନ୍ତି ଭକ୍ଷଣ ।

ଶ୍ମଶାନର ବିକଟ ଦୃଶ୍ୟ କବିଙ୍କ ଚିତ୍ତରେ ମୃତ୍ୟୁର ଛାୟା ଆନୟନ କରି ଯେପରି ସଂସାରର ଅନିତ୍ୟତା ପ୍ରତିଫଳିତ କରିଅଛି, ସେହିପରି ଶରତର ସୁବିମଳ ପ୍ରଭାତ ବିମଳ ଆନନ୍ଦରସରେ ତାଙ୍କ ପ୍ରାଣକୁ ଆପ୍ଲୁତ କରି ପକାଇଅଛି ।

ଗୁଡ଼ ବନ୍ଧ ନଗର ତଳେ
ଯିବା ଗୁଲ ଯେଉଁ ସ୍ଥାନେ ଗୋପାଳ କୃଷକମାନେ
ଆନନ୍ଦେ କାଟନ୍ତି ଦିନ, ସୁଖେନ୍ଦୁ ବିମଳ
ଯାହାଙ୍କର ଚିତ୍ତାକାଶେ ସର୍ବଦା ଉଜ୍ଜ୍ୱଳ ।

'ଶରତ ପ୍ରଭାତ' କବିତାଟି କବିଙ୍କର ଏକ ଅମର ଆନନ୍ଦ ମୁହୂର୍ତ୍ତର ଉତ୍ସ । ସେଥିପାଇଁ ବର୍ଣ୍ଣନାଗୁଡ଼ିକ ଏତେ ଜୀବନ୍ତ ହୋଇ ପାରିଅଛି ।

ହାସ୍ୟମୟୀ ଉଷା ଆଗମନେ
ତେଜିଣ ବେଗେ ପଲ୍ୟଙ୍କ ଗୋଧନ ଘେନି ଗଉଡ଼
ବଜାଇ ବଜାଇ ବଂଶୀ ସୁଲଳିତ ସ୍ୱନେ
ଗୋଷ୍ଠକୁ ଗମଇ ଧୀରେ ଆହ୍ଲାଦିତ ମନେ ।

ଶରତ କାଳଟି ଉତ୍କଳ ରମଣୀମାନଙ୍କ ପକ୍ଷରେ ବର୍ଷ ମଧ୍ୟରେ ଗୋଟିଏ ଉତ୍ସବର ସମୟ । କୁମାରୀଠାରୁ ଆରମ୍ଭ କରି ବୃଦ୍ଧା ପର୍ଯ୍ୟନ୍ତ ସମସ୍ତେ ଓଷା ପୂଜାଦିରେ ମାତିଥାନ୍ତି । ସୁତରାଂ କବିଙ୍କର ଏହି ଚିତ୍ରଟି ବଡ଼ ସ୍ୱଦେଶୀ ଓ ହୃଦୟସ୍ପର୍ଶୀ ହୋଇଅଛି ।

ନଦୀକୂଳେ ସେବେବରଷରେ
ଧବଳା କୁମାରୀଟେସ୍ତୁ		ତୋଳି ନୀଳ କୁବଳୟ
ଦୂଳନ୍ତୁ ଦେବ ଶଙ୍କରେ ବାଲୁକାମନ୍ଦିରେ,
ଜଳାଦ୍ରି କୁନ୍ତଳ ଧୀରେ କମ୍ପଇ ସମୀରେ ।

ନାୟିକାରୂପ ବର୍ଣ୍ଣନାରେ ମଧୁସୂଦନ ଯେ ଇଚ୍ଛା କରି ନିଜର ପ୍ରବୃତ୍ତିକୁ ବାଧା ଦେଇ ନୀରବ ରହିଅଛନ୍ତି, ଏହା ମନେ ହୁଏ ନାହିଁ । ସେଥିରୁ ବିରତ ହେବା ଯେପରି ତାଙ୍କର ପ୍ରକୃତିଗତ ଏବଂ ତାହା ବର୍ଣ୍ଣନା କରିବାକୁ ଯିବା ତାଙ୍କ ପ୍ରକୃତିର ପ୍ରତିକୂଳାଚରଣ । ଅନ୍ୟ ଯେ କେତୋଟି ସ୍ଥଳରେ ଏହି ଚିତ୍ର ଅବତାରଣା କରିଅଛନ୍ତି, ସେଠାରେ ଯୁବତୀର ଉଦ୍ଦାମ ପ୍ରବୃତ୍ତିର ( Passion ) ଗନ୍ଧ ନାହିଁ, କୁମାରୀର ଅନିନ୍ଦ୍ୟ କମନୀୟତାରେ ତାହା ମହିମାନ୍ୱିତ । 'ଟିକରି' ବର୍ଣ୍ଣନାରେ ମଧ୍ୟ

ରଜନୀରେ କୁମାରୀଏ ମହା ଆନନ୍ଦରେ
ମଣ୍ଡିଣେ ସୁନୀଳ କେଶ ଶୁଭ୍ର କୁସୁମରେ ।

ପାଠକଚିତ୍ତରେ ତୂତ ମଧୁର ରସର ସଞ୍ଚାର କରେ ।

ମଧୁସୂଦନଙ୍କର ବର୍ଣ୍ଣନା ଜଟିଳ ନୁହେ । ସେ ଯେପରି ସରଳ ଭାବରେ ଅନୁଭବ କରିଅଛନ୍ତି, ସେହିପରି ସରଳ ଭାବରେ ପ୍ରକାଶ କରିଅଛନ୍ତି । 'ମହାଦେବୀ ଭିକ୍ଟୋରିୟା' କବିତାରେ ତାଙ୍କର ସରଳ ରାଜଭକ୍ତିର ପରିଚୟ ମିଳୁଅଛି । କୌଣସି ରାଜାନୁଗ୍ରହ-ପ୍ରାପ୍ତି ଲାଳସାରେ ଯେ ସେ ଏହା ଲେଖିଥିଲେ, ସେପରି ମନେ ହୁଏ ନାହିଁ । ସେ ଭିକ୍ଟୋରିୟାଙ୍କୁ ଜନନୀରୂପରେ ଦେଖିଅଛନ୍ତି ଏବଂ ତାଙ୍କର ତଦ୍‌ଗତ-ଭାବ ପ୍ରତି ଛନ୍ଦରେ ପ୍ରକାଶିତ ହୋଇ ପଡ଼ୁଅଛି । ଏଥିରେ ରାଜଭକ୍ତିର ଛଳନା ନାହିଁ । ଏହା ଭାରତୀୟର ବହୁ ପ୍ରାଚୀନ ରାଜଭକ୍ତି । ରାଜାଙ୍କୁ

ପିତା, ପାଳକ ଓ ଦେବତା ବୋଲି ଭାରତବାସୀ ଯେଉଁ ପୂଜା କରିଥିଲେ, ମଧୁସୂଦନ ସେହି ଭକ୍ତିପୂର୍ଣ୍ଣ ପ୍ରାଣରେ ଅନୁପ୍ରାଣିତ ।

"ଯା ନାମ ମହିମା ମଣ୍ଡିମଣ୍ଡଳେ,
ଯା ନାମର ଶାନ୍ତ ତପନତଳେ,
ଯା ନାମ-ମାଧୁରୀ ମାନବ ପ୍ରାଣେ
ଜ୍ୱଳନ୍ତ ଜୀବନ୍ତ ଧ୍ରୁବ ପ୍ରମାଣେ
ଯାର ପ୍ରାଣେ ପ୍ରମାଣିତ,
ସେହି ମହାଦେବୀ ମାତା ଭିକ୍ଟୋରିଆ
ଭବଧାମୁଁ ତିରୋହିତ ।"

ବ୍ରିଟିଶ ରାଜଭକ୍ତର ପରମ ଶତ୍ରୁ ମଧ୍ୟ କବିତାଟି ପାଠ କରି ମାତାର ମୃତ୍ୟୁରେ ପୁତ୍ରର ଯେ ଦୁଃଖ ଓ ବିଷାଦ, ତାହା ମୁହୂର୍ତ୍ତକପାଇଁ ହେଲେ ଅନୁଭବ କରିବେ । ମହାଦେବୀ ଭିକ୍ଟୋରିଆ ୧୯୦୧ ସାଲରେ ଲିଖିତ ହୋଇ ଥିଲା । ପୁତ୍ରସ୍ନେହ ବନ୍ଧୁ ପର କାଳର ଲେଖା ।

କଳ୍ପ କବିତାବଳୀ ଯାହା କି ୧୮୭୩।୭୪ ମଧ୍ୟରେ ଅର୍ଥାତ୍ କବିଙ୍କର ୨୦।୨୧ ବର୍ଷ ବୟସ ସମୟରେ ଲିଖିତ ହୋଇଥିଲା, ତାହାର ଭାବ ଓ ବର୍ଣ୍ଣନାରୁ ସୁସ୍ପଷ୍ଟ ହୁଏ, ମଧୁସୂଦନ ଏହି ସମୟରୁହିଁ କବି ଆସନରେ ପ୍ରତିଷ୍ଠିତ ହୋଇ ପାରିଥିଲେ । କବିତାବଳୀର 'ଶ୍ମଶାନ' ଓ 'ଶରତ୍ ପ୍ରଭାତ' କବିତାର କିଛିହି ସୂଚନା ଉପରେ ଦିଆଯାଇ-ଅଛି । 'ସୀତାବନବାସ', 'ନିଶୀଥଚନ୍ଦ୍ରୀ' ଓ 'ଜୀବନଚିନ୍ତା' ପ୍ରଭୃତି କବିତା ମଧ୍ୟ ଏହାର ଅନ୍ତର୍ଗତ । ସୀତାବନବାସରେ କବି ଯେ କରୁଣ-ରସର ଅବତାରଣା କରିଅଛନ୍ତି, ତାହା ବଡ଼ ହୃଦୟସ୍ପର୍ଶୀ । ବାଲ୍ୟା-ବସ୍ଥାରେ ଏହା ପାଠ କରି ଅନେକ ବାଳକଙ୍କର ଚକ୍ଷୁରୁ ଲୋତକ ଝରିଥିବ ।

"ଚରଣ-ପଦ୍ମତଳୁ ଦୟାସାଗର,
ସତେ କି ଏ ଦାସୀକି କଲ ଅନ୍ତର ।
କେମନ୍ତେ କହ ପ୍ରଭୁ, ବଞ୍ଚିବି ଦିନ,
ହରାଇ ସେ ଯୁଗଳ ପଦନଳିନ ।
କାହିଁ ଶରଣ ଅଛି ହେ ରଘୁରାଜ,
ଜାନକୀ ଅଭାଗିନୀ ପଶିବ ଆଜ ।"

ଇତ୍ୟାଦି ପଂକ୍ତିଗୁଡ଼ିକରେ ସୀତାଙ୍କର ଯେ ଶୋକ ବର୍ଣ୍ଣିତ ହୋଇଅଛି, ତାହା ଅତ୍ୟନ୍ତ ମର୍ମନ୍ତୁଦ ।

ମଧୁସୂଦନ ଉତ୍କଳର କେତେକ ବିଶିଷ୍ଟ ଖ୍ୟାତନାମା ପୁରୁଷଙ୍କ ସମ୍ବନ୍ଧରେ ଶୋକଶ୍ଳୋକ ଓ ପ୍ରଶଂସାବାକ୍ୟ ଉଚ୍ଚାରଣ କରି ସେମାନଙ୍କୁ ଯେପରି ଧନ୍ୟ କରି ଯାଇଅଛନ୍ତି, ନିଜର ଗୁଣଗ୍ରାହିତା ଓ ସ୍ୱଦେଶପ୍ରେମିକତାର ପରିଚୟ ମଧ୍ୟ ଦେଖାଇଅଛନ୍ତି । ଉତ୍କଳର ଗଡ଼ଜାତ ରାଜ-ସଭାମାନଙ୍କରେ ପଣ୍ଡିତମାନେ ଯେପରି ତୋଷାମୋଦପୂର୍ଣ୍ଣ ରାଜ-ପ୍ରଶସ୍ତି ରଚନା କରି ସ୍ୱୀୟ ପରିତୁଷ୍ଟି ଆକାଂକ୍ଷାରେ ରାଜାଙ୍କର ପରିତୁଷ୍ଟି ବିଧାନ କରିଥାନ୍ତି, ମଧୁସୂଦନଙ୍କୁ ସେପରି ସେ ଦୃଷ୍ଟିରେ କେହି ନ ଦେଖନ୍ତି । କାରଣ, ଯେଉଁମାନେ ଯେଉଁ ସବୁ ଗୁଣବର୍ଜିତ, ସେମାନଙ୍କଠାରେ ସେ ସମସ୍ତ ଗୁଣର ଆରୋପ କଲେ ତାହା ତୋଷାମୋଦ ହୁଏ । ମଧୁସୂଦନ 'ଗୁଣର ଗ୍ରାହକ' ଥିଲେ । ଗୁଣଶୂନ୍ୟ ପୁରୁଷର ନାମୋଲ୍ଲେଖ ପର୍ଯ୍ୟନ୍ତ ସେ କରିବାକୁ ଯାଇ ନାହାନ୍ତି । ଅଛି ମଧ୍ୟ ସେ କେବଳ ରାଜାମାନଙ୍କର ପ୍ରଶଂସାଗାନ କରିବାକୁ ଯାଇ ନାହାନ୍ତି । ଉତ୍କଳର ଯେ କେତେଗୋଟି ପୁଣ୍ୟାତ୍ମା ପୁରୁଷ ଗୁଣୀ ବୋଲି ସେ ଯୁଗରେ ପରିଚିତ ହୋଇଥିଲେ, କାହାରିକୁ ସେ ବାଦ୍ ଦେଇ ନ ଥିଲେ । 'ଭଞ୍ଜଭୂମିପତି ଶ୍ରୀରାମଚନ୍ଦ୍ର,' 'ଦେବମନା ଶ୍ରୀ ସଚ୍ଚିଦାନନ୍ଦ ଦେବ' 'ଉତ୍କଳଗଗନ-ରବି ଶ୍ରୀ ସୁଦଳଦେବ' 'ଢେଙ୍କାନାଳ ରାଜ୍ୟମଣ୍ଡଳେଶ୍ୱର

ଶ୍ରୀ ଶୂରପ୍ରତାପ ଦେବ' ଏମାନେ ବିଦ୍ୟା, ବୁଦ୍ଧି ଓ ବ୍ୟବହାରଦ୍ୱାରେ ଉତ୍କଳ ରାଜନ୍ୟବର୍ଗଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ଥିଲେ ଏବଂ ଅଦ୍ୟାପି ଏମାନଙ୍କର ସ୍ଥାନ ପୂରଣ ହୋଇ ନାହିଁ । ସୁତରାଂ ଏମାନଙ୍କର ଜୀବନ ଉତ୍କଳବାସିଙ୍କ ପକ୍ଷରେ ଅଳ୍ପ ଦାମୀ ନୁହେଁ ।

ମଧୁସୂଦନ ଏହି ପ୍ରାତଃସ୍ମରଣୀୟ ରାଜନ୍ୟମଣ୍ଡଳୀଙ୍କର ଯଶୋଗାନ ସଙ୍ଗେ ସଙ୍ଗେ କର୍ମଯୋଗୀ ଗୌରୀଶଙ୍କର, ସରସ୍ୱତୀ ଫକୀରମୋହନ, ଦେବାତ୍ମା ପ୍ୟାରୀମୋହନ ଏବଂ 'ଉତ୍କଳ-ନିସର୍ଗ-ଲକ୍ଷ୍ମୀ-ଦେବୀ-ପୁରୋହିତ ରସଜ୍ଞ କବି' ରାଧାନାଥଙ୍କର ଜୟଗୀତି ଗାନ କରିଅଛନ୍ତି । ସେହିପରି 'କବିକୁଳୋଦ୍ଭବ ଭବଭୂତି', 'କଳ୍ପନା-ନନ୍ଦନ-ବନ-ବିହାରରସିକ କବୀନ୍ଦ୍ର କାଳିଦାସ' ଓ 'ବ୍ରହ୍ମପ୍ରାଣ, ବ୍ରହ୍ମସଖା ମହର୍ଷି ଦେବେନ୍ଦ୍ରନାଥ'ଙ୍କୁ ସ୍ୱୀୟ ଭକ୍ତିନତ ଅନ୍ତରର ନତି ଜ୍ଞାପନ କରିଅଛନ୍ତି ।

---

## ଏକବିଂଶ ପରିଚ୍ଛେଦ ।

### ବସନ୍ତଗାଥା ।

ଉତ୍କଳ ସାହିତ୍ୟଭଣ୍ଡାରରେ ମଧୁସୂଦନଙ୍କର ଗୋଟିଏ ବିଶିଷ୍ଟ ଦାନ 'ବସନ୍ତଗାଥା' । ଏହା ୧୯୦୧ ମସିହାରେ ପ୍ରକାଶିତ ହେଲେହେଁ ଏଥିର ଅନେକ କବିତା ପ୍ରକାଶର ବହୁ ପୂର୍ବେ ଭିନ୍ନ ଭିନ୍ନ ସମୟରେ ଲିଖିତ ହୋଇଥିଲା । ବସନ୍ତଗାଥାର କବିତାଗୁଡ଼ିକ ଭାଷାରେ, ଭାବରେ, ଛନ୍ଦରେ ସାହିତ୍ୟରେ ଅଭିନବ ରସ ସୃଷ୍ଟି କରିଅଛି । ଏଗୁଡ଼ିକ କ୍ଷୁଦ୍ର ହେଲେହେଁ ପ୍ରତ୍ୟେକେ ପୂର୍ଣ୍ଣାଙ୍ଗ, ଗମ୍ଭୀର ଭାବର ବ୍ୟଞ୍ଜକ । କବିତାଗୁଡ଼ିକ ଚଉଦ ଅକ୍ଷର ଏବଂ ଚଉଦଟି ପଂକ୍ତିରେ ସମାପ୍ତ ହୋଇଅଛି ।

ଇଂରାଜୀ ସନେଟ୍ ଅନୁକୃତିରେ ଲିଖିତ ଏହି ଚତୁର୍ଦ୍ଦଶପଦୀ ସନେଟ୍-ଗୁଡ଼ିକରେ ଖାଣ୍ଟି ଇଟାଲୀୟ ଛାଞ୍ଚରେ କୌଣସି କବିତା ଲିଖିତ ହୋଇ ନାହିଁ । କେବଳ ସେକ୍ସପିୟର-ପେଟ୍ରାର୍କ ମିଶ୍ରିତ ରୀତିର ଅନୁସରଣରେ କବିତାଗୁଡ଼ିକ ଲିଖିତ ।

ବସନ୍ତଗାଥାରେ ସର୍ବମୋଟ ୪୦ଟି ଚତୁର୍ଦ୍ଦଶପଦୀ କବିତା ପ୍ରକାଶିତ ହୋଇଅଛି । ଏଗୁଡ଼ିକରେ କବିଙ୍କର ଯେଉଁ ସୁରୁଚି, ନିଷ୍ଠା ଓ ସଂଯମ ପ୍ରକଟିତ ହୋଇ ପାରିଅଛି, ଉତ୍କଳ ସାହିତ୍ୟରେ ତାହାର ତୁଳନା ନାହିଁ । କିନ୍ତୁ କବିତା ହିସାବରେ ଏଗୁଡ଼ିକ 'ହିମାଚଳେ ଉଦିତ ଉତ୍ସବ' କିମ୍ବା 'ଋଷିପ୍ରାଣେ ଦେବାବତରଣ' କବିତାର ସମକକ୍ଷ ନୁହେଁ । କାରଣ, ଏ ଦୁଇଟି କବିତା କେବଳ ମଧୁସୂଦନଙ୍କ ଗ୍ରନ୍ଥାବଳୀରେ ଉତ୍କୃଷ୍ଟ ନୁହେଁ, ଏହାର ସ୍ଥାନ ବିଶ୍ୱ-ସାହିତ୍ୟର ରତ୍ନଗୁଡ଼ିକ ମଧ୍ୟରେ ନିର୍ଣ୍ଣୀତ ହୋଇ ପାରେ । ମଧୁସୂଦନଙ୍କର ସମଗ୍ର ଜୀବନୀ ଆଲୋଚନା କଲେ ତାଙ୍କର ଧର୍ମଜୀବନ ଓ କାବ୍ୟଜୀବନ ଦୁଇଟି ଉତ୍କୃଷ୍ଟ ବୋଲି ସନ୍ଧାନ ମିଳେ । ଏ ଦୁଇର ସର୍ବୋତ୍କୃଷ୍ଟ ସାମଞ୍ଜସ୍ୟ ଉପରୋକ୍ତ ଦୁଇଟି କବିତାରେ ଯେପରି ନିପୁଣତା ର ସହିତ ଲୀଳାୟିତ, ତାଙ୍କ ରଚିତ ଅନ୍ୟ କୌଣସି କବିତାରେ ଠିକ୍ ସେହିପରି ଦେଖିବାକୁ ମିଳେ ନାହିଁ । ଭାଷା, ଭାବ ଓ ରଚନାଶୈଳୀର ଯେଉଁ ମୌଳିକତା ଏ ଦୁଇ କବିତାରେ ମିଳେ, ସେଥିରୁ ମନେ ହୁଏ, ଏ ଦୁଇଟି ମଧୁସୂଦନଙ୍କ ଜୀବନର ସର୍ବଶ୍ରେଷ୍ଠ ମୁହୂର୍ତ୍ତର ପ୍ରକାଶ ।

ଯାହାହେଉ ଉତ୍କଳ ସାହିତ୍ୟରେ ବସନ୍ତଗାଥା ଗୋଟିଏ ନୂତନ ଦାନ । ଉତ୍କଳ ସାହିତ୍ୟର ଇତିହାସରେ ମଧୁସୂଦନହିଁ ଚତୁର୍ଦ୍ଦଶ-ପଦୀ ସନେଟର ପ୍ରବର୍ତ୍ତକ ବୋଲି ଉଲ୍ଲିଖିତ ରହିବେ । ଦେବାସ୍ଥ ପ୍ୟାରୀମୋହନ, ବାମଣ୍ଡେଶ ରାଜା ଶ୍ରୀ ସୁଢ଼ଳଦେବ, କବି ରାଧାନାଥ, ଫକୀରମୋହନ ପ୍ରଭୃତି କେତେଗୋଟି ବ୍ୟକ୍ତିଗତ କବିତା ଛାଡ଼ିଦେଲେ

ବାଳକଗୁଡ଼ିକ ଭିନ୍ନ ଭିନ୍ନ ବିଷୟରେ ଲିଖିତ । ସେଗୁଡ଼ିକରେ ମଧୁସୂଦନଙ୍କର ବିଶ୍ୱାସ ଓ ଧାରଣା ସ୍ଥାନେ ସ୍ଥାନେ ପ୍ରକଟିତ ହୋଇ ପଡ଼ିଅଛି । ରଚନାପଦ୍ଧତି ଅତି ସରଳ ଓ ସୁବୋଧ୍ୟ । ମଧୁସୂଦନଙ୍କ ଜୀବନର ବିଭିନ୍ନ ସମୟର ଘଟନା ଓ ଚିନ୍ତାଧାରାର ସୂଚନା ଏଗୁଡ଼ିକରୁ ମିଳିଥାଏ । ଅନେକଗୁଡ଼ିଏ କବିତାରୁ ସ୍ପଷ୍ଟ ଅନୁମିତ ହୁଏ, ମଧୁସୂଦନ ଜୀବନରେ ବାରମ୍ବାର ବିଷାଦବାଦଦ୍ୱାରା ଆକ୍ରାନ୍ତ ହୋଇ-ଅଛନ୍ତି ଏବଂ ଶେଷରେ ଜୟୀ ହୋଇ ଆନନ୍ଦବାଦ ଗ୍ରହଣ କରିବାପାଇଁ ତୁମୁଳ ସଂଗ୍ରାମ କରି ଯାଇଅଛନ୍ତି । 'ନବ ବର୍ଷ' କବିତାଟିରେ ଏ ଭାବ ସୁସ୍ପଷ୍ଟ ହୋଇ ପାରିଅଛି । ପୁରାତନ ବର୍ଷକୁ ବିଦାୟ ଦେବା ସଙ୍ଗରେ ଅତୀତ ସୁଖ ଦୁଃଖର ଭାବନା କବିଚିତ୍ତକୁ ବ୍ୟଥିତ କରୁଅଛି ।

"ଏଇ ତ ମେଲାଣି ଘେନି କାଳ ପରପାରେ
ଗଲା ପୁରାତନ ବର୍ଷ ଚିରସଖା ସୁଖଦୁଃଖମୟ ଏ ସଂସାରେ
ବିଷାଦ-ଭାବନା-ଘନେ ଆବରି ମୋ ଚିତ୍ତ ।
ଏ ଜୀର୍ଣ୍ଣ ଜୀବନ ବନ୍ଧୁ ରୁଦ୍ଧଦ୍ୱାର ଗେହେ
ଏକାକୀ ରହିଛି ପଡ଼ି ନୈରାଶ୍ୟଜଡ଼ିତ ।"

କବିଙ୍କର ମଧୁର ଅତୀତ ଗତ ହୋଇଅଛି । ଯୌବନର ଆନନ୍ଦ ଉତ୍ସାହ ଅତିକ୍ରମ କରି କବି ନିଜକୁ ଜୀର୍ଣ୍ଣ ଓ ସଙ୍ଗିହୀନ ଜ୍ଞାନ କରୁଅଛନ୍ତି । ତଥାପି

"ଯେ ଫୁଲ ନା ଫୁଟିତେ
ଲୁଟିଲେ ଧରଣୀତେ
ଯେ ନଦୀ ମରୁପଥେ
ହାରିଲେ ଧାର
ଜାନିହେ ଜାନିହେ ତା ହୟନି ହାର ।"

ତଥାପି କବିର ଆଶା ଓ ବିଶ୍ୱାସ ଏହି କ୍ଷତି ପୂରଣ କରିବା ପାଇଁ ଯଥେଷ୍ଟ ରହିଅଛି ।

"ବରଜ୍ଞି ଜାଗଣା ମନୁ ଶୁଣ ହେ ସମ୍ବାଦ,
ଆନନ୍ଦମୟଙ୍କ ଅଶାମୟ ଆଶୀର୍ବାଦ ।
× × ×
ଜଗତର ସେବା-ବ୍ରତେ ବସର୍ଜି ଜୀବନ
ଧନ୍ୟ ହୁଅ, ଈଶ୍ୱରର ଏ ଆଶିଷ ବଚନ ।'

ମନୁଷ୍ୟ ଯେ ଅମୃତର ସନ୍ତାନ, ମନୁଷ୍ୟର ସୃଷ୍ଟି ଯେ ଆନନ୍ଦର ସୃଷ୍ଟି, ଏଥିରେ ମଧୁସୂଦନଙ୍କର ଦୃଢ଼ ବିଶ୍ୱାସ ଥିଲା । କିନ୍ତୁ ମାନବର କୁକର୍ମତା ସେହି ସ୍ୱଚ୍ଛ ମନ୍ଦାକିନୀ ଧାରାକୁ ପଙ୍କିଳ କରିଦେଏ । ମଧୁସୂଦନ ବର୍ତ୍ତମାନ ଅତୀତର ମନୋହାରୀ ରୂପକୁ ଦର୍ଶନ କରୁ ନାହାନ୍ତି, ତାହାର ମଳିନ ଚକଳାଙ୍ଗ ରୂପ ତାଙ୍କ ଚକ୍ଷୁ ସମ୍ମୁଖରେ ପ୍ରକଟିତ, ସେଥିଲାଗି 'ଅତୀତ' କବିତାରେ ତାଙ୍କର ଦୁଃଖ—

ମଳିନ ଆଚଳ ସବୁ ଅତୀତ ଜଗତ,
କାହିଁ ତୁ ପାଇବୁ ତହିଁ ଶାଶ୍ୱତ ସ୍ୱଚ୍ଛକୁ !

କିନ୍ତୁ ସେଥି ସଙ୍ଗେ ସଙ୍ଗେ ସାନ୍ତ୍ୱନା ଲାଭ କରିଅଛନ୍ତି—

ସ୍ୱଚ୍ଛ ପ୍ରେମ-ମନ୍ଦାକିନୀ ବହାଇଛି ଆଣି
ସଦା ତୋ ଜୀବନେ ଯେବେ ସ୍ୱର୍ଗ ଭୁବନେ ।

'କ୍ଷମାସାଗର', 'ଚଣ୍ଡିଦେବ' ଓ 'ଜଗ୍ର ଆକ୍ରମଣ' କବିତାରେ ମଧ୍ୟ ଏହି ଭାବ ପରିସ୍ଫୁଟ ହୋଇଅଛି । ମନୁଷ୍ୟର ପାପଭାର ଯେତେ ଅଧିକ ହେଉ, ସେ ସେହି କ୍ଷମାସାଗର ବିଶ୍ୱନିୟନ୍ତାଙ୍କଠାରେ ଆତ୍ମସମର୍ପଣ କରି ପାରିଲେ ସମସ୍ତ କ୍ଷାଳିତ ହୋଇଯିବ । ସେଥିପାଇଁ ତାର ଭକ୍ତି ଓ ବିଶ୍ୱାସ ଲୋଡ଼ା । ଅବିଶ୍ୱାସୀହିଁ ଚିରକାଳ କଷ୍ଟଭୋଗୀ । ମଧୁସୂଦନଙ୍କର ଏହି ବିଶ୍ୱାସ ସେହି ଅଜ୍ଞେୟ ଅନନ୍ତ ସ୍ୱରୂପଙ୍କ ମୁଖରେ କଥା କୁହାଇ-ଅଛି ।

ନିଃଶେଷ ମୋ ଷମାସିନ୍ଧୁ ଜଳେ ବୁଡ଼ିଯିବ
ଫିଙ୍ଗି ଦେଲେ ମେରୁ ସମ ତୋର ପାପଭାର ।

'ବନ୍ଧଚ୍ଛେଦ' କବିତାଟିରେ ମଧୁସୂଦନ ବନ୍ଧୁଙ୍କର ପତ୍ନୀବିୟୋଗରେ ନିଜେ ଶୋକାକୁଳ ହୋଇ ବନ୍ଧୁଙ୍କୁ ଏବଂ ଆପଣାକୁ ସାନ୍ତ୍ୱନା ଦାନ କରିଅଛନ୍ତି । କବିତାଟି କ୍ଷୁଦ୍ର ହେଲେହେଁ ଗ୍ରନ୍ଥାବଳୀରେ ଗୋଟିଏ ଅମୂଲ୍ୟ ରତ୍ନ । ଚଉଦଟି ଧାଡ଼ିରେ ମଧୁସୂଦନ ଚଉଦ ପୃଷ୍ଠାର କଥା କହି ପାରିଅଛନ୍ତି । ଯେ ଧନହୀନ ଦରିଦ୍ର, ତାର ହଜିଯିବାକୁ ସଂସାରରେ କିଛି ନାହିଁ ।

"ହଜି ନାହିଁ ଯାର କେବେହେଁ କିଛିହେଁ ରତନ,
ଏ ମର୍ତ୍ତ୍ୟ ସଂସାରେ ସେହି ହୀନ ଅକିଞ୍ଚନ ।"

ତଦପେକ୍ଷା ଦରିଦ୍ର ଯେ ହଜାଇ ଦେଇ ସଙ୍ଗେ ସଙ୍ଗେ ଭୁଲିଯାଏ ଏବଂ ସର୍ବୋପରି ଦରିଦ୍ର ଯେ ହଜାଇ ଦେଇ ପାସୋରିବା ପାଇଁ ଇଚ୍ଛା କରେ । କିନ୍ତୁ ଧନୀ କିଏ ?

"ଶୋକର ଅସୀମ ମସୀମୟ ଅନ୍ଧକାରେ
ପ୍ରେମର ପ୍ରଦୀପ ଜାଳି ମର୍ମବେଦନାରେ
ଯେ ଜନ ଜଗଇ ଶିବରାତ୍ରି-ଜାଗରଣେ
ଅଶ୍ରୁପୂତ ପ୍ରେମମନ୍ତ୍ରେ ହୃଦୟରତନେ,
ସେହି ଏକା ଏ ଜଗତେ ମହାଧନେ ଧନୀ ।"

ଜରା ଆକ୍ରମଣରେ କବିଚିତ୍ତ ଅବସନ୍ନ ହୋଇ ପଡ଼ୁଅଛି, ସର୍ବାଙ୍ଗ ଶକ୍ତିହୀନ, ଦୀପ୍ତିହୀନ ହୋଇ ଯାଉଅଛି !

"ଶକ୍ତିହରା ଜରା ତୁହିଁ ଇଲାଣି ଦେହପୁର,
ଅଲକ୍ଷିତେ ବଳ ମୋର କରୁଅଛୁ ଚୁରି,

ଯୌବନ ପ୍ରାସାଦ ଭାଙ୍ଗିଛି ଅଳ୍ପ ଆଘାତରେ
ଭାଙ୍ଗି ପଡ଼ୁଅଛି ନିତ କର୍ମ ଥରଥରେ ।
× × × ×
ବାଧୁଅଛି ବାସନାକୁ ଯୌବନ ବିରହ,
ବିକଳେ କାନ୍ଦୁଛି ତାହା ତେଣୁ ଅହରହ ।”

ସୀମାରେ ହିଁ ଦୁଃଖ, ଅସୀମରେ ଆନନ୍ଦ, କବି ଅନ୍ତରେ ଅନ୍ତରେ ଏହି ଅସୀମର ସନ୍ଧାନ ଲାଭ କରିଅଛନ୍ତି । ତାଙ୍କର ନିରାଶାର କାରଣ ତେବେ କଣ ?

“ଜରା ଆକ୍ରମଣେ ତେବେ ହେବ କି ନିରାଶ ?
ଟାଣିବ କି ଆର୍ତ୍ତନାଦେ ବିଷାଦର ଶ୍ୱାସ ?
ନିରାଶର କଥା ଛି ଛି କହିବ କେମନ୍ତେ
ଅନ୍ତରରେ ଅନୁଭବ ଅନନ୍ତ ବସନ୍ତେ ?

ମଧୁସୂଦନଙ୍କର ପ୍ରେମ ଓ ବିଶ୍ୱାସ ତାଙ୍କର ଦୈହିକ ଓ ସାଂସାରିକ ସକଳ ପ୍ରତିବନ୍ଧକକୁ ଅତିକ୍ରମ କରି ଶେଷରେ ତାଙ୍କୁ ଜୟୀ କରି ପାରିଅଛି । ଦରିଦ୍ର ଉତ୍କଳ ଦେଶରେ ଦୀନ ପରିବାରରେ ଜନ୍ମ ଗ୍ରହଣ କରି ଆଜୀବନ ଦୁଃଖ ଦୁର୍ବିପାକରେ ପୀଡ଼ିତ ହୋଇ ମଧୁସୂଦନ ଯେ ପଦେ ଆନନ୍ଦର କଥା କହି ଯାଇଅଛନ୍ତି, ତାହା ଅଳ୍ପ ସାଧନାର ଫଳ ନୁହେ ଏବଂ ନୈରାଶ୍ୟପୂର୍ଣ୍ଣ ଏ ଦେଶରେ ତାହାର ମୂଲ୍ୟ ଅସାମାନ୍ୟ ।

“ଅମୃତ ଉତ୍ସାହ, ତେଣୁ ଆନନ୍ଦ ଅମୃତ
ଝର-ଝର ପ୍ରାଣେ ପ୍ରାଣୁ ହେଉଛି ନିଃସୃତ ।”

ମଧୁସୂଦନଙ୍କ ହୃଦୟରେ ନାରୀର ଆସନ ଅତି ଉଚ୍ଚ ସ୍ଥାନ ଅଧିକାର କରି ବସିଥିଲା । ଜ୍ୟେଷ୍ଠା କନିଷ୍ଠା ରମଣୀମାନଙ୍କୁ ସେ ‘ମା’ ‘ଭଗିନୀ’

ସମ୍ବୋଧନଦ୍ୱାରା ପରମ ଆନନ୍ଦ ଲାଭ କରୁଥିଲେ । ସମାଜରେ ପୁରୁଷ ଅପେକ୍ଷା ନାରୀର ସ୍ଥାନ ଯେ କୌଣସି ଅଂଶରେ ହୀନ ନୁହେଁ, ଉଭୟର ମିଳନ ଯେ ଜଗତରେ ମଣି କାଞ୍ଚନର ସଂଯୋଗ, ଏହି ମହାସତ୍ୟ ସେ ଜୀବନରେ ଯେପରି ଅନୁଭବ କରି ଯାଇଅଛନ୍ତି, ସେହିପରି ଭାବରେ ପ୍ରକାଶ କରିଅଛନ୍ତି ।

"ନରର ସଙ୍ଗିନୀ ନାରୀ, ନାରୀ-ସଖା ନର,
ବେନି ହୃଦ ବନ୍ଧନମନ୍ତ୍ରେ ଦୁହେଁ ମିଳି ଏକ,
ଏକର ଅଭାବ ପୂର୍ଣ୍ଣ କରଇ ଅପର,
ଶୁଭ ଲଗ୍ନେ ଉଭୟର ଶୁଭ ଅଭିଷେକ ।"

"କୌଣସି ପରଲୋକବାସିନୀ ପ୍ରତି" କବିତାରୁ ଅନୁମିତ ହୁଏ, ମଧୁସୂଦନ ବାଲ୍ୟ ସମୟରେ କୌଣସି 'କ୍ରୀଡ଼ା-ସଖୀ' ପ୍ରତି ଆକୃଷ୍ଟ ହୋଇଥିଲେ ।

"ବାଲ୍ୟ କେବେ ହରିଣାକ୍ଷୀ ଲାବଣ୍ୟ-ପ୍ରତିମା,
ଥିଲ କ୍ରୀଡ଼ା-ସଖୀ, ଦେବି, ନବୀନ ଶୈଶବେ ।"

କିନ୍ତୁ ସେ ପ୍ରେମ କୌଣସି ବାସନା-ବିକାରଦ୍ୱାରା କଳୁଷିତ ନ ଥିଲା । ତାହା ଭକ୍ତ ମଧୁସୂଦନଙ୍କର ଶୁଦ୍ଧପୂତ ପ୍ରେମ, ସେ ମର୍ତ୍ତ୍ୟର ନୁହେ, ସ୍ୱର୍ଗର । ସେଥିଲାଗି ସ୍ୱପ୍ନରେ ତାଙ୍କର ସେହି ବାଲ୍ୟ-ପ୍ରେୟସୀ ଉଭା ହୋଇ କହୁଅଛନ୍ତି—

"ଥିଲି ଯେତେ ମର୍ତ୍ତ୍ୟଧାମେ, ବାସନା-ବିକାର
ନ ଥିଲା କି କଦାପି ହେ ହୃଦୟରେ ତବ ?
ଥାଏ ଯଦି ଏହିକ୍ଷଣି କର ପରିହାର,
ସ୍ୱର୍ଗରେ କେବଳ ଶୁଦ୍ଧ-ସତ୍ତ୍ୱ ପ୍ରେମୋତ୍ସବ ।"

ମାତ୍ର ହିସାବରେ ମଧୁସୂଦନ ସକଳ ସ୍ଥାନରେ ଧରାବନ୍ଧା ନିୟମର ଅନୁସରଣ କରିଅଛନ୍ତି । କୌଣସି ସ୍ଥାନରେ ସେ ନିୟମରୁ ତାଙ୍କର ବିଚ୍ୟୁତି ଘଟିଥିବାର ଦେଖାଯାଏ ନାହିଁ 'ଯୌବନର ସ୍ୱପ୍ନ'ରେ 'ଷୋଡଶୀ ସୁନ୍ଦରୀ-ମୂର୍ତ୍ତି''ର କଳ୍ପନା ମଧ୍ୟ ତାଙ୍କର ଆଜୀବନ ସଙ୍ଗିନୀ ସହଧର୍ମିଣୀଙ୍କ ପ୍ରତି ଉଦ୍ଦିଷ୍ଟ ବୋଲି ମନେ ହୁଏ । ନାରୀର ଯେଉଁ ରୂପ ତାଙ୍କର ମନୋଜ୍ଞ ଥିଲା, ଏହି କବିତାଟିରେ ତାହା ଯେପରି ପ୍ରତୀୟମାନ ହୁଏ, ଅନ୍ୟ କୌଣସି କବିତାରେ ତାହା ଦେଖାଯାଏ ନାହିଁ ।

"ଶୋଭିତ ଆନନ-ପଦ୍ମ ଲଳିତ ଅଳକେ,
ସର୍ବାଙ୍ଗେ ପଡ଼ୁଛି ଶୁଭ୍ର-ରଶ୍ମି ଶଶାଙ୍କର,
ଅମଣ୍ଡନା, ଧୌତ ବସ୍ତ୍ରେ ମନୋଜ୍ଞ-ମଣ୍ଡନା,
ଅର୍ଦ୍ଧମୁକୁଳିତନେତ୍ରା, ଲଜ୍ଜା ମୂର୍ତ୍ତିମତୀ ।"

ଏହାହିଁ ତାଙ୍କର ଆଦର୍ଶ ନାରୀମୂର୍ତ୍ତି, ଏ ମୂର୍ତ୍ତିରେ ଯେଉଁ ଚରିତ୍ର ପ୍ରତିବିମ୍ବିତ, ବିଶ୍ୱର ନାରୀରାଜ୍ୟରେ ତାହାହିଁ ଦେଖିବାପାଇଁ ସେ କାମନା କରିଅଛନ୍ତି । ତଥାପି ସେ କୌଣସି ନାରୀକୁ ଘୃଣାଚକ୍ଷୁରେ ଦେଖିବା ତାଙ୍କର ସ୍ୱଭାବବିରୁଦ୍ଧ । ଏପରି କି, ଅଧର୍ମାଚାରିଣୀ ପତିତା ରମଣୀ ମଧ୍ୟ ତାଙ୍କର ଘୃଣାର ପାତ୍ରୀ ନୁହେଁ । ତାହା ପାଇଁ ତାଙ୍କର ଅନ୍ତର ଅତ୍ୟଧିକ ବ୍ୟାକୁଳ ।

କେ ବୁଝିବ ବୁଝୁଁ ତୋତେ ଏବେ ଅବନୀରେ,
କହୁ ଲୋ ଭଗିନି, ମୁହିଁ ତୋ ଦୁଃଖେ କାତର,
ଆହତ ମୋ ପ୍ରାଣ ତୋର ମର୍ମହାହାକାରେ,
କାନ୍ଦଇ ବିକଳେ ମୋର ବ୍ୟଥିତ ଅନ୍ତର ।

ପତିତାକୁ ମଧ୍ୟ ସେ 'ଭଗିନୀ' ସମ୍ବୋଧନ କରିବାକୁ ପଶ୍ଚାତ୍‌ପଦ ହୋଇ ନାହାନ୍ତି । କାରଣ ମଧୁସୂଦନଙ୍କର ମତ ସଙ୍କୀର୍ଣ୍ଣ ସାମାଜିକ ଜୀବନ

ଅଧୀନ ନ ଥିଲା । ତାହା ଉଦାରତା ଓ ସହାନୁଭୂତିରେ ମହମାସ୍ତୁ ହୋଇ ଯାଉଥିଲା । ସେଥିଲାଗି ନାରୀ ଯେତେ ହୀନ ହେଲେହେଁ ସେ ସେହି ପରମପିତାଙ୍କର ସନ୍ତାନ ।

'ପତିତା ହେଲେହେଁ ନାରୀ ମୋହର ତନୟା',

ଏବଂ ନାରୀ ଯେତେଦୂର କୁପଥଗାମିନୀ ହେଲେହେଁ ତା ଉଦରରେ ସେ ସେହି ସତୀତ୍ୱ ଓ ଦେବୀତ୍ୱର ସନ୍ଧାନ ଲାଭ କରିଅଛନ୍ତି ।

"ସତୀତ୍ୱ, ଦେବୀତ୍ୱ ତାର ଲଲାଟେ ଲିଖିତ,
କେ ତାକୁ ସେଥିରୁ ବଳେ କରିବ ବଞ୍ଚିତ ?"



# ଦ୍ୱାତ୍ରିଂଶ ପରିଚ୍ଛେଦ ।

## ଉତ୍କଳଗାଥା ।

ମଧୁସୂଦନଙ୍କ ରଚିତ ଜାତୀୟ ସଙ୍ଗୀତଗୁଡ଼ିକ ଉତ୍କଳରେ ନବ ଉଦ୍ଦୀପନା ଆନୟନ କରିଅଛି । ଅନାହାରପ୍ରପୀଡ଼ିତ ହୃଦ୍‌ୟମନ୍ତ୍ରୀଣ୍ୟ ଜାତି ଉତ୍କଳୀୟ ଧମନୀରେ ତାହା ତଡ଼ିତ୍‌ପ୍ରବାହ ସଞ୍ଚାର କରିଅଛି ।

"ଏହି ସେହି କଳିଙ୍ଗ-ଧରଣୀ,
ଯହିଁ ଧୌଳି ଜୌଗଡ଼ ସାଜେ ।
ଶିଳାଙ୍କରେ ଯହିଁ 'ଜାବେ ମୈତ୍ରୀ'
ଘୋଷିତ ଅଶୋକ ସାମ୍ରାଜ୍ୟେ ।"

ଏହି ସେହି ଦେଶ ! ଯାହାର ବାରବାଟି ଧୂଳିସାତ୍ ହୋଇଅଛି, ଯାହାର କୋଣାର୍କ ପୃଥିବୀରେ ଶ୍ରେଷ୍ଠ କଳାର ପରାକାଷ୍ଠା ଦେଖାଇ ଦେଉଅଛି,

ଯାହାର 'ଶ୍ରୀକ୍ଷେତ୍ର' 'ଭୁବନେଶ୍ୱର' ଭାରତର ଧର୍ମାଭିଷେକରେ ପରିପୂତ, ଯାହାର ପ୍ରତି ଧୂଳିକଣାରେ ସାହିତ୍ୟ, କଳା ଓ ଧର୍ମର ସମାବେଶ ହୋଇଅଛି, ସେହି ଦେଶର ଅତୀତ ସ୍ମରଣ କରି ଓଡ଼ିଆ କବି ବନ୍ଦନା କରୁଅଛନ୍ତି—

ତୁହି ମା ଶୋଭାସଦନ,
ସିନ୍ଧୁ ଧୁଅଇ ଚରଣ,
କେତେ ନଦୀ ଗିରି ବନ ଶୋଭେ ତୋ ଦେହେ ।
ଧର୍ମର ତୁ କାମଧେନୁ,
ପୁଣ୍ୟମୟ ତୋର ରେଣୁ,
କେତେ ମହାତୀର୍ଥ ଧରିଅଛୁ ମା ସ୍ନେହେ ।
କୋଟି କୋଟି ପୁରୁଷ ନାରୀ
ତୋର ପଦତଳେ ବସି ମୁକ୍ତି-ଭିକାରୀ ।

କିନ୍ତୁ ସେ ଦେଶର ଶୌର୍ଯ୍ୟ ବୀର୍ଯ୍ୟ ସାଧନା ଆଜି ମ୍ଳାନପ୍ରଭ ହୋଇ ପଡ଼ିଅଛି । ଏ ଦେଶ ଆଜି ବିଦେଶରେ କୁଲି ମୋଟିଆଙ୍କ ଦେଶ ବୋଲି ଖ୍ୟାତ । ଉତ୍କଳର ଗ୍ରାମରେ ଆଜି 'ତେଲଲୁଣ ବେଗେ ଦହିଭାତ, ଗୋଧନ ଧେନ ଗଳନ୍ତ' ଏ ଦୃଶ୍ୟ ବିରଳ ହୋଇ ଆସୁଅଛି । ଉତ୍କଳବାସୀ ସକଳ ବିଷୟରେ ତାର ନିଷ୍ଠା ଓ ସାଧନା ହରାଇ ବସିଅଛି । ସେଥିଲାଗି ଉତ୍କଳବରେଣ୍ୟ କବି ରାଧାନାଥ ଆକ୍ଷେପ କରି ଲେଖିଅଛନ୍ତି—

"ଦେଖ ନାହାନ୍ତି କି ମନେ ବହି ଲାଜ
ନବ୍ୟ ଉତ୍କଳର ଏ ସଭ୍ୟ ସମାଜ,
×　　×　　×
କି ଥିଲା ଏ ଦେଶ କି ହୋଇଛି ଆଜ ।"

ଏ ଦେଶ କଣ ଥିଲା, ଆଜି କଣ ହୋଇଛି ! ମଧୁସୂଦନଙ୍କ ଅନ୍ତରରେ ମଧ୍ୟ ଏହି ବ୍ୟଥା ବାଜିଛି ।

ବିଶାଳ ବିସ୍ତାର ତବ ମା ଉତ୍କଳଭୂମି,
ଦେଖି ଆସିଲି ମୁଁ ଗୁରୁଆଡ଼େ ଘୁମି ଘୁମି
କୋଟିଏ ସନ୍ତାନ ମା ଗୋ ଧରିଅଛୁ କୋଳେ,
ଗୋଟିଏ ମନୁଷ୍ୟ କିନ୍ତୁ ନ ଦେଖିଲି ତୋଳେ,

ଉତ୍କଳର ପ୍ରେମ ମୈତ୍ରୀ ଭାବ ବିଲୁପ୍ତ ହୋଇଅଛି । ସବୁ ସ୍ଥଳରେ ସଂକୀର୍ଣ୍ଣତା, ସକଳ ସ୍ଥାନରେ ସ୍ୱାର୍ଥର ଗନ୍ଧ ।

ସମସ୍ତେ ମୋହର ପରି ମୋହେ ମୂଢ଼ମତି,
କ୍ଷୁଦ୍ର ସ୍ୱାର୍ଥକାରାରୁଦ୍ଧ ନିସ୍ତେଜ ମୂରତି,
ସର୍ବେ ଖଣ୍ଡୀକୃତ ପୁଞ୍ଜ କ୍ଷୁଦ୍ର ମୁଦ୍ରାଖଣ୍ଡେ ।"

ସକଳ ବିଶ୍ୱ ଆଜି ଜାଗ୍ରତ ହୋଇ ଉଠିଅଛି, ଉତ୍କଳ କଣ ସେ ବିଶ୍ୱରୁ ବିଚ୍ଛିନ୍ନ, ବିଶ୍ୱର ବିପୁଳ ସଙ୍ଗୀତରେ ଯୋଗ ଦେବା ପାଇଁ ଉତ୍କଳର କଣ କିଛିହିଁ ଶକ୍ତି ସାମର୍ଥ୍ୟ ନାହିଁ ? ଭାରତର ସଂକୀର୍ଣ୍ଣ ପ୍ରାଦେଶିକତା, ଧର୍ମଭେଦ, ଜାତିଭେଦ ଦୂର ହୋଇ ବୃହତ୍ତର ଭାରତର ମହାନିମନ୍ତ୍ରଣ ଉତ୍କଳର ଦ୍ୱାରଦେଶରେ ସମାଗତ । ଏ ସମୟରେ ଉତ୍କଳ କଣ ତାର କ୍ଷୁଦ୍ର ଅବସ୍ଥର ମଧ୍ୟରେ ଚିରକାଳ ଆବଦ୍ଧ ରହିବ ?

"ବର୍ଣ୍ଣଭେଦ ଧର୍ମଭେଦର ଦିନ ହେଉଛି ଶେଷ,
ମହା ଯୋଗେ ହେବ ଭାରତ
ମହାଭାରତଦେଶ ।"

କେବଳ ବିଚ୍ଛିନ୍ନ ଉତ୍କଳର ଏକତ୍ରୀକରଣ ଏବଂ ଭାରତର ବିଭିନ୍ନ ପ୍ରଦେଶ ମଧ୍ୟରେ ସଖ୍ୟଭାବ ମଧୁସୂଦନଙ୍କ ସ୍ୱଦେଶପ୍ରୀତିର ଚରମ ଆକାଂକ୍ଷା ନ ଥିଲା । ତାହା ଆହୁରି ଉଚ୍ଚ, ଅଧିକ ଉଦାର । ସେଥିପାଇଁ ସେ ସ୍ମୃତି ଫୁଲାଇ ଏ ପ୍ରାଣହୀନ ଦେଶରେ ମଧ୍ୟ ନବସମ୍ବାଦ ଶୁଣାଇ ଯାଇଅଛନ୍ତି—

"ପୁଣି ଶୁଣ ନବ ସମ୍ବାଦ
ସର୍ବେ ଉଲ୍ଲାସେ ମାତି,
ଏକମାତ୍ର ବିଶ୍ୱବିଧାତା
ଏକ ମାନବ ଜାତି ।"

କାରଣ,

"ଅସିଆ, ୟୁରୋପ, ଅଫ୍ରିକା
ଅମେରିକା ସଙ୍ଗତେ
ସମ୍ମିଳିତ ହେଉଅଛନ୍ତି
ପ୍ରେମ-ବିଧାନମତେ ।"

ଉତ୍କଳ କଣ ଏଡ଼େ ହୀନ ଯେ, ସେ ଏ ଶୁଭ ନିମନ୍ତ୍ରଣ ପ୍ରତ୍ୟାଖ୍ୟାନ କରି ବସିବ ? ସେ କଣ ସବୁ ପାସୋରି ଦେଇ ସାରିଛି ?

ପାସୋରିଲା ନିଜ ମହିମା
ପିତୃପିତାମହର,
ଲିଙ୍ଗରାଜ ଭୁଙ୍ଗ ମନ୍ଦିର
ଖଣ୍ଡଗିରି-କନ୍ଦର,
ଜଗନ୍ନାଥ ବଡ଼ ଦେଉଳ,
କଣାରକ କୀରତି,
ଯାଜପୁରେ ଶୁଭ ବିଜୟ—
ସ୍ତମ୍ଭ, ଦେବ ମୂରତି ।

ନା କଦାପି ନୁହେ । ଉତ୍କଳ ତାହା ପାସୋରି ପାରେ ନାହିଁ । ଉତ୍କଳର ଅଙ୍ଗେ ଅଙ୍ଗେ ଯେ ଅତୀତ ନାଡ଼ିର ସ୍ପନ୍ଦନ । ଉତ୍କଳର ସବୁ ଅତୀତ ଶିଳ୍ପ ଭୁଲି ଯାଇଅଛି, ତା ଅନ୍ତରରେ ଜଡ଼ତା ପ୍ରବେଶ କରିଅଛି । ତଥାପି ତାର ସେହି ପୁରାତନ ବାଞ୍ଛିତ ମହାପ୍ରାଣ ଆତ୍ମାର ମୃତ୍ୟୁ ହୋଇ ନାହିଁ ।

ଉତ୍କଳଜନନୀ ବିପୁଳ ଆଶାରେ ଆଶାନ୍ୱିତା ଓ ପ୍ରାଣରେ ପୂର୍ଣ୍ଣ ଶ୍ରୀମୟୀ ହୋଇ ଉଠିବ । ତାହାର ସ୍ତୂପୀକୃତ ଭଗ୍ନ ମନ୍ଦିର, ତାହାର କୀର୍ତ୍ତିସ୍ତମ୍ଭ ସାରଳା, ଜଗନ୍ନାଥ, ଉପେନ୍ଦ୍ର ତାହାର ଗର୍ବ । ବିଶ୍ୱ ସଭାରେ ସେ ନିଜକୁ ଓଡ଼ିଆ ବୋଲି ପରିଚୟ ଦେବା ପାଇଁ ତାର ଲଜ୍ଜା କଣ ?

"ଓଡ଼ିଆ ଓଡ଼ିଆ—କ୍ଷୁଦ୍ର ହେବ ଛୁଡ଼ ଷଣେ
ଘଣିବୁ ଗୋ ତୋ ସନ୍ତାନେ ବିଶ୍ୱସଭାଙ୍ଗନେ ।"

କବି ଧ୍ୟାନନେତ୍ରରେ ଉତ୍କଳର ଭବିଷ୍ୟତକୁ ଉଜ୍ଜ୍ୱଳ ଶ୍ରୀମୟ ଦେଖୁଅଛନ୍ତି । ସେଥିଲାଗି ଭବିଷ୍ୟଦ୍‌ବାଣୀ ପ୍ରକାଶ କରିଅଛନ୍ତି—

"ଅଶାର ଅଜନେ ମାତଃ ତୋ ସନ୍ତାନଗଣେ
ଧର୍ମବୀର କର୍ମବୀର ହେବେ ଶୁଭଷଣେ ।"

କବିର ଏ ସ୍ୱପ୍ନ ଆଜି କେତେଦୂର ସାର୍ଥକ ହୋଇଅଛି, ତାହା ପାଠକମାନଙ୍କର ବିଚାର୍ଯ୍ୟ ଏବଂ ଆଜି ନିମ୍ନୋକ୍ତରୂପରେ ଉତ୍କଳବାସୀ ଦେଶର ଜୟଗାନ କରିବା ପାଇଁ କେତେଦୂର ସମର୍ଥ ହୋଇଅଛି, ତାହା ଦେଶବାସୀ ଅନୁମାନ କରିବେ ।

ଜୟ ଦେବି ! ଜନ୍ମଭୂମି
କୀର୍ତ୍ତି-କଣ୍ଠଧାରିଣୀ,
ବନ୍ଦେ ଦେବି ! ଆଶାମୟୀ
ନିଗୂଢ଼ ଶକ୍ତିଶାଳିନୀ ।

# ତ୍ରୟୋବିଂଶ ପରିଚ୍ଛେଦ ।

## ଭାବନାତ୍ମକ ଓ ଧର୍ମବିଷୟକ କବିତା ।

### କୁସୁମାଞ୍ଜଳି ।

ମଧୁସୂଦନଙ୍କ କବିତାଗୁଚ୍ଛକୁ ସମ୍ପୂର୍ଣ୍ଣରୂପେ ବର୍ଣ୍ଣନାତ୍ମକ ବା ଭାବନାତ୍ମକ ଶ୍ରେଣୀରେ ରଖାଯାଇ ନ ପାରେ, କାରଣ ତାଙ୍କର ଅଧିକାଂଶ କବିତା ମଧୁର ବର୍ଣ୍ଣନା ଓ ଗମ୍ଭୀର ଭାବର ବ୍ୟଞ୍ଜକ । ତେବେ ଯେଉଁ କବିତାଗୁଡ଼ିକ ଭାବପ୍ରଧାନ ସେଗୁଡ଼ିକୁହିଁ ଭାବନାତ୍ମକ ଶ୍ରେଣୀରେ ନିଆଯାଇ ପାରେ । ଭାବନାତ୍ମକ କବିତାରେ ମଧୁସୂଦନଙ୍କ ଗଭୀର ଆଧ୍ୟାତ୍ମିକତା, ଧର୍ମଭାବ ଓ ବିଶ୍ୱାସ ପ୍ରତି ଛନ୍ଦରେ ଉଦ୍‌ଘୋଷିତ । ସାମାନ୍ୟ କେତେଗୋଟି ବର୍ଣ୍ଣନାତ୍ମକ କବିତା ମଧ ଏଥିରୁ ମୁକ୍ତିଲାଭ କରି ନାହିଁ ।

ଭାବନାତ୍ମକ କବିତାରେ "କୁସୁମାଞ୍ଜଳି" ସର୍ବପ୍ରଧାନ । କୁସୁମାଞ୍ଜଳିରେ ମଧୁସୂଦନଙ୍କ କବିତା କାବ୍ୟଜୀବନର ପରାକାଷ୍ଠା ଯେପରି ଲାଭ କରିଅଛି, ଅନ୍ୟତ୍ର ତାହା କରି ପାରି ନାହିଁ । "ବସନ୍ତଗାଥା"ରେ ମଧ ନୁହେଁ । ବସନ୍ତଗାଥାରେ ବର୍ଣ୍ଣନାର ପଟୁତ୍ୱ ଓ ସଂଯମର ପରିଚୟ ମିଳେ । କିନ୍ତୁ କୁସୁମାଞ୍ଜଳି କବିଙ୍କର ଯଥାର୍ଥ ଧ୍ୟାନ-ମୂର୍ତ୍ତିଟିକୁ ପ୍ରକାଶିତ କରେ । ମଧୁସୂଦନଙ୍କର ଅନ୍ତରତମ ପ୍ରବୃତ୍ତି ଏଠାରେ ପ୍ରକାଶଲାଭ କରିଅଛନ୍ତି । ଏହା ତାଙ୍କର କାବ୍ୟଜୀବନର ଚରମ ପରିଣତି କହିଲେ ଅତ୍ୟୁକ୍ତି ହେବ ନାହିଁ ।

କୁସୁମାଞ୍ଜଳି ୧୯୦୩ ଖ୍ରୀଷ୍ଟାବ୍ଦରେ ପ୍ରକାଶିତ ହୋଇଥିଲା । ସେତେବେଳକୁ ମଧୁସୂଦନ କବି ଆସନରେ ସୁପ୍ରତିଷ୍ଠିତ ହୋଇ ସାରିଥିଲେ । ଏହା ତାଙ୍କର ଯଥାର୍ଥ ପରିପକ୍ୱତା ଲାଭ କରିବାର ସମୟ ।

ଏତଦନ୍ତର୍ଗତ 'ନବବସନ୍ତଭାବନା', 'ଏ ସୃଷ୍ଟି ଅମୃତମୟ ହେ' 'ନବଯୁଗର ଅଭିଷେକ' 'ଭାରତ ଭାବନା' 'ଋଷିପ୍ରାଣେ ଦେବାବତରଣ' ପ୍ରଭୃତି କବିତାରେ ମଧୁସୂଦନଙ୍କୁ କେବଳ ଉତ୍କଳରେ ନୁହେଁ, ବିଶ୍ୱସାହିତ୍ୟ ଅଙ୍ଗନରେ ମଧ୍ୟ ସ୍ଥାନ ଦେବାକୁ ସମର୍ଥ ହୋଇଅଛି । କୁସୁମାଞ୍ଜଳି ମଧୁସୂଦନଙ୍କର 'ପୂଜ୍ୟପାଦ କୈଶୋର-ଗୁରୁ, ପରମାତ୍ମୀୟ ଯୌବନ-ସଖା, ଚିରଜୀବନର ପରମ ହିତୈଷୀ, ପବିତ୍ର ସାହିତ୍ୟସେବାବ୍ରତରେ ପଥପ୍ରଦର୍ଶକ ବନ୍ଧୁବର୍ଯ୍ୟ କବି ଶ୍ରୀ ରାଧାନାଥ ରାୟ ମହୋଦୟଙ୍କର ଶ୍ରୀଚରଣକମଳରେ' ଉତ୍ସର୍ଗୀକୃତ, ଯୋଗ୍ୟ ପାତ୍ରରେ ଯୋଗ୍ୟ ଦାନ ! ଉତ୍କଳରେ କୁସୁମାଞ୍ଜଳି କେବଳ ରାଧାନାଥଙ୍କରହିଁ ପ୍ରାପ୍ୟ । ଯାହା ଉତ୍କଳବାଣୀଙ୍କର ଶିରୋଭୂଷାର ଯୋଗ୍ୟ, ନମ୍ର କବି ମଧୁସୂଦନ ତାହା ଗୁରୁପାଦପଦ୍ମରେ ଅର୍ପଣ କରିଅଛନ୍ତି ।

ମଧୁସୂଦନ 'ବସନ୍ତ' ସମ୍ବନ୍ଧରେ ଏକାଧିକ କବିତା ଲେଖିଥିଲେହେଁ କୁସୁମାଞ୍ଜଳିରେ ନବବସନ୍ତଭାବନାର ତୁଳନା ନାହିଁ ।

କି ମନ୍ତ୍ର ଲଭିଛି ଆଜି—
କବି-ପିକ ଶୁଭକ୍ଷଣେ
ଉନ୍ମାଦିଲି କୁହୁ ଝଙ୍କାରେ
ମୁଗ୍ଧ ମୁଗ୍ଧ ଭୁବନେ ।

ଏ କୁହୁ ଧ୍ୱନି ଆଜି-କବି ପିକର ନୁହେଁ, ଏହା ଉତ୍କଳଭାରତୀ-କୁଞ୍ଜରେ କବି ମଧୁସୂଦନଙ୍କର । କବିତାଟିର ପ୍ରତି ଛନ୍ଦରେ କବି ତାଙ୍କର ଚିରସାଧ ଆନନ୍ଦବାଦର ଶୀର୍ଷସ୍ଥାନକୁ ସ୍ପର୍ଶ କରିଅଛନ୍ତି । କୁସୁମାଞ୍ଜଳିର ପ୍ରତି କବିତାରେ ଏହି ଅମୃତମୟ ଆନନ୍ଦବାଣୀର ସନ୍ଧାନ ମିଳେ ଏବଂ ଏହି କାରଣରୁହିଁ ଏହା ଦୁଃଖିନୀ ଉତ୍କଳଭାରତୀଙ୍କର ଗୋଟିଏ ଅମୂଲ୍ୟ ନିଧି । କବି ବସନ୍ତର ଆନନ୍ଦସଞ୍ଚାର କି ଜୀବ, କି ଜଡ଼, ସକଳ

ଜଗତରେ ଲକ୍ଷ୍ୟ କରୁଅଛନ୍ତି । ପ୍ରକୃତିରାଜ୍ୟରେ ବସନ୍ତହିଁ ଯୌବନର ପ୍ରବାହ ଆନୟନ କରେ ।

"ନବୀନ ଯୌବନ-ପ୍ରବାହ
କୋଟି କୋଟି ଅକାରେ
ବିକାଶଇ ଶୋଭା-ମୂରତି
ଏହି ଜଡ଼ ସଂସାରେ ।"

କବି ସ୍ୱୀୟ ଅନ୍ତରରେ ଏହି ଜଡ଼ିମା ଅନୁଭବ କରୁଅଛନ୍ତି ଏବଂ ବସନ୍ତା-ଗମରେ ଏଥିରୁ ମୁକ୍ତି ଲାଭ କରିବା ପାଇଁ ପ୍ରୟାସୀ ହୋଇଅଛନ୍ତି । କବି ଯେଉଁ ବସନ୍ତ, ଯେଉଁ ଯୌବନ ଉପଭୋଗ କରିବା ପାଇଁ ଆଗ୍ରହ ପ୍ରକାଶ କରୁଅଛନ୍ତି, ତାହା ଇନ୍ଦ୍ରିୟବାସନାବିହୀନ ଶାଶ୍ୱତ ଭଗବଦ୍-ଭକ୍ତି, ତାହା ଅକଳୁଷ ପ୍ରେମ ଓ ଆନନ୍ଦ । କିନ୍ତୁ ସେଥିପାଇଁ ଜୀବନରେ ସହସ୍ର ବାଧା ପ୍ରତିବନ୍ଧକ ରହିଅଛି । ଇନ୍ଦ୍ରିୟଗ୍ରାମର ଅସଂଖ୍ୟ ପ୍ରଲୋଭନ ଅତିକ୍ରମ କରିବାର ଦୁଃଖ ଭକ୍ତ ଅନ୍ତରରେ ବାଜୁଅଛି । ସେଥିପାଇଁ ଦୁଃଖରେ କହିଅଛନ୍ତି—

"କିନ୍ତୁ କାହିଁକି ରେ ହୃଦୟ
ଆଧି-ବ୍ୟାଧି-ଆଳୟେ
ଜରା-ଜୀର୍ଣ୍ଣ ମୃତ ପରାୟେ
ପଡ଼ି ରହିଛୁ ଭୟେ,

× × ×

ଇନ୍ଦ୍ରିୟବାସନା-ପିଶାଚୀ
ତୋର ପ୍ରାଣ ଶୋଣିତ
ମୁହୁର୍ମୁହୁ ଶୋଷି ନେଉଛି
ଆରେ ଦଗଧ ଚିତ୍ତ ।

ଏହା ଅବଶ୍ୟ କାବ୍ୟ ହିସାବରେ ରସଭଙ୍ଗରୂପ ଗୋଟିଏ ମହତ୍ ଦୋଷ । କବି ଏଠାରେ ଚନ୍ଦ୍ରାରାଜ୍ୟରୁ ବସ୍ତୁ ରାଜ୍ୟକୁ ଓହ୍ଲାଇ ଆସି-ଅଛନ୍ତି । ମହାକାବ୍ୟରେ ଏହା ଦୋଷ ବୋଲି ଗଣ୍ୟ ହୋଇ ନ ପାରେ । ଯେପରି ଚଳିକାରେ ରାଧାନାଥ 'ଅସ୍ପିତା ବସୁସ୍ପେ' ନିମଗ୍ନ ହୋଇ ପୁଣି 'ଭଷମ ସଂସାରକୁ ବାହୁଡ଼ି' ଅଛନ୍ତି । କିନ୍ତୁ କ୍ଷୁଦ୍ର କାବ୍ୟ (lyric) ରଚୟିତା ପକ୍ଷରେ ଏ ତ୍ରୁଟି ମାର୍ଜନୀୟ ହୋଇ ନ ପାରେ । କ୍ଷୁଦ୍ର କାବ୍ୟ (lyric) ପ୍ରତ୍ୟେକଟି ପୂର୍ଣ୍ଣାଙ୍ଗ ହେବା ଉଚିତ । କାରଣ ଏହା ଗୋଟିଏ ଗୋଟିଏ ମୁହୂର୍ତ୍ତର ପ୍ରକାଶ । ଆନନ୍ଦ କିମ୍ବା ଦୁଃଖର ମୁହୂର୍ତ୍ତଟି ଏଥିରେ ପୂର୍ଣ୍ଣରୂପେ ମୂର୍ତ୍ତ ହୋଇ ପାରିଲେ ଏହା ସୁନ୍ଦର ହୁଏ । ଏହାର ବ୍ୟତିକ୍ରମ ଭକ୍ତ ବା ପ୍ରେମିକ ପକ୍ଷରେ ମଧ୍ୟ ନିଶ୍ଚୟ ଗୋଟିଏ ଦୋଷ । ଏପରି ମୁକ୍ଷଣରେ ତାର ଧ୍ୟାନଭଗ୍ନ ହେବା ବଡ଼ ଦୁଃଖପ୍ରଦ । ଯାହାହେଉ ମଧୁସୂଦନଙ୍କର ଦୁଃଖପୂର୍ଣ୍ଣ ଜୀବନରେ ସେ ଯେ ଟାଣି ଆଣି ଏପରି ପ୍ରସାଦ ଲାଭ କରିଅଛନ୍ତି, ଏହା ତାଙ୍କ ପକ୍ଷରେ ଅଳ୍ପ ସାଧନାର ଫଳ ନୁହେ । ମଧ୍ୟେ ମଧ୍ୟେ ଏହି ଦୁଶ୍ଚିନ୍ତାକୁ ଛେଦନ କରି ସେ ଅନନ୍ତ ଯୌବନ ଓ ଅନନ୍ତ ବସନ୍ତର (Eternal youth and Eternal spring) ସନ୍ଧାନ ପାଇଅଛନ୍ତି, ସେଥି-ପାଇଁ ତାଙ୍କର ଧ୍ୟାନସ୍ତିମିତ ଦୃଷ୍ଟି ଏହି ବାହ୍ୟ ନିରାନନ୍ଦରୁ ଅପସରି ସ୍ୱୀୟ ଅନ୍ତରରେ ନିବଦ୍ଧ ରହିଅଛି ।

"ଅନାଇଣ ବାରେ ଦେଖ ରେ
ଜୀବ ନିଜ ଅନ୍ତରରେ
ଅନନ୍ତ-ଜୀବନ-ଆଧାର
ସତ୍ୟଚିତ୍ ସୁନ୍ଦରରେ,
ଅନନ୍ତ ସରସ ବସନ୍ତେ
ମଧୁମୟ ଉତ୍ସବ,

ଅନନ୍ତ ଜୀବନ ଯୌବନ
　　　　ମହାନନ୍ଦ-ବୈଭବ ।

ଏହିପରି ଅନେକ କବିତାରେ ମଧୁସୂଦନ ତାଙ୍କର ଯେଉଁ ବିଷାଦ-ବାଦରୁ (pessimism) ମୁକ୍ତ ହୋଇ ଆନନ୍ଦବାଦରେ ଉପନୀତ ହୋଇଅଛନ୍ତି । କିନ୍ତୁ 'ଏ ସୃଷ୍ଟି ଅମୃତମୟ ହେ' କବିତାଟିରେ ଏ ଦୋଷ ଲକ୍ଷିତ ହୁଏ ନାହିଁ । ଉକ୍ତ କବିତାଟିରେ ସୃଷ୍ଟିର ବିଜୟଗୀତି ଯେପରି କବି ଅନ୍ତରକୁ ପରିପୂର୍ଣ୍ଣ କରି ବାହାରକୁ ଉଚ୍ଛୁଳି ପଡ଼ୁଅଛି । ଏ ଯେ ଆନନ୍ଦର ସୃଷ୍ଟି, ଅମୃତର ସୃଷ୍ଟି, କବି ଏହାର ବ୍ୟତିକ୍ରମ କୌଣସି ସ୍ଥଳରେ ଲକ୍ଷ୍ୟ କରି ନାହାନ୍ତି । ପ୍ରତ୍ୟେକଟି ଶ୍ଳୋକ ଗୋଟିଏ ଗୋଟିଏ ଅମୂଲ୍ୟ ମଣି । ଏହି ଅନନ୍ତ ଉଦାର ଆକାଶ ତେଜେ ତେଜୋମୟ ହୋଇ ଉଠିଅଛି, ଏହି କୂଳହୀନ ଅତଳ ଅକାଶ ନାଦେ ନାଦେ ନାଦମୟ, ଧରିତ୍ରୀ କୋମଳ ଶ୍ୟାମ ତୃଣ-ଶସ୍ୟାଦିରେ ବିଭୂଷିତ ଓ ସୌରଭମୟ । ଏପରି କି,

　　ମରୀଚିକାମୟ　　　　ତରୁଶୂନ୍ୟ ମରୁ
　　　　ଘୋର ତୃଷା-ଋଚ୍ଚାଳୟ ହେ,
　　ଦିଗନ୍ତବିସ୍ତୃତ　　　　ଜ୍ୱଳନ୍ତ ପ୍ରାନ୍ତର
　　　　ପଥଶୂନ୍ୟ ନିରାଶ୍ରୟ ହେ,
　　ସେ ମରୁ ଅନ୍ତରୁ　　　　ବହେ ସୁଧା-ସ୍ରୋତ
　　　　ପିଅ ସେହି ସୁଧା ପୟ ହେ ।

ମରୁ ଅନ୍ତରରେ ମଧ କବି ସ୍ୱଚ୍ଛ ମନ୍ଦାକିନୀଧାରା ଦେଖି ପାରିଅଛନ୍ତି । ଏଥିରେ ଶୋକ ଓ ଦୁଃଖର ଗନ୍ଧ ଗନ୍ଧ ନାହିଁ । କବିଙ୍କ ଧ୍ୟାନରେ କୌଣସି ବାଧା ଉପସ୍ଥିତ ହୋଇ ନାହିଁ । ସବୁ ଆନନ୍ଦମୟ, ଅମୃତମୟ । ସେ ଯେପରି ଶିଶୁ ପରି ହାତ ଟେକି ନୃତ୍ୟ କରି କରି ଗାଇଅଛନ୍ତି—

ମଧୁମୟ ସୃଷ୍ଟି  ସୁଧାମୟ ସୃଷ୍ଟି
ଏ ସୃଷ୍ଟି ଅମୃତମୟ ହେ,
ଜାଗ ନର ନାରୀ  ଅମୃତ-ସନ୍ତତି,
ପିଅ ରସ ଅମୃତ ପୟ ହେ ।
ପିଇ ସେ ଅମୃତ  ହବସ ଶବାସୀ
ଗାଅ ଅମୃତର ଜୟ ହେ ।

କବିତାଟିର ପ୍ରତି ପଂକ୍ତିରେ ମଧୁସୂଦନଙ୍କ ମହୋଚ୍ଚ ଆନନ୍ଦବାଦର (robust optimism) ସାକ୍ଷ ମିଳୁଅଛି ।

'ନବ ଯୁଗର ଅଭିଷେକ' କବିତାଟିରେ କବି ଅଧୁନିକତମ ବ୍ରାହ୍ମଧର୍ମକୁ ଲକ୍ଷ୍ୟ କରିଅଛନ୍ତି । ଯେଉଁ ଧର୍ମରେ ହିନ୍ଦୁର ଚୂଡ଼ାନ୍ତ ଉଦାରତା ପ୍ରକାଶ ଲାଭ କରିଅଛି ଏବଂ ଯେଉଁ ଧର୍ମକୁ ପ୍ରକାଶ୍ୟରେ ଗ୍ରହଣ ନ କଲେ ମଧ୍ୟ ଅଧୁନାତନ ଶିକ୍ଷିତ ସମାଜ ଅନ୍ତରେ ଅନ୍ତରେ ବରଣ କରୁଅଛି, ସେହି ଉଦାର ଧର୍ମନୀତିହିଁ ମଧୁସୂଦନଙ୍କର ଆଦର୍ଶ ଥିଲା । ଯେହି ବ୍ରାହ୍ମ ଧର୍ମର ମୂଳମନ୍ତ୍ରରେ ଆଜ ପ୍ରତ୍ୟେକ ଶିକ୍ଷିତ ଯୁବକ ପ୍ରକାଶ୍ୟରେ, ଗୋପନରେ ଦୀକ୍ଷିତ ବୋଲି କହିଲେ ଅତ୍ୟୁକ୍ତି ତ ହେବ ନାହିଁ, ବରଂ ଯଥାର୍ଥ ଉକ୍ତି ହେବ । ଭାରତବ୍ୟାପୀ ଆଜ ଅସ୍ପୃଶ୍ୟତା ନିବାରଣର ଉନ୍ମୂଳ ଆନ୍ଦୋଳନ ଚାଲିଅଛି । ଭାରତ ଜାତି କ୍ଷୁଦ୍ର ଜାତିଦ୍ୱେଷ ପରିହାର କରି ମହାଭାରତ ଜାତିରେ ପରିଣତ ହେଉ ଏହା ଯେବେ ତୁମର ଇଚ୍ଛା, ତେବେ ସେହି ବ୍ରାହ୍ମ ଧର୍ମ ପ୍ରତି ଦୃଷ୍ଟି ଫେରାଅ । ଯୌବନ ବିବାହ, ବିଧବା ବିବାହ, ଅସବର୍ଣ୍ଣ ବିବାହ, ଆନ୍ତର୍ଜାତିକ ବିବାହ ଆଦି ସକଳ ବିବାହ ଆନ୍ଦୋଳନ ଚାହିଁ ତ ସେହି ବ୍ରାହ୍ମ ସମାଜକୁ ଆଦର୍ଶ ଧର । ପୌରୋହିତ୍ୟ ପ୍ରଥାର ସଂସ୍କାର ଇଚ୍ଛା କର, ତେବେ ସେହି ବ୍ରାହ୍ମସମାଜକୁ ଉଦାହରଣ ଦେଖ । ନାରୀ ସ୍ୱାଧୀନତା ପାଇଁ ହୃଦୟ ଛିଡୁଅଛି । ଦୃଷ୍ଟାନ୍ତ ପାଇବ ବ୍ରାହ୍ମସମାଜକୁ । ସମାଜଗତ, ପରିବାରଗତ ସଂକୀର୍ଣ୍ଣତା ଓ ନୀଚତାରୁ ମୁକ୍ତି ଲାଭ କରିବାକୁ

ଲୋକ୍ତୃ ଅଛ ତ ଅନ୍ତରେ ଅନ୍ତରେ ବ୍ରାହ୍ମ ହୁଅ । ମନୁଷ୍ୟ ଯେ ଅମୃତର ସନ୍ତତି, କେହି କାହାର ପକ୍ଷରେ ଘୃଣ୍ୟ ନୁହେ, ହୀନ ନୁହେ, ବ୍ରାହ୍ମ ଧର୍ମହିଁ ଏ ଯୁଗରେ ଏ ମହାସତ୍ୟର ଆଦର୍ଶ ଦେଖାଇଅଛି । ବିଦେଶଯାତ୍ରାରେ କୁଳହାନି ମାନହାନି ନ ହୋଇ ବରଂ ତାହା ଶତଗୁଣ ବୃଦ୍ଧି ଲାଭ କରେ, ବ୍ରାହ୍ମ ସମାଜହିଁ ଏ ପନ୍ଥାର ପ୍ରଥମ ପ୍ରଦର୍ଶକ । ବ୍ରାହ୍ମସମାଜ, ବ୍ରାହ୍ମ ସଭ୍ୟତା ଆଜ ଅତ୍ୟନ୍ତ ଅଗ୍ରଗାମୀ । ହିନ୍ଦୁ ସମାଜର ଦୃଷ୍ଟି ଆଜ ଯେଉଁ ଦିଗକୁ ଫେରିଅଛି, ଏହାର ଗତି ଯେଉଁ ଦିଗକୁ ଧାବମାନ, ଏକଶତ ବର୍ଷ ପୂର୍ବେ ରାଜା ରାମମୋହନ ସେହି ପଥର ପ୍ରଦର୍ଶକ ହୋଇଥିଲେ । ଆମ୍ଭମାନଙ୍କର କବି ଓ ସଂସ୍କାରକ ମଧୁସୂଦନ ସେହି ପଥାବଲମ୍ବୀ ହୋଇ ଗାଇଅଛନ୍ତି—

"ଜଣାଅ ମାନବ ସନ୍ତାନେ
ଉଚ୍ଚ କୁଳ ତାହାର,
ସେ ଯେ ବ୍ରହ୍ମସୁତ, ଏ ବାର୍ତ୍ତା
କର ଭବେ ପ୍ରଚାର ।

"ନବବସନ୍ତଭାବନା" ପରି "ଆଶା" କବିତାଟିରେ ମଧ୍ୟ ମଧୁସୂଦନ ପ୍ରଥମେ ନୈରାଶ୍ୟର ଛାୟା ସନ୍ଦର୍ଶନ କରି ଶେଷରେ ଆଶା ଓ ଆଶ୍ୱାସର ଆଲୋକଚ୍ଛଟା ସନ୍ଦର୍ଶନ କରିଅଛନ୍ତି । "ଆଶା"ର ବିମୋହନ ରୂପରେ ମୁଗ୍ଧ କବିର ଅନ୍ତର ଉଦ୍‌ବେଳିତ ହୋଇ ଉଠିଅଛି ।

"ଚରଣେ କିରଣମୟ ଶତଦଳ ଦଳ
ଉଠଇ ଝଲକି,
ହଂସୀଏ ନଅନ୍ତ ତୋଳି ସେହି ଶତଦଳ
ହର୍ଷେ ହସି ହସି ।"

'ଆତ୍ମସମର୍ପଣ'ରେ ମଧୁସୂଦନ କେତେଗୋଟି ଉପମା ଓ ଉପମେୟ ଦ୍ୱାରା ଜୀବାତ୍ମା ଓ ପରମାତ୍ମାର ସମ୍ବନ୍ଧ ନିର୍ଣ୍ଣୟ କରିଅଛନ୍ତି । ଉପମାଗୁଡ଼ିକ ପୁରାତନ ହେଲେ ମଧ୍ୟ ଯେପରି ପରିପାଟିରେ ସନ୍ନିବିଷ୍ଟ

ହୋଇଅଛି, ତଦ୍ଦ୍ୱାରା ସୀମା ଓ ଅସୀମ, ବ୍ୟଷ୍ଟି ଓ ସମଷ୍ଟିର ଅଚ୍ଛେଦ୍ୟ ବନ୍ଧନ ପ୍ରତି ଭାବୁକ ଚକ୍ଷୁ ଜାଗ୍ରତ ହୋଇ ଉଠେ, ଯଥା—

"ତୁମ୍ଭେ ପରିପୂର୍ଣ୍ଣ ଆନନ୍ଦ ସ୍ୱରୂପ,
ମୁଁ ସେ ଆନନ୍ଦ ସନ୍ତାନ,
ମୁହିଁ କ୍ଷୁଦ୍ର ଊର୍ମି, ତୁମ୍ଭେ ମହାସିନ୍ଧୁ,
ଊର୍ମି ସିନ୍ଧୁ ଏକାକାର ।

ପୁନଶ୍ଚ,

ବହିରଙ୍ଗ ମୁହିଁ, ଅନ୍ତରଙ୍ଗ ତୁମ୍ଭେ,
ତୁମ୍ଭ ବିନା କାହିଁ ପ୍ରାଣ ।

'ଭାରତଭାବନା" କବିତାଟିରେ କବି ଭାରତର ଅତୀତ ଗୌରବର ସ୍ତୁତି ଗାନ କରିଅଛନ୍ତି, ଭାରତର ସେହି ପୁଣ୍ୟମୟ ଅତୀତ ସ୍ମରଣ କରି ମଧୁସୂଦନ ଯେପରି ନିଜକୁ ଧନ୍ୟ ଜ୍ଞାନ କରିଅଛନ୍ତି । ପୁଣ୍ୟତୋୟା ସରସ୍ୱତୀ ତୀରରେ ଋଷିକଣ୍ଠରୁ ସେହି ଯେ ପ୍ରଥମ ପ୍ରଶାନ୍ତ ଓଁକାର ବେଦମନ୍ତ୍ର ସ୍ଫୁରିତ ହେଲା, ଯୋଧେନ୍ଦ୍ର ଜନନୀ ଅଯୋଧ୍ୟାର ସୂର୍ଯ୍ୟବଂଶର ସେହି ଯେ କୀର୍ତ୍ତି ମହାଗୀତ ଆଦିକବି ବାଲ୍ମୀକିଙ୍କ କଣ୍ଠରୁ ନିଃସୃତ ହିଁହେଲା, ଭାରତହ୍ରଦକୌସ୍ତୁଭ କୌରବଗୌରବ ସେହି ଯେ ଇନ୍ଦ୍ରପ୍ରସ୍ଥ, ହସ୍ତିନା, ପୁନଶ୍ଚ ନିର୍ବାଣତତ୍ତ୍ୱର ସାଧକ ସେହି ଯେ ପରମ ଯୋଗୀ ଶାକ୍ୟସିଂହଙ୍କର ଉଦାର ସାମ୍ୟ ଧର୍ମ, ତାହାରି ସହିତ ତୁଳନା କରି କବି ଭାରତର ବର୍ତ୍ତମାନ ଦୁରବସ୍ଥା ଯୋଗୁଁ କ୍ଷୁଣ୍ଣ ହୋଇଅଛନ୍ତି । କବିତାଟି ପାଠ କରି ଭାରତୀୟର ଜଡ ସୁପ୍ତ ଅନ୍ତର ମୁହୂର୍ତ୍ତକ ପାଇଁ ହେଲେ ସ୍ପନ୍ଦିତ ହୋଇ ଉଠେ । ଭାରତର ଅତୀତ ଗୌରବଗାଥା ସ୍ମରଣ କରି ପ୍ରତି ଭାରତୀୟର ଅନ୍ତର ସଜଳ ହୋଇ ଉଠେ ।

---

# ଚତୁର୍ବିଂଶ ପରିଚ୍ଛେଦ ।

## ଶ୍ରେଷ୍ଠତମ ସୃଷ୍ଟି ।

ଉତ୍କଳର ବାଣୀମନ୍ଦିରରେ ମଧୁସୂଦନଙ୍କର ଯେ କେତେଗୋଟି ରତ୍ନ ସ୍ଥାନ ପାଇଅଛି, ତନ୍ମଧ୍ୟରେ ସର୍ବାପେକ୍ଷା ଉଜ୍ଜ୍ୱଳତମ ଦୁଇଗୋଟି ରତ୍ନ—'ଋଷିପ୍ରାଣେ ଦେବାବତରଣ' ଓ 'ହିମାଚଳେ ଉଦୟୋତ୍ସବ' । ଉତ୍କଳ ସାହିତ୍ୟକ୍ଷେତ୍ରରେ ଏ ଦୁଇଟି ମଧୁସୂଦନଙ୍କର ଅଭିନବ ସୃଷ୍ଟି ଏବଂ କାବ୍ୟ ହିସାବରେ ଏ ଦୁଇଟିର ସ୍ଥାନ କାହାରଠାରୁ ନିମ୍ନରେ ନିର୍ଦ୍ଦେଶ କରାଯାଇ ନ ପାରେ । କେବଳ ଏହି ଦୁଇଟି କବିତା ଲେଖି ସେ କ୍ଷାନ୍ତ ହୋଇଥିଲେ କବିସୂର୍ଯ୍ୟ ବଳଦେବ ରଥ 'ଚମ୍ପୂ' ସଙ୍ଗୀତରେହିଁ ପ୍ରତିଷ୍ଠା ଲାଭ କରିବା ପରି ଉତ୍କଳରେ ତାଙ୍କ ସ୍ଥାନ ବର୍ତ୍ତମାନଠାରୁ କୌଣସି ଅଂଶରେ ସାମାନ୍ୟ ହୋଇନ୍ତା ନାହିଁ । ଭାଷାମାଧୁର୍ଯ୍ୟ, ଭାବଗାମ୍ଭୀର୍ଯ୍ୟ, ସୌନ୍ଦର୍ଯ୍ୟଜ୍ଞାନ ଓ ଆଦର୍ଶରୁଚିର ଯେ ପରାକାଷ୍ଠା ଏ ଦୁଇଟି କବିତାରେ ପ୍ରତିଫଳିତ ହୋଇ ପାରିଅଛି, ଗ୍ରନ୍ଥାବଳୀରେ ଅନ୍ୟତ୍ର ତାହା ଦେଖାଯାଏ ନାହିଁ । ମଧୁସୂଦନ ଏଠାରେ ଯଥାର୍ଥ ସ୍ରଷ୍ଟାର ଆସନ ଗ୍ରହଣ କରିଅଛନ୍ତି । କବି ଯେ ସୃଷ୍ଟି କରି ପାରେ, ଏହିଠାରେହିଁ ତାହା ପ୍ରମାଣିତ ହୋଇଅଛି । ଏଠାରେ ଆର୍ଟିଷ୍ଟର ସମଗ୍ର ଆତ୍ମାଟି ମୂର୍ତ୍ତିମାନ୍ ଓ ପ୍ରକାଶିତ ହୋଇ ପଡ଼ିଅଛି । ଏହାହିଁ ଏ ଦୁଇ କବିତାର ଶ୍ରେଷ୍ଠତ୍ୱର ମୂଳ କାରଣ । 'ଋଷିପ୍ରାଣେ ଦେବାବତରଣ' କବିତାଟିର ମୂଳଭିତ୍ତି ଭାରତର ସେହି ଅତିପ୍ରାଚୀନ ଗ୍ରନ୍ଥ ବେଦର ଜନ୍ମବ୍ୟାଖ୍ୟାନ । ଯେଉଁ ଗ୍ରନ୍ଥରେ ଭାରତର ସକଳ ଧର୍ମ, ସକଳ ସଭ୍ୟତାର ଚୂଡ଼ାନ୍ତ ନିଦର୍ଶନ ବିଦ୍ୟମାନ, ଯେଉଁ ଗ୍ରନ୍ଥ ସ୍ୱୟଂ ଭଗବାନଙ୍କର ବାଣୀ ବୋଲି ପ୍ରତି ଭାରତୀୟ ଅନ୍ତରରେ ଅଟଳ ସଂସ୍କାରଗତ ବିଶ୍ୱାସରୂପରେ ଦୃଢ଼ମୂଳ ହୋଇଅଛି, ତାହାର ଜନ୍ମବର୍ଣ୍ଣନା କରିବାକୁ ଯାଇ ପ୍ରଥମେହିଁ କବି ସୃଷ୍ଟିର ଅତୀତ କଳ୍ପନାର

ଆଭାସ ଦେଇଅଛନ୍ତି । 'ଋଷିପ୍ରାଣେ ଦେବାବତରଣ' କବିତାଟିର ପରିକଳ୍ପନା କବିଙ୍କ ଚିତ୍ତରେ କେବେ ଉଦିତ ହୋଇଅଛି, ତାହାର ଉଲ୍ଲେଖ କୌଣସିଠାରେ ନାହିଁ । କିନ୍ତୁ 'ଭାରତ-ଭାବନା' ଓ 'ଉଦ୍ବୋଧନ' କବିତାଦ୍ୱୟରୁ ଅନୁମିତ ହୁଏ, କବି ପୂର୍ବରୁ ଅନେକ ଥର ଚିନ୍ତା ଏ କବିତାଟି ରଚନା କରିଅଛନ୍ତି । 'ଭାରତ-ଭାବନା'ରେ ଭାରତର ଅତୀତ ଗୌରବ ବ୍ୟାଖ୍ୟା ନ କରି କବି ସୂଚନା ଦେଇଅଛନ୍ତି,

"କାହିଁ ସେହି ନଦୀ ପୁଣ୍ୟତୋୟା ସରସ୍ୱତୀ,
ଯାର କୂଳେ ଋଷିକଣ୍ଠେ ସ୍ଫୁରିଲା ଗମ୍ଭୀରେ
ଈଶସ୍ତୁତି ବେଦରୂପେ ମୋହି ବସୁମତୀ
ଅମୃତ ସଙ୍ଗୀତ ତାନେ, × ×

'ଉଦ୍‌ବୋଧନ' କବିତାରେ ମଧ୍ୟ ବାଣୀ ଆରାଧନା ଛଳରେ କବି ଗାଇ ଅଛନ୍ତି—

"ଆର୍ଯ୍ୟ-ଋଷି-ମୁଗ୍ଧ-ପ୍ରାଣେ ଦେବାବତରଣେ—
ମହୋଦାର ପୁଣ୍ୟଚିହ୍ନ କରି ଦରଶନ
ଲଭିବି ବାଞ୍ଛିତ ଫଳ,
ଏ ଚିତ୍ତ ହେବ ନିର୍ମଳ,

ଭଜିବି ଭକତିଭରେ ତୋର ଶ୍ରୀଚରଣ,
ଦୟା କର ଦୟାମୟି ! ମୁହିଁ ଅକିଞ୍ଚନ ।"

'ଋଷିପ୍ରାଣେ ଦେବାବତରଣ' ୧୮୯୪ ଖ୍ରୀଷ୍ଟାବ୍ଦରେ ଲିଖିତ ହୋଇଥିଲା, ଅର୍ଥାତ୍ ସେ ସମୟକୁ କବି ୪୧ ବର୍ଷ ବୟସରେ ପଦାର୍ପଣ କରିଥିଲେ । 'ହିମାଚଳେ ଉଦୟ ଉତ୍ସବ' କବିତାଟି ୧୯୧୬ ମସିହାରେ ଲିଖିତ । ସୁତରାଂ କବିଙ୍କର ଏହା ଅନ୍ତିମ ସମୟ ଓ ୬୩ ବର୍ଷ ବୟସରେ ଲିଖିତ କବିତା । ଉକ୍ତ କବିତା କବିଙ୍କର ଦୁଇଗୋଟି ପରିପକ୍ୱତା ଲାଭ କରିବାର ସମୟକୁ ନିର୍ଦ୍ଦେଶ କରୁଅଛି । ଗୋଟିଏ କାବ୍ୟର, ଅନ୍ୟଟି

ଦର୍ଶନର; ଗୋଟିଏ ପ୍ରେମର, ଅନ୍ୟଟି ବିଶ୍ୱାସର; ଗୋଟିଏ ଜ୍ଞାନର, ଅପରଟି ଧର୍ମର । ଗୋଟିଏ ସେହି 'ବେଦାହମେତଂ' ପୁରୁଷଙ୍କର ପୂର୍ଣ୍ଣ ସାଧନା, ଅନ୍ୟଟି ସେହି ଅବାଙ୍‌ମନସଗୋଚରଙ୍କର ବିଶିଷ୍ଟ କଳ୍ପନା । କବିତା ଦୁଇଟିରେ କେବଳ ମଧୁସୂଦନଙ୍କର ଆତ୍ମା ଉଦ୍ଭାସିତ ହୋଇ ନାହିଁ, ଏଥିରେ ସମଗ୍ର ଭାରତର ଦେବଜନବନ୍ଦିତ ଶ୍ରେଷ୍ଠ ମହଦାତ୍ମା ପ୍ରକଟିତ ହୋଇ ପାରିଅଛି । ଆଲୋକପ୍ରାର୍ଥୀ ମଧୁସୂଦନ ଦୁଇଟି କବିତାର ସମସ୍ତ ଦିବସର ସର୍ବଶ୍ରେଷ୍ଠ କାଳ ବ୍ରାହ୍ମମୁହୂର୍ତ୍ତକୁ ନିର୍ଦ୍ଦେଶ କରିଅଛନ୍ତି । ଦୁଇଟି କବିତା ଭାରତର ସେହି ମହଦାଦର୍ଶ ପୁଣ୍ୟ ତପୋବନ ଋଷ୍ୟାଶ୍ରମ ପ୍ରତି ଭାରତୀୟଙ୍କ ଅନ୍ତରକୁ ଆକର୍ଷଣ କରେ । ଋଷିକଣ୍ଠରୁ ବେଦବାଣୀର ଗୁରୁଗମ୍ଭୀର ସ୍ୱର ନିଃସୃତ ହୋଇ ଏହି ଯେ ଭାରତର ବାୟୁମଣ୍ଡଳକୁ ଆଚ୍ଛନ୍ନ କରିଅଛି, ସେଥିରୁ ତାହା ଶ୍ରବଣ କରିବା ପାଇଁ ଭାରତୀୟର କର୍ଣ୍ଣ ଉଦ୍‌ଗ୍ରୀବ ରହେ ।

"ତ୍ରିଷ୍ଟୁଭ ଗାୟତ୍ରୀ ଛନ୍ଦେ ଗୀର୍ବାଣ-ଉଦ୍ଭବ
ଚାଳଣ କରନ୍ତି ଋଷି ସ୍ତବ ଅଭିନବ ।"

'ଋଷିପ୍ରାଣେ ଦେବାବତରଣ' କବିତାଟିର ପରିକଳ୍ପନା ଅତି ସୁନ୍ଦର । ନିଶାଶେଷ—ବ୍ରାହ୍ମବେଳା । ଏହି ସମୟକୁହିଁ ଜ୍ଞାନୋନ୍ମେଷକାରିଣୀ ବୋଲି ପ୍ରାଚୀନ ଭାରତୀୟମାନେ ନିର୍ଦ୍ଦେଶ କରିଅଛନ୍ତି । ଉଷାର ବିଚିତ୍ର ଛଟା ପ୍ରାଚୀଭାଲରେ ଚର୍ଚ୍ଚିତ ହୋଇଅଛି ।

"ଜ୍ୟୋତିର ସିନ୍ଦୂର ବିନ୍ଦୁ, ଜ୍ୟୋତିର ବଳୟ,
ଜ୍ୟୋତିର୍ମୟ ଅବତଂସ, ମାଳା ଜ୍ୟୋତିର୍ମୟ,
ଜ୍ୟୋତିର୍ମୟ ପାରିଜାତ ଦିଗ୍‌ବଧୂ—କୁନ୍ତଳେ
ଫୁଟାଇଲେ ଜ୍ୟୋତିର୍ମୟୀ ଉଷା କୁତୂହଳେ ।"

ସମସ୍ତ ବିଶ୍ୱ ଜ୍ୟୋତିର୍ମୟ । ଏକେ ତ 'ତରଳ ରଜତପୂରେ ପ୍ଲାବିତ ପୌର୍ଣ୍ଣମାସୀ ଜ୍ୟୋତ୍ସ୍ନା !' ସେଥିରେ ପୁଣି

'ଦ୍ୟୁଲୋକ-ଦୁହିତା ଉଷା ତହିଁରେ ଅବିର
ଦୋହନ କରନ୍ତି କାମଧେନୁ ଦିବାକର ।'

ସେହି ଯେ ଦୋହନଜାତ ଦୁଗ୍ଧ, ତାହା ଉଜ୍ଜ୍ୱଳ ଆଲୋକ-ରୂପେ ବିଶ୍ୱସଂସାରକୁ ପ୍ଳାବିତ କରୁଅଛି ।

'ଶ୍ରୀକର ପରଶେ ଯେସନ୍ତେ କ୍ଷୀର ପାରାବାର
ଉଜ୍ଜ୍ୱଳ ଆଲୋକରୂପେ ପ୍ଳାବଇ ସଂସାର ।'

ଆଲୋକ ସ୍ପର୍ଶରେ ଚତୁର୍ଦ୍ଦିଗ ଉଜ୍ଜୀବିତ ହୋଇ ଉଠିଅଛି ; ଶିଶିର-ମୁକ୍ତାମାଳରେ ସୁନ୍ଦରୀ ଅବନୀ ପ୍ରଣିପାତ କରି ଜାଗ୍ରତ ହୋଇ-ଅଛି ।

ଏହି ପୂତ ମଧୁର ସମୟରେ ପୁଣ୍ୟତୋୟା ସରସ୍ୱତୀ ତୀରରେ ଭାରତର ଋଷି ଉଦ୍ଗ୍ରୀବ ହୋଇ ଉଷାର ବନ୍ଦନା ଆରମ୍ଭ କରିଅଛନ୍ତି । ପଢନ୍ତି ସେହି ବୈଦିକ ଭରଦ୍ୱାଜଙ୍କ ବେଦପ୍ରଖ୍ୟାତ ଉଷା-ବନ୍ଦନା କବିତାଟି ସ୍ମରଣ କରାଇ ଦିଏ । ଋଷିଙ୍କ ସ୍ୱରୂପ ବର୍ଣ୍ଣନା ମଧ୍ୟ ଯଥାଯୋଗ୍ୟ ହୋଇଅଛି ।

'ସ୍ୱର୍ଣ୍ଣ-କାନ୍ତି ହେମ-ଗୌର ରମ୍ୟ କଳେବର,
ପ୍ରଶସ୍ତ ଲଲାଟ—ଲୀଳାମଞ୍ଚ ଚୈତନ୍ୟର ।
ବିଶାଳ ଲୋଚନଯୁଗ ଆକର୍ଣ୍ଣ ବିଶ୍ରାନ୍ତ,
ଝରଇ ଯହିଁରୁ ଜ୍ୟୋତିଧାରା ସୁପ୍ରଶାନ୍ତ ।'

ଭାରତର ସେ ଆଦି ଋଷି କେବଳ ମୌନାବଲମ୍ବୀ ସାଧକ ନୁହନ୍ତି, ସେ କବି ଏବଂ ସ୍ରଷ୍ଟା ।

'ଓଷ୍ଠଯୁଗ ବାଣୀଙ୍କର ମାଣିକ୍ୟ ସୋପାନ,
ବିଶ୍ୱକର୍ମା ବିଧାତାର ରଚିତ ନିର୍ମାଣେ ।'

ସେହି ପୁରାଣ କବିଙ୍କର ସୌମ୍ୟ ବପୁ ପ୍ରତି ଭାରତପୁର ଅନ୍ତରରେ ଚର୍ଚ୍ଚିତ । ମଧୁସୂଦନ ତାହାରହିଁ ପୁନରାବୃତ୍ତି କରିଅଛନ୍ତି,

'ଅଗ୍ନି-ପ୍ରଭ-ଜଟାଜାଲ ଅଜାନୁଲମ୍ବିତ,
କୃଷ୍ଣରୋମାବଳୀ-ଶ୍ମଶ୍ରୁ ଆନନେ ଶୋଭିତ ।'

କବିଚକ୍ଷୁରେ ପ୍ରକୃତିର ଶୋଭା ଉଦ୍ଭାସିତ, ସୃଷ୍ଟିର ଆନନ୍ଦରେ କବି-ପ୍ରାଣ ପରିପ୍ଳୁତ ଏବଂ ଏହି ସୁମହାନ୍ ସୁନ୍ଦର ପ୍ରକୃତି ଯେଉଁ ବିଶ୍ୱ କବିର ପରିକଳ୍ପନା, ତାହାର ପାଇଁ ମୁଗ୍ଧ କବିର ଆତ୍ମା ଉନ୍ମୁଖୀନ ହୋଇଅଛି ।

'ଅମୂର୍ତ୍ତ ମୂରତି ଆହା ରୂପ ନିରୁପମ,
ଅନନ୍ତ ଅନଳବ୍ୟାପୀ ସ୍ଥାବର ଜଙ୍ଗମ,
× × ×
ଦୂରରୁ ସୁଦୂର, ଚିନ୍ତା-ବାକ୍ୟ-ଅଗୋଚର,
ନିକଟୁଁ ନିକଟ, ପ୍ରାଣ ସମଗ୍ର ପ୍ରାଣର,
ଅଶବ୍ଦ ଅସ୍ପର୍ଶ ସେହି ଅରୂପ ଅରସ,
କିନ୍ତୁ ରେ ପରମ ସତ୍ୟ ମହାନନ୍ଦ ରସ ।'

କବି ମହାଭାବରେ ଅଭିଭୂତ ହୋଇଅଛନ୍ତି, ସେ ଅବାକ୍ ନିସ୍ପନ୍ଦ ! ଏହି ଇନ୍ଦ୍ରିୟାତୀତ ସ୍ୱରୂପର ଅଭିବ୍ୟକ୍ତିପାଇଁ କବି ଅଶକ୍ତ, ଅସମର୍ଥ ।

'ଦେଖୁ ଦେଖୁ ଅଭିଭୂତ ମହାଭାବେ ହେଲା
ଦେଖୁ ଦେଖୁ ନିମୀଳିତ ନୟନର ଡୋଳା ।'

ଏ ଅବସ୍ଥା କବିର ସର୍ବ ପ୍ରଥମ ଅବସ୍ଥା । ବିଶ୍ୱପ୍ରକୃତି ମଧ୍ୟରେ ବିଶ୍ୱସ୍ରଷ୍ଟାଙ୍କର ଅଙ୍ଗୁଳିସ୍ପର୍ଶ ଅବଲୋକନ କରି, ବିଶ୍ୱର ଆଲୋକ-ପବନରେ ସେହି ଆଦିଦେବଙ୍କର କବିଙ୍କର ଅନନ୍ତ ସଙ୍ଗୀତର ଝଙ୍କାର ଶ୍ରବଣ କରି କବିର ଚିତ୍ତ ସ୍ତମ୍ଭୀଭୂତ, କବିର ମୁଖ ବାକ୍ୟବିହୀନ । ଏହି

ଅସୀମ ସ୍ୱରୂପ ତାର ସସୀମ ଜୀବନରେ ଉପଲବ୍ଧି କରି ସେ ମହାଭାବରେ ଅଭିଭୂତ, ତାହାର ବାକ୍ୟ ବାଧାପ୍ରାପ୍ତ । ସେହି ସୃଷ୍ଟିର ସଙ୍ଗୀତ ଶ୍ରବଣ କରି କବି କେବଳ ଅବାକ୍ ହୋଇ ଶ୍ରବଣ କରେ ।

'ଆମି ଅବାକ୍ ହୟେ ଶୁନି କେବଲ୍ ଶୁନି ।'

କବିର ବାକ୍ୟ ସ୍ଫୁରଣ ନାହିଁ । ତାର ସୀମାବଦ୍ଧ ଜୀବନ ତାକୁ ପଦେପଦେ ବ୍ୟାହତ କରି ଦେଉଅଛି ।

'କହିତେ କି ଚାଇ କହିତେ କଥା ବାଧେ;
ପରାଣ ଆମାର ହାର୍ ମେନେ ଯେ କାନ୍ଦେ ।'

ମଧୁସୂଦନ ଏ କବିତାଟିରେ ସେହି ଆନନ୍ଦର ଅବର୍ତ୍ତ— ସ୍ତବ୍ଧତାର ଜନ୍ମକୁ ସୂଚିତ କରିଅଛନ୍ତି । କବି ଦ୍ୱିତୀୟ ଅବସ୍ଥାକୁ ପ୍ରାପ୍ତ ହୋଇଅଛି । ତାର ନିରୁଦ୍ଧ ହୃଦୟାବେଗ ଆନନ୍ଦାଶ୍ରୁରେ ତରଳ ହୋଇ ବହୁଅଛି ।

'ପ୍ରେମାଶ୍ରୁ ଉଛୁଳି ପଡ଼େ ନୟନ ଯୁଗଳେ,
ସୁନ୍ଦର କପୋଳେ ଧାରା ବହେ ଅବିରଳେ ।'

ସେ ଚିତ୍ର ଉପରି—

'ହିମଗୌରୀ, ହିମାଚଳ-କପୋଳେ ଯେସନ
ଜାହ୍ନବୀ-ଯମୁନା-ଧାରା ବହେ ଘନ ଘନ ।'

କବିହୃଦୟତନ୍ତ୍ରୀରେ ବିଶ୍ୱତନ୍ତ୍ରୀର କମ୍ପନ ଅନୁଭୂତ ହୋଇଅଛି । କବି ତୃତୀୟ ଅବସ୍ଥାରେ ଉପନୀତ ହୋଇଅଛି । ଭାଷାରେ, ଛନ୍ଦରେ ତାହାର ଉଚ୍ଛ୍ୱାସ ସ୍ଫୁରିତ ହୋଇଅଛି । କବିତାର ଜନ୍ମ ହୋଇଅଛି ।

'ଚକିତରେ ଛିନ୍ନ ହେଲା ମର୍ମଗ୍ରନ୍ଥି ଚୟ,
ଗମ୍ଭୀର ଉଚ୍ଛ୍ୱାସେ ପୂର୍ଣ୍ଣ ଋଷିର ହୃଦୟ ।
ଋଷିର ନିରୁଦ୍ଧ କଣ୍ଠ ଭେଦି ଅସମ୍ଭାଳେ
ଉଛୁଳଇ ବାଣୀ ସ୍ରୋତ ବଦନାନ୍ତରାଳେ ।'

ଋଷିର ଗୌରବତା କଣ୍ଠସ୍ୱର ଓଁକାର ଝଙ୍କାରରେ ଛନ୍ଦ ହୋଇଅଛି । ଋଷିର ସାଧନା କଣ୍ଠସ୍ୱର ପ୍ରେମାପ୍ଲୁତ ଛନ୍ଦରେ ସାର୍ଥକ ହୋଇଅଛି ।

'ନିଷ୍ଠୁର ଗାୟତ୍ରୀ ଗୀର୍ବାଣ-ବୈଭବ
ଚାଳଣ କରନ୍ତି ଋଷି ସ୍ତବ ଅଭିନବ ।'

ଭାରତର ସେହି ପ୍ରାଚୀନ ଋଷି-କବିଙ୍କର ସାଧନା ମଧୁସୂଦନଙ୍କ ଜୀବନର ମୂଳ ଆଦର୍ଶ ଥିଲା ।

'ହିମାଚଳେ ଉଦୟ ଉତ୍ସବ' କବିତାଟି ଏହି ଉଷାର ଅବଲମ୍ବନରେ ଲିଖିତ । ହିମାଚଳହିଁ ଉଷାର ଆଦି ଜନ୍ମସ୍ଥଳରୂପେ ଏଠାରେ କଳ୍ପିତ ହୋଇଅଛି । ଏଠାରେ ମଧ୍ୟ ସେହି ପ୍ରାଚୀନ ଆର୍ଯ୍ୟ ଋଷିଙ୍କର ପ୍ରଥମ ଉଷାଲୋକ ଦର୍ଶନରେ ଭକ୍ତିପ୍ରେମାପ୍ଲୁତ ଭାବ ପରିସ୍ଫୁଟ ହୋଇଅଛି ।

'ଜ୍ୟୋତିର ପରମାଶ୍ଚର୍ଯ୍ୟ ଲୀଳାର ବିଳାସେ
ଲାବଣ୍ୟର ଇନ୍ଦ୍ରଜାଲ ପ୍ରକଟେ ଆକାଶେ,
ଗୃହଆଡ଼େ କେତେ ପାଦଶୈଳ ଟେକି ଶିର
କି ପୁଣ୍ୟ-ପ୍ରତୀକ୍ଷାଭରେ ନିସ୍ତବଧ ସ୍ଥିର !'

ହିମାଦ୍ରି ଶିଖରରେ ଆଲୋକର ଜନ୍ମ ହୋଇଅଛି । ଶିଖରଚୟ ସେହି ନବାଲୋକର ଚୁମ୍ବନରେ ଯେପରି କମ୍ପିତ ହୋଇ ଉଠିଅଛି ।

'ପୁଣି କି ରହସ୍ୟମୟ ବିପୁଳ ପୁଲକେ
ସେ ନଗେନ୍ଦ୍ର କ୍ଷଣେ ଅବଲୋକ ଊର୍ଦ୍ଧ୍ୱଲୋକେ
ଅବ ଉଠିଲାକି ଯେହ୍ନେ ମହା ପ୍ରେମାବେଶେ
ଆଶୀର୍ବାଦ ଭାନୁ-ଚୁମ୍ବ ଲଭି ଭାଲଦେଶେ !

ବାଳାର୍କର ଶୁଭାଗମସୂଚକ ପ୍ରାଚୀଭାଲର ପାଟଳିମା ଜାଗି ଯାଇଅଛି ଆଲୋକର ଲହରୀ ବିଶ୍ୱଚରାଚରରେ କ୍ରମେ ପରିବ୍ୟାପ୍ତ ହେଉଅଛି ।

ଏ ବର୍ଣ୍ଣନାଟି ଅତୀବ ମନୋମୁଗ୍ଧକର । ଯେପରି ଏ ସମସ୍ତ ଚିତ୍ରଟି ପାଠକର ଚକ୍ଷୁ ସମକ୍ଷରେ ସ୍ପଷ୍ଟ ପ୍ରତିଭାତ ହେଉଅଛି ।

'ସୁବର୍ଣ୍ଣଲହରୀ ମାତିଗଲା ଗିରିକାନ୍ତେ ।
ଉଚ୍ଛ୍ୱସି ଉଠିଲା ଗିରି-ବକ୍ଷ ଆନନ୍ଦରେ,
ସଂଗମ ଉଚ୍ଛୁଳାଇଲା ଜ୍ୟୋତି ଭୂଧରେ ଭୂଧରେ,
ପୂରୁବେ ଦକ୍ଷିଣେ ପୁଣି ପଶ୍ଚିମେ ଉତ୍ତରେ,
ଶତ ଶତ କୋଶବ୍ୟାପୀ ଶତ ମହୀଧରେ ।'

ସେ ଆଲୋକ କବିର ଅନ୍ତରେ ଅନ୍ତରେ ପ୍ରବେଶ କରିଅଛି । ସେ ଉତ୍ସବ ଅବଲୋକନରେ କବିପ୍ରାଣ ମହାପ୍ରେମାବେଶରେ ଉତ୍ଫୁଲ୍ଲ ହୋଇ ଉଠିଅଛି ।

'ଦେଖି ଏହି ମହାଭୂତ ଉଦୟ-ଉତ୍ସବ,
ଜ୍ୟୋତିର ପରମାଶ୍ଚର୍ଯ୍ୟ ଶୋଭାର ବିଭବ,
ଏ ଦେହର ଅଙ୍ଗେ ଅଙ୍ଗେ ପ୍ରତି ଲୋମକୂପେ
ସଞ୍ଚରିଲା ନବ ପ୍ରାଣ ମହାହର୍ଷ-ରୂପେ ।'

ପ୍ରକୃତିର ଏହି ଶୋଭାବୈଭବରେ କବିପ୍ରାଣ ପ୍ରକୃତି ସହିତ ପରିଣୀତ ଓ ବିଲୀନ ହୋଇଅଛି ।

'ମୋ ପ୍ରାଣ ବିଲୀନ ହେଲା ପ୍ରକୃତିର ପ୍ରାଣେ,
ପ୍ରକୃତିର ପ୍ରାଣ ଉଚ୍ଛ୍ୱସିତ ମୋ ପରାଣେ ।'

ଦିବସ ରଜନୀର ଓ ଆକାଶ ଅବନୀର ଏହି ମହାସଙ୍ଗମସ୍ଥଳରୂପ ପରମ ତୀର୍ଥରେ କବି ପ୍ରକୃତି ସହିତ ଦିବ୍ୟ-ପରିଣୟରେ ପରିଣୀତ ହୋଇ 'ବିଶ୍ୱବାଡ଼ୀ-ମୂଳାଧାର ଅନାଦି-ଚରଣ' ସନ୍ଦର୍ଶନ କରି-ଅଛନ୍ତି ।

'ଯଦି ଏବେ ଯେଥାୟ ମେଶେ
ଚିନେଇ ପାରିବାରେ,
ତୋମାୟ ଆମାୟ ଦେଖା ହଲ ଗୋ
ସେଇ ମୋହାନାର ଧାରେ ।'

ବିଶ୍ୱର ସେହି ରସରାଜଙ୍କ କୃପାରେ କବି ଅନ୍ତର ରସପୂର ହୋଇ ଉଠିଅଛି । କବିଙ୍କର ଆନନ୍ଦବାଦ (Optimism) ଚରମ ସୀମାରେ ଉପନୀତ ହୋଇଅଛି ।

'ହେ ଅନାଦି ହେ ଅନନ୍ତ—ରସ ପ୍ରସ୍ରବଣ,
ମୋର ଆଦି ଅନ୍ତ ରସେ ରସେ ନିମଗନ ।'

କବିର ଅନ୍ତର ବିପୁଳ ରସୋଦ୍‌ବେଗରେ ଫୁଲି ଉଠିଅଛି । ପୁଣ୍ୟର ଗୌରବରେ କବିର ହୃଦୟ ପୂତ, ମହୀୟାନ୍ ।

'ସତୀତ୍ୱ-ବିଭବେ ପୁଣି ସତୀତ୍ୱ-ଗୌରବେ
ଧନ୍ୟ ମୋ ଜୀବନ ତବ କୃପାୟ ଅନୁଭବେ ।'

ଏ କଥା ମଧୁସୂଦନଙ୍କ ମୁଖରେହିଁ ସୁନ୍ଦର ଶୁଣାଯାଏ । ମଧୁସୂଦନଙ୍କରହିଁ କହିବାକୁ ସାହସ ଜନ୍ମିଛି—

'ଏ ନିଖିଳ ବିଶ୍ୱ ଆଜ ନିଜସ୍ୱ ମୋହର,
ଏ ଉଡୁଜ ଏ ସୁକାନ୍ତ ଧରଣୀ ଅମ୍ବର ।'

ସେ କେବଳ ଏହି ବିଶ୍ୱବ୍ରହ୍ମାଣ୍ଡକୁ ନିଜର କରି ଦେଖି କ୍ଷାନ୍ତ ହୋଇ ନାହାନ୍ତି । ତାଙ୍କ ଅନ୍ତର ଅଧିକ କିଛି ଗୃହେଁ । ଉଷାର ପ୍ରଭାମୟ ଆଲୋକ ଅବଲୋକନରେ ତାଙ୍କ ଚକ୍ଷୁର ଆବରଣ ମୁକ୍ତ ହୋଇ ଯାଇଅଛି । ସେ ଏହି ବିଶ୍ୱର ରନ୍ଧ୍ରେ ରନ୍ଧ୍ରେ, ପ୍ରତି ଅଣୁ ପରମାଣୁରେ ସେହି ମହତ୍ ସତ୍ତା ସନ୍ଦର୍ଶନ କରି ପାରିଅଛନ୍ତି ଏବଂ ତାଙ୍କୁ ନିଜର ଧନ ବୋଲି ଆଲିଙ୍ଗନ କରି ନୃତ୍ୟ କରିଅଛନ୍ତି ।

'ଅଣୁରେ ଅଣୁରେ ନାଥ, ଏ ମହାବିଶ୍ୱର
ବାଜଅଛି ଅନାହତ ବୀଣା ବଂଶୀସ୍ୱର,

'ପ୍ରାଣେ ପ୍ରତିଧ୍ୱନି ତାର ହଉଛି ସଞ୍ଚର—
ମୋହର ମୋହର ତୁମ୍ଭେ ମୋ ହରି ମୋ ହରି ।'

ସେ ତାଙ୍କରି ହରି । କାରଣ ତାଙ୍କର ସସୀମ ଜୀବନରେ ସେ ସେହି ଅସୀମ ସତ୍ତା ଅନୁଭବ କରିଅଛନ୍ତି । ସେ ଯେ ଅସୀମ ଜୀବନ ପେନି ଜନ୍ମ ଗ୍ରହଣ କରିଅଛନ୍ତି, ଏହି ପରମାୟୁ କାଳ ମଧ୍ୟରେ ତାଙ୍କର ଜୀବନ ଆବଦ୍ଧ ନୁହେ, ତାହା କାଳାକାଳର ଅତୀତ, ତାହାର ଆଦି ନାହିଁ, ଅନ୍ତ ନାହିଁ, ସେ ସେହି ପରମ ସତ୍ତାର ଅଙ୍ଗୀଭୂତ ।

'କାଳର ଆରମ୍ଭ ଅଗୁଁ ହେ ପରମ ବର,
ବରିଅଛି ଅକିଞ୍ଚନ ଏ ପ୍ରାଣ ମୋହର,
ପରମ ବରେଣ୍ୟ ଏବେ ଏ କ୍ଷୁଦ୍ର ଜୀବନ
ପରମ ଶ୍ରୀପଦ ତବ ବରୁ ଅନୁକ୍ଷଣ ।'

ମଧୁସୂଦନଙ୍କର ଦର୍ଶନ ଏଠାରେ ଶୀର୍ଷ ସ୍ଥାନକୁ ସ୍ପର୍ଶ କରିଅଛି, ତାଙ୍କର ବିଶ୍ୱାସ ଭାଷାରେ, ଭାବରେ ମୂର୍ତ୍ତିମନ୍ତ ହୋଇଅଛି । ମାନବଜୀବନ ପରମାୟୁକାଳ ମଧ୍ୟରେ ଆବଦ୍ଧ ନୁହେ । ତାହା ସତ୍ୟ ସନାତନ ଓ ଶାଶ୍ୱତ । ଏହି ବିଶ୍ୱାସ ମନୁଷ୍ୟଙ୍କୁ ଅମୃତପଦବୀ ଦାନ କରେ, ମହୀୟାନ୍ କରେ. ମଧୁସୂଦନଙ୍କର ଏହି ବିଶ୍ୱାସ ଥିଲା ।



# ପଞ୍ଚବିଂଶ ପରିଚ୍ଛେଦ ।

## ଧର୍ମମୂଳକ ନୀତିଗର୍ଭ କବିତା ।

ଧର୍ମବିଷୟକ କବିତା ମଧ୍ୟରେ "ଜୀବନ-ଚିନ୍ତା" ଅନ୍ୟତମ । ଏହା କବିର କବିତା ନୁହେ, ବୈରାଗୀର କବିତା । ମଧୁସୂଦନଙ୍କର ବୈରାଗ୍ୟ (Pessimism) ଏ କବିତାଟିରେ ଅତି ସୁସ୍ପଷ୍ଟ ହୋଇଅଛି । ଏଠାରେ କବି 'ମଧୁମୟ ସୃଷ୍ଟି ସୁଧାମୟ ସୃଷ୍ଟି' ବୋଲି ଆନନ୍ଦରେ ହସ୍ତୋତ୍ତୋଳନ କରି ନୃତ୍ୟ କରି ନାହାନ୍ତି । ଏ ସଂସାର ମାୟାର ଆଗାର, ଅସତ୍ୟ, ବିଷମୟ ହୋଇ ତାଙ୍କ ଚକ୍ଷୁକୁ ଦେଖାଯାଇଅଛି । ଯେଉଁ ଅଗତିର ଗତି, ପତିତପାବନଙ୍କୁ ସେ ଉଦ୍ଧାରପାଇଁ ପ୍ରାର୍ଥନା କରିଅଛନ୍ତି, ତାଙ୍କୁ ଏ ପାପ ସଂସାରରୁ ପୃଥକ୍ କରି ଦେଖିଅଛନ୍ତି । ଏହା ତାଙ୍କର ଶ୍ରେଷ୍ଠ ମୁହୂର୍ତ୍ତର ସୃଷ୍ଟି ନୁହେ । ବୈରାଗ୍ୟର ତୀବ୍ର କଷାଘାତରେ ଆନନ୍ଦର କବି ପରାଜିତ ହୋଇଅଛି । 'ହିମାଚଳେ ଉଦୟୋତ୍ସବ' କବିତାଟିରେ ସେ ଯେଉଁ 'ଅନାହତ ବଂଶୀସ୍ୱରର ପ୍ରତିଧ୍ୱନି ପ୍ରାଣେ ପ୍ରାଣେ ଅନୁଭବ କରି 'ମୋହର ମୋହର' ବୋଲି ହସୁଥିଲେ, 'ଜୀବନ-ଚିନ୍ତା'ରେ ସେଥିରୁ ଦୂରତର ହୋଇ ପଡ଼ି ଦୁଃଖ ଭୋଗ କରିଅଛନ୍ତି ।

ଯହିଁ ଦେବେ ଭୁଞ୍ଜନ୍ତି ଅମୃତ<br>
ବିଭୁପାଦ-ପଦ୍ମ ପାଶେ, ପୁଣ୍ୟଜ୍ୟୋତିର୍ମୟ ବାସେ,<br>
କ୍ଲେଶ ପାପ ମୃତ୍ୟୁ ଆଦି ଯହିଁ ପରାଭୂତ,<br>
ସେ ସୁଧାମ ଲାଗି ଆତ୍ମା ସଦା ପିପାସିତ ।

ଅନ୍ୟତ୍ର—

ଏ ସଂସାରେ ନାହିଁ ସୁଖ ଶାନ୍ତି,<br>
ଅହଙ୍କାର ଦ୍ୱେଷ ରୋଷ ଲୋଭ ମୋହ ଅସନ୍ତୋଷ

ଦୁଷ୍ଟ ରିପୁକୁଳ ଘୋର ଅନର୍ଥ ଘଟାନ୍ତି,
ପାପର ଭୀଷଣାବର୍ତ୍ତେ ନରେ ନିକ୍ଷେପନ୍ତି ।

ଏଠାରେ କବି କେବଳ ପାପ, ମୃତ୍ୟୁ, ରୋଗ, ଶୋକ ଆଦିର ବିକଟ ମୂର୍ତ୍ତି ଦେଖିଅଛନ୍ତି । ଏ ସକଳ ବିଦ୍ୟମାନେ ସଂସାରର ସ୍ଥିତି ସମ୍ଭବପର ଏବଂ ଏ ସବୁର ଲୋପ ନ ହେବା ପର୍ଯ୍ୟନ୍ତ ଆନନ୍ଦର ଆବିର୍ଭାବ ସମ୍ଭବ ନୁହେ ! ଏ ଭାବ ସଂସାରତ୍ୟାଗୀ ବୈରାଗୀ ପକ୍ଷରେ ଶୋଭନୀୟ ହୋଇ ପାରେ, କିନ୍ତୁ ଆନନ୍ଦଗ୍ରାହୀ କବି ପକ୍ଷରେ ସ୍ପୃହଣୀୟ ନୁହେ ।

ଯାହାହେଉ ଆଧ୍ୟାତ୍ମିକତା ଦିଗଟି ଛାଡ଼ିଦେଲେ କବିତା ହିସାବରେ 'ଜୀବନଚିନ୍ତା'ର ଯଥେଷ୍ଟ ମୂଲ୍ୟ ଅଛି । ଉଚ୍ଚ କଳାର ଦିଗଟା ବାଦ୍ ଦେଲେ ଶିକ୍ଷା ହିସାବରେ ମଧ୍ୟ 'ଜୀବନଚିନ୍ତା'ରେ ସାଧାରଣଙ୍କର ଶିଖିବାର ବହୁ ଗଭୀର ଭାବ ନିହିତ । ଯେଉଁମାନେ ଯୁବତୀର ରକ୍ତାଧର ପାନରେ ମୁଗ୍ଧ, ବିହ୍ୱଳ, ସେଥିରେହିଁ ଜୀବନର ଶ୍ରେଷ୍ଠ ପରିଣତି ବୋଲି ଜ୍ଞାନ କରନ୍ତି, ସେମାନଙ୍କ ପାଇଁ କବି ଗାଇ ଅଛନ୍ତି—

ଜଗତର ଲୋଚନନନ୍ଦନ
ଯୁବତୀର ରକ୍ତାଧର, ରମ୍ୟ ଜ୍ୟୋତି ନୟନର,
ସ୍ବର୍ଣ୍ଣଘନ ସମ ବକ୍ଷ, ସ୍ମିତରୁ ପଦ୍ମାନନ,
ଇନ୍ଦ୍ରଧନୁ ଶୋଭା ସମ ପଳାନ୍ତି ବହନ୍ ।

ଶ୍ଳୋକଟିର ଉପମା, ଅନୁପ୍ରାସ, ଶବ୍ଦପ୍ରୟୋଗ ଓ ବର୍ଣ୍ଣନା ସକଳ ଦିଗରୁ ଉତ୍କର୍ଷ ଲାଭ କରିଅଛି । କେବଳ କାବ୍ୟକଳା ସୃଷ୍ଟି ହିସାବରେ ଏହାର ସ୍ଥାନ ନ୍ୟୂନ ହୋଇ ପଡ଼ିଅଛି । ଯେଉଁମାନେ ଧନ-ଗର୍ବରେ ମତ୍ତ ଏବଂ ଏହାକୁହିଁ ଜଗତର ଉତ୍କୃଷ୍ଟ ବସ୍ତୁ ବୋଲି ମନେ

କରି ଭୋଗବିଳାସ ଓ ଅନାତ୍ମବିଚରେ ଲିପ୍ତ, ସେମାନଙ୍କ ପାଇଁ କବି ଗାଇ-ଅଛନ୍ତି—

ମୁକୁଟ-ମଣ୍ଡିତ ରାଜଶିର
ନୁହଇ ଶାନ୍ତି-ଆସ୍ପଦ, ଆଶଙ୍କା ଭୟ ବିପଦ
ନିରନ୍ତର ସଞ୍ଚରନ କରଇ ଅସ୍ଥିର,
ଆଜ ଯେ ରାଜେନ୍ଦ୍ରାସନେ କାଲି ସେ ଫକୀର !

ଏ ସକଳ ଭ୍ରମ, ମାୟା ଓ ମିଥ୍ୟାର ସ୍ୱରୂପ । ଏ ସକଳ ଅତି-କ୍ରମ କରି ସେ ମଙ୍ଗଳାଳୟ ବିଭୁଙ୍କର ଦର୍ଶନାକାଂକ୍ଷୀ ହୋଇଅଛନ୍ତି ଭ୍ରମବଶତଃ ମନୁଷ୍ୟ ସେହି ଅନନ୍ତ ମୂଳାଧାରଙ୍କୁ ପାସୋରି ଲୋଭ, ମୋହ, ମଦ, ମାତ୍ସର୍ଯ୍ୟାଦିକୁ ଜୀବନର ସମ୍ବଳ ବୋଲି ଜ୍ଞାନ କରୁଥାଏ, କିନ୍ତୁ ଯେତେବେଳେ ସେ ସତ୍ୟର ସ୍ୱରୂପ ଦେଖି ପାରେ, ସେତେବେଳେ ନିଜର ଭ୍ରମ ହୃଦ୍‌ବୋଧ କରି ପାରେ ।

ଯେବାକବେ ନିରେଖି ଗଗନେ
ହର୍ଷେ ଫୁଟେ ପଦ୍ମ ଫୁଲ, ତେସନେ ଆତ୍ମା ପ୍ରଫୁଲ୍ଲ
ଅନନ୍ତ ମଙ୍ଗଳାଳୟ ବିଭୁ ଦରଶନେ,
ପୁଣ୍ୟର ତପନ ଯେହ୍ନେ ପାପର ଭୁବନେ ।

ଭକ୍ତ-କବି ମଧୁସୂଦନଙ୍କର ଏହି ବୈରାଗ୍ୟବାଣୀ ପ୍ରାଚୀନ ଉତ୍କଳର ଆଉ ଜଣେ ଭକ୍ତ କବିଙ୍କ ମୁଖରୁ ମଧ ନିଃସୃତ ହୋଇଥିଲା । ସେ ମହୋଦୟ ଉତ୍କଳର ଘରେ ଘରେ ସୁପରିଚିତ 'ମଥୁରାମଙ୍ଗଳ'ର ରଚୟିତା କବି ଭକ୍ତଚରଣ ଦାସ । ତାଙ୍କର "ମନବୋଧ ଚଉତିଶା" ନାମକ କ୍ଷୁଦ୍ର ପୁସ୍ତିକାଟି ଉତ୍କଳରେ ଅତି ଆଦୃତ । ମଧୁସୂଦନ ଯେପରି ସଂସାରକୁ ଅନ୍ଧକାରମୟ ଦେଖି ତାଙ୍କର 'ସନ୍ତାପିତ ପ୍ରାଣର ଚନ୍ଦନ'କୁ ଲାଭ କରିବାର ପ୍ରୟାସୀ ହୋଇଅଛନ୍ତି, ଭକ୍ତଚରଣ ମଧ ସେହିପରି

ଜଗତର ଅନିତ୍ୟତା ପ୍ରତିପାଦନ କରି ତାଙ୍କର 'କଳାଶ୍ରୀମୁଖ'ର ଚିତ୍ରଣ ଦେଇଅଛନ୍ତି । ଭକ୍ତଚରଣ ଅତି ସହଜବୋଧ ଭାଷାରେ ଅନ୍ତର ବାହାରର ଯେପରି ସୁନ୍ଦର ବିଶ୍ଳେଷଣଦ୍ୱାରା ବୈରାଗ୍ୟ ଧର୍ମର ପ୍ରତିପାଦନ କରିଅଛନ୍ତି, ତାହା ସାଧାରଣ ଅଶିକ୍ଷିତ ଲୋକଙ୍କ ମନରେ ମଧ୍ୟ ସଂସାର ପ୍ରତି ବିତୃଷ୍ଣା ଜାଗ୍ରତ କରେ, ଯେପରି—

ଖଟ ପଲଙ୍କେ ମନ ଶୋଯାଇ ଶୋଜ,
ଖଳ ଦୁର୍ଗନ୍ଧ ହେବ ଏ ତୋର ଦେହ ରେ ।
ଖଣ୍ଡି ଯେ ଖଣ୍ଡି ତୋର ପିଞ୍ଜରା କାଟି
ଖାଉଣଥିବେ ଶ୍ୱାନ ଶୃଗାଳ ବାଣ୍ଟି ରେ ।

ତତ୍ପରେ ମୃତ୍ୟୁର ବିଭୀଷିକା ଦୃଶ୍ୟ । ଗୃହର ପ୍ରିୟତମା ସ୍ତ୍ରୀ ମଧ୍ୟ ମୃତ୍ୟୁ ପରେ ଭୂତଭୟରେ ଭୀତା ହୁଏ ।

ଘର ବୋଲି ଅର୍ଜିଛୁ ଯେତେ ପଦାର୍ଥ,
ଘଟ ଛୁଟିଲେ ସର୍ବେ ବୋଲିବେ ଭୂତ ରେ,
ଘର ଘରଣୀ ଦେହ କଳାଉଥିବେ,
ଘେନ ବନ୍ଧୁ କୁଟୁମ୍ବ ଶୁଦ୍ଧ ହୋଇବେ ।

ଏ ସୁନ୍ଦର ଦେହର ବିନାଶ ସାଧିତ ହେବ । କବିତ୍ୱର ଚରମ ସମାଧି !

ଚନ୍ଦ ପ୍ରତିମାପ୍ରାୟେ ଦିଶୁ ସୁନ୍ଦର,
ଚିର ଭିତର ଦେଖ କି ନାରଖାର ଯେ ।

ପୁନଶ୍ଚ,

ଛୁଇଁବେ ନାହିଁ ତୋତେ ବୋଲିବେ ମଡ଼ା,
ଛକଣ୍ଡି କାଠ ହେବ ତୋ ପାଇଁ ଲୋଡ଼ା ଯେ ।

କବି ରାଧାନାଥ ମଧ୍ୟ ଲେଖିଅଛନ୍ତି—

ଦ୍ୱିଜପ୍ର ବ୍ରହ୍ମାଣ୍ଡ ଯେ ମଣିଲେ ଅନ୍ନ,
ସପତ ବ୍ରହ୍ମାଣ୍ଡ ହେଲା ତାଙ୍କ ତନ୍ନ ।

ଯାହା ହେଉ କାବ୍ୟ ହିସାବରେ ଏ ସକଳ କବିତାର ସ୍ଥାନ ଅତି ନିମ୍ନରେ । ଶ୍ରୀଶଙ୍କରାଚାର୍ଯ୍ୟଙ୍କର ମୋହମୁଦ୍ଗର ଧରଣର ଏ କବିତା ।

"ବିବିଧ କବିତା" ନାମକ ଯେଉଁ ଅଂଶଟି ଗ୍ରନ୍ଥାବଳୀରେ ସନ୍ନିବେଶିତ ହୋଇଅଛି, ତତ୍ସଂଲଗ୍ନ କବିତାଗୁଡ଼ିକ କେବଳ ଉପଦେଶାତ୍ମକ । ମଧୁସୂଦନ ସ୍ୱୀୟ ପାରିବାରିକ ଜୀବନରେ ଯେଉଁ ନୀତି-ଗୁଡ଼ିକ ମାନି ଚଳିଅଛନ୍ତି, ସେଗୁଡ଼ିକୁ ପଦମିଳନଦ୍ୱାରା କବିତା ଆକାରରେ ପ୍ରକାଶ କରି ଯାଇଅଛନ୍ତି । ଏଥି ନିହିତ "ନୀତିରତ୍ନମାଳା" "ଦୃଷ୍ଟାନ୍ତମାଳା" "ମଣିମାଳା" "ଧର୍ମ" ଇତ୍ୟାଦି କବିତାଗୁଡ଼ିକ ଧର୍ମପ୍ରବର୍ତ୍ତକ ବା ନୀତିବାଦିଙ୍କର ଅନୁଶାସନ ପରି ବାଳକମାନଙ୍କ-ଦ୍ୱାରା ଅନୁଶୀଳନୀୟ । ମଧୁସୂଦନଙ୍କ ଲେଖନୀରୁ ନିଃସୃତ ହେବାଦ୍ୱାରା ଏଗୁଡ଼ିକ ବେଶି ହୃଦୟଗ୍ରାହୀ ହୋଇଅଛି ମାତ୍ର ।

ପିତା ମାତା କିପରି ?

"ଅଟନ୍ତି ପରମ ଗୁରୁ ପିତା ମାତା ସେନ ଏହି ଶିକ୍ଷା,
ଆକାଶଠୁଁ ବଡ଼ ପିତା, ମାତା ବଡ଼ ପୃଥିବୀ ଅପେକ୍ଷା ।"

ବୃଦ୍ଧ କିଏ ?

"ନୁହେ ବୃଦ୍ଧ ସେହି ଜନ ଶୁକ୍ଳକେଶ ଅଟେ ଯାର ଶିର,
ଯୌବନେ ଯେ ଜ୍ଞାନେ ରତ ଦେବେ ତାକୁ ବୋଲନ୍ତି ସ୍ଥବିର ।
ଯୌବନେ ଧାର୍ମିକ ହେବ, ଏ ଜୀବନ ଯେଣୁ ଅନିଶ୍ଚିତ,
କେ ଜାଣେ କାହାର ଆଜ ମୃତ୍ୟୁକାଳ ହେବ ଉପସ୍ଥିତ ।"

ପୁନଶ୍ଚ ମୁନି କିଏ ?

"ମୌନେ କିମ୍ବା ବନବାସେ ମୁନି କେହି ନ ହୁଅଇ ନର,
ଆତ୍ମତତ୍ତ୍ୱ ଜାଣେ ଯେହୁ ମୁନିଶ୍ରେଷ୍ଠ ଅଟେ ସେ ନିକର ।"

ଏ ବାକ୍ୟଗୁଡ଼ିକ ଗୁରୁବାକ୍ୟ ପରି ସଂସାରଧର୍ମ ପ୍ରତି ଶିଶୁର ଆସ୍ଥା ଜନ୍ମାଏ । "ଦୃଷ୍ଟାନ୍ତମାଳା" କବିତାଟିରେ କେତେଗୁଡ଼ିଏ ଉଦାହରଣଦ୍ୱାରା ମଧୁସୂଦନ ବାଳକମାନଙ୍କୁ ସଦୁପଦେଶ ପ୍ରଦାନ କରିଅଛନ୍ତି । ଯେପରି—

"ଫଳଭରେ ଅବନତ ଯଥା ତରୁଗଣ,
ଜଳଭରେ ଅବନତ ନୀରଦ ଯେସନ,
ନାନାଗୁଣେ ସେହିପରି ନମ୍ର ସାଧୁଜନେ,
ଐଶ୍ୱର୍ଯ୍ୟରେ ମଧ ଗର୍ବ ନ ବହନ୍ତି ମନେ ।"

ସାଧୁସଙ୍ଗରେ ଲୋକ କିପରି ଉପକୃତ ହୁଏ, ଗୋଟିଏ ଦୃଷ୍ଟାନ୍ତରେ କବି ତାହା ସୁସ୍ପଷ୍ଟ କରିଅଛନ୍ତି,

"ଅସାଧୁ ହୁଅଇ ସାଧୁ ସାଧୁ ସଙ୍ଗତରେ,
ନିର୍ମଳ ପଙ୍କିଳ ଜଳ ନିର୍ମଳୀ ଯୋଗରେ ।"

ମଣିମାଳା କବିତାଟିରେ ମଧ ପରିବାରରେ ପିତା ମାତା ଭ୍ରାତା ଭଗିନୀଙ୍କ ପ୍ରତି ସ୍ନେହ ଶ୍ରଦ୍ଧା ପ୍ରକାଶ କରି ସ୍ୱଦେଶକୁ ସ୍ୱଗୃହରୂପରେ ଦେଖି ତାହା ପ୍ରତି ଯଥାର୍ଥ କର୍ତ୍ତବ୍ୟ ସାଧନ କରି ସତ୍ୟ ଶିବ ସୁନ୍ଦରଙ୍କ ପ୍ରତି ମନୁଷ୍ୟର ଶ୍ରେଷ୍ଠ କର୍ତ୍ତବ୍ୟ ସମାପ୍ତ କରିବାରେ ଉପନୀତ ହୋଇଅଛନ୍ତି ।

"ମଙ୍ଗଳ ସୁନ୍ଦର ସତ୍ୟ ଲୋଡ଼ ନିରନ୍ତର
ଧନ୍ୟ ହେଉ, ଧନ୍ୟ ହେଉ ଜୀବନ ମୋହର ।"

'ଧର୍ମ' କବିତାରେ ମଧ୍ୟ ମୃତ୍ୟୁର ଅନଶ୍ୱରତା ଚିନ୍ତା କରି ବାଲ୍ୟକାଳରୁ ଧର୍ମ-ଧନ ସଞ୍ଚୟ କରିବାକୁ କବି ଲୋଡ଼ିଅଛନ୍ତି । 'ପବନ' କବିତାଟି ଅତି ସୁନ୍ଦର । ବାଳକ ବାଳିକାମାନଙ୍କର ସୁଖପାଠ୍ୟ ଏବଂ ସେମାନଙ୍କର କଳ୍ପନାର ବିସ୍ତୃତିପାଇଁ ବହୁତ ଉପଯୋଗୀ ।

# ଷଡ଼୍ବିଂଶ ପରିଚ୍ଛେଦ।

## ସଙ୍ଗୀତମାଳା ଓ ଅନ୍ୟାନ୍ୟ କବିତା।

ମଧୁସୂଦନଙ୍କ ନୂତନ ଦାନ ମଧ୍ୟରେ ସଙ୍ଗୀତମାଳା ଏକତମ। ଉତ୍କଳର ଦୁର୍ଭାଗ୍ୟ କମ୍ବା ସୁଭାଗ୍ୟ ଯେ, ଏ ଦେଶରେ ଯେ ଯାହା ଲେଖୁ ସବୁ ନୂତନ। ଏହାର କାରଣ ସାହିତ୍ୟର ଦାରିଦ୍ର୍ୟ। ଏ ଦେଶରେ ବ୍ୟବସାୟୀ ଲେଖକ ( Professional writers ) ଯେପର୍ଯ୍ୟନ୍ତ ଜାତ ହୋଇ ନାହାନ୍ତି ଏବଂ ସାହିତ୍ୟ ଯେପର୍ଯ୍ୟନ୍ତ ମୁଷ୍ଟିମେୟ କେତେଜଣଙ୍କର ଅବକାଶର ଚିତ୍ତବିନୋଦନ ସାମଗ୍ରୀ ହୋଇ ରହିଅଛି, ସେତେଦିନ ଏ ଦୀନତା ଘୁଞ୍ଚିବ ନାହିଁ। ଯାହାହେଉ ସଙ୍ଗୀତ ପଦାର୍ଥଟି ପୂର୍ବରୁ କେବଳ ଆଦିରସାତ୍ମକ ହୋଇ କେବଳ ନୀତିବିରୁଦ୍ଧ ଦୃଷ୍ଟିରେ ଦେଖାଯାଉଥିଲା, ମଧୁସୂଦନ ସେଥିରୁ ତାହାକୁ ମୁକ୍ତ କରି ସୁରୁଚିର ପଥକୁ ଆଣିଅଛନ୍ତି। ଏ ସଙ୍ଗୀତଗୁଡ଼ିକ ପରିବାରରେ ପିତା ମାତା ଭ୍ରାତା ଭଗିନୀଙ୍କ ସମକ୍ଷରେ ନିର୍ଭୟରେ ଗାନ କରାଯାଇ ପାରେ ଏବଂ ସେଥିପାଇଁ କାହାର ଚରିତ୍ରଭ୍ରଂଶ ଆଶଙ୍କା କରାଯାଇ ନ ପାରେ। ଏ ଅବଶ୍ୟ ଉତ୍କଳରେ ଏକ ନୂତନ ଯୁଗର ପ୍ରବର୍ତ୍ତନ। ସଙ୍ଗୀତ ହିସାବରେ ଦେଖିବାକୁ ଗଲେ ସଙ୍ଗୀତମାଳାର ସବୁଗୁଡ଼ିକ ସଙ୍ଗୀତ ଉତ୍କୃଷ୍ଟ ନୁହେଁ। ମଧୁସୂଦନ ନିଜେ ମଧ୍ୟ ଏହା ପ୍ରାରମ୍ଭରେ ସ୍ୱୀକାର କରି-ଅଛନ୍ତି। "ମୁଁ ନିଜେ ସଙ୍ଗୀତଶାସ୍ତ୍ରଜ୍ଞ ନ ଥିବାରୁ ଏବଂ ଉକ୍ତ ବିଦ୍ୟାରେ ପ୍ରବୀଣ କୌଣସି ବ୍ୟକ୍ତିଙ୍କର ସାହାଯ୍ୟ ଗ୍ରହଣ କରିବାର ସୁବିଧା ଓ ଅବସର ପାଇ ନ ଥିବାରୁ ଅନେକଗୁଡ଼ିଏ ସଙ୍ଗୀତର ରାଗିଣୀ ଓ ତାଳ ନିର୍ଦ୍ଦେଶ କରି ପାରି ନାହିଁ। ପୁଣି ମୋର ଆଶଙ୍କା ହେଉଅଛି ଯେ, ଅନେକ ସ୍ଥଳରେ ରାଗିଣୀ ଓ ତାଳ ଯଥାଯଥ ନିର୍ଦ୍ଦିଷ୍ଟ ହୋଇ ନାହିଁ। ଉଲ୍ଲିଖିତ ତ୍ରୁଟି ଓ ଭ୍ରମ ନିମିତ୍ତ ପାଠକଙ୍କର କ୍ଷମା ପ୍ରାର୍ଥନା କରୁ-ଅଛି।"

ସଙ୍ଗୀତ ବିଷୟରେ ଅନଭିଜ୍ଞ ଥାଇ ମନୋଜ୍ଞ ସଙ୍ଗୀତ ରଚନା କରିବା କାହାର ପକ୍ଷରେ ସହଜସାଧ୍ୟ ନୁହେ । ଏହି କାରଣରୁ ସଙ୍ଗୀତ-ମାଳାର ସଙ୍ଗୀତଗୁଡ଼ିକ ଉତ୍କଳରେ ବେଶି ପ୍ରଚଳିତ ହୋଇ ପାରି ନାହିଁ । ଅଭି ମଧ୍ୟ ସଙ୍ଗୀତରେ ଯେଉଁ କଳା ଓ ଭାବଲାଳିତ୍ୟ ପରିସ୍ଫୁଟ ହେବା ଆବଶ୍ୟକ, ସଙ୍ଗୀତମାଳାର ଅଧିକାଂଶ ସଙ୍ଗୀତ ସେଥିରୁ ବଞ୍ଚିତ । ଏହା ମଧୁସୂଦନଙ୍କର ସଙ୍ଗୀତାନଭିଜ୍ଞତାଜନିତ ନୁହି । ଅନେକଗୁଡ଼ିଏ ସଙ୍ଗୀତ ଉତ୍କଳର ପୁରାତନ "ଭଜନ" ଢାଞ୍ଚାରେ ଲିଖିତ ।

ନ ଭୁଲ ରେ ଭାଇ ବର୍ତ୍ତମାନେ ଥାଇ
ଲକ୍ଷ୍ୟ ସ୍ଥିର କର ଫେଡ଼ ତୋଳା ।

ଏହିପରି ସ୍ଥଳେ ସ୍ଥଳେ ମଧୁସୂଦନଙ୍କ ସଙ୍ଗୀତ ଗଦ୍ୟାକାର (Prosaic) ହୋଇ ପଡ଼ିଅଛି । ସଙ୍ଗୀତ ସାହିତ୍ୟର ସାର ସୃଷ୍ଟି । କଳା ହିସାବରେ ଏହାର ସ୍ଥାନ କାବ୍ୟଠାରୁ ମଧ୍ୟ ଊର୍ଦ୍ଧ୍ୱରେ । ଅନେକେ ଏହାକୁ କଳାର ସର୍ବଶ୍ରେଷ୍ଠ ସ୍ଥାନ ପ୍ରଦାନ କରନ୍ତି । ସୁତରାଂ ଗଦ୍ୟାକାର ହେବା ଚରମ ଅଧୋଗତି ।

"ସଙ୍ଗୀତମାଳା" ବ୍ରାହ୍ମସମାଜର ଅଷ୍ଟଷଷ୍ଟିତମ ମାଘୋତ୍ସବ ଉପଲକ୍ଷରେ ପ୍ରକାଶିତ ହୋଇଥିଲା । ବ୍ରହ୍ମମନ୍ଦିରରେ ବଙ୍ଗଳା ସଂଗୀତ ସହିତ ଏହି ସଂଗୀତଗୁଡ଼ିକ ଏପର୍ଯ୍ୟନ୍ତ ଗୀତ ହୁଏ କି ନାହିଁ ଅମ୍ଭମାନଙ୍କୁ ତାହା ଅଗୋଚର । କିନ୍ତୁ ଉତ୍କଳର ବ୍ରାହ୍ମ ସମାଜର ପୁରୋଧା ଏବଂ ଉତ୍କଳ-ସାହିତ୍ୟ କ୍ଷେତ୍ରରେ ପ୍ରବୀଣ ଓ ପ୍ରଧାନ ଅଗ୍ରଣୀ ଶ୍ରୀଯୁକ୍ତ ବିଶ୍ୱନାଥ କର ମହୋଦୟ ଅନ୍ୟାନ୍ୟ କେତେକ ନୂତନ ଲେଖକଙ୍କ ରଚନା ସହିତ ସଂଗୀତମାଳାର ଅନେକଗୁଡ଼ିଏ ସଂଗୀତ ଯୋଗ କରି ଗୋଟିଏ ସଂଗୀତ ପୁସ୍ତକ ପ୍ରକାଶ କରି ସଂଗୀତମାଳା ପ୍ରତି ଆଦର ଓ ସମ୍ମାନ ବୃଦ୍ଧି କରିଅଛନ୍ତି । ଓଡ଼ିଆ ସାହିତ୍ୟପ୍ରସୂର ସଂଘର ପ୍ରଧାନ ନେତା

ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ପଟ୍ଟନାୟକଙ୍କର 'ଯୁବକର ବିପୁଳ ଉତ୍ସାହ' ଏଥି ସହିତ ସଂଶ୍ଳିଷ୍ଟ ହୋଇଅଛି । ଏହି କାରଣରୁ ଏ ଦୁଇଜଣ ଅସ୍ମମାନଙ୍କର ଧନ୍ୟବାଦାର୍ହ ।

ସଂଗୀତମାଳା ୧୧ ମାଘ ୧୮୧୭ ଶକାବ୍ଦରେ ପ୍ରକାଶିତ ହୋଇଥିଲା । ଏ ସମ୍ବନ୍ଧରେ ମଧୁସୂଦନ ଲେଖିଅଛନ୍ତି, "ଏଥିରେ ଯେଉଁ ଶତଗୋଟି ସଂଗୀତ ସନ୍ନିବେଶିତ ହୋଇଅଛି, ସେଥି ମଧ୍ୟରୁ ପ୍ରାୟ ୪୦ଟି ସଂଗୀତ ବିଭିନ୍ନ ସମୟରେ ଲିଖିତ ହୋଇ ପୁସ୍ତକ ପତ୍ରିକାଦିରେ ପ୍ରକାଶିତ ହୋଇଥିଲା । ଅବଶିଷ୍ଟ ସଂଗୀତଗୁଡ଼ିକ "ସମ୍ବଲପୁର ହିତୈଷିଣୀ"ର ସୁଯୋଗ୍ୟ ସମ୍ପାଦକ ସ୍ୱଦେଶବତ୍ସଳ ମୋର ସୋଦର-ପ୍ରତିମ ବନ୍ଧୁ ଶ୍ରୀଯୁକ୍ତ ପଣ୍ଡିତ ନୀଳମଣି ମିଶ୍ର ମହାଶୟଙ୍କର ସସ୍ନେହ ପୁଣ୍ୟ ପ୍ରବର୍ତ୍ତନାରେ ଗତ ଛଅମାସ ମଧ୍ୟରେ ଲିଖିତ ହୋଇଅଛି ।

× × ×

"ସଂଗୀତମାଳାର ପ୍ରାୟ ସମସ୍ତ ସଂଗୀତ ଓଡ଼ିଆ ଓ ବଙ୍ଗଳା ରାଗିଣୀରେ ରଚିତ । କେବଳ ତିନୋଟି ସୌରାଷ୍ଟ୍ର ଅଞ୍ଚଳର 'ବନ୍ଦନା'ର ଅନୁକରଣରେ ଲିଖିତ । ବଙ୍ଗୀୟ ସଂଗୀତଲେଖକମାନେ ଅନ୍ୟାନ୍ୟ ଭାଷାର ରାଗିଣୀ, ବୃତ୍ତ ପ୍ରଭୃତି ଗ୍ରହଣ କରି ତଦନୁସାରେ ନିଜ ଭାଷାରେ ସଙ୍ଗୀତ ରଚନା କରୁଥିବା ସ୍ଥଳେ, ମୁଁ ଆଶା କରେଁ ଯେ ଓଡ଼ିଆ ଭାଷାରେ ଅନ୍ୟ ଭାଷାର ରାଗିଣୀସଂସୃଷ୍ଟ ସଙ୍ଗୀତ ଲେଖିବା ଦୋଷାବହ ବୋଲି ବିବେଚିତ ହେବ ନାହିଁ ।" କେବଳ ରାଗିଣୀ ଅଥବା ବୃତ୍ତ ଦୋଷରୁ ସଙ୍ଗୀତମାଳାର ଅନେକଗୁଡ଼ିଏ ସଙ୍ଗୀତ ନିକୃଷ୍ଟ ନୁହେ । ସଙ୍ଗୀତରେ ଯେଉଁ କଳା ଓ ଭାବବୈଚିତ୍ର୍ୟର ସମାବେଶ ହେବା ଉଚିତ, ସଙ୍ଗୀତ-ମାଳାର ଅନେକଗୁଡ଼ିଏ ସଙ୍ଗୀତରେ ତାହା ଦେଖାଯାଏ ନାହିଁ । ପ୍ରାୟ ସବୁଗୁଡ଼ିକ ସଙ୍ଗୀତ ବିଭୁଗୁଣକୀର୍ତ୍ତନରେ ଆରବ୍ଧ ଓ ସମାପ୍ତ ହୋଇଅଛି । ଏହି କାରଣରୁ ଏଗୁଡ଼ିକୁ ପୁରାତନ 'ଭଜନ' ଓ 'ଜଣାଣ' ଧରଣର

ବୋଲି କହାଯାଇଅଛି । ସଙ୍ଗୀତମାଳାର ଯେ କେତେଗୋଟି ସଙ୍ଗୀତ ମନୋଜ୍ଞ ହୋଇ ପାରିଅଛି, ଏଠାରେ କେବଳ ତାହାର କେତୋଟି ନମୁନା ଦେଇ କ୍ଷାନ୍ତ ହେବୁଁ ।

“ଏକାହିଁ ଜଗତର        ରାଜରାଜେଶ୍ୱର
ବିରାଜ ହୃଦୟ ଗଗନେ,
ପ୍ରଭୋ ନିରଞ୍ଜନ,        ଡାକେ ଦୀନଜନ
ଅବନତ ତବ ଚରଣେ ।

ତୁହି ସଖା ମୋର ଅନ୍ତରତମ,
କେ ଅଛି ସଂସାରେ ତୁମ୍ଭ ସମ,
ତୁହି ପିତା ମାତା ସହାୟ ମମ
ତୁହି ସଙ୍ଗୀ ମମ ଜୀବନେ ।

ଏହାପରି ପ୍ରାୟ ସମସ୍ତ ସଙ୍ଗୀତ ବାଳକମାନଙ୍କର ଉପାସନାର ବିଶେଷ ଉପଯୋଗୀ ହୋଇ ପାରିଅଛି ।

ଅନ୍ୟତ୍ର ମଧ୍ୟ

ଜୟ ଜଗଦୀଶ୍ୱର        ଜୟ ପରମେଶ୍ୱର
ଜୟ ଜୟ ମଙ୍ଗଳଦାତା,
ଜୟ କରୁଣାମୟ        ଜୟ ବିଶ୍ୱଆଶ୍ରୟ
ଜୟ ଜୟ ବିଶ୍ୱବିଧାତା ।

ରବୀନ୍ଦ୍ରନାଥ, ରଜନୀକାନ୍ତ, ଦ୍ୱିଜେନ୍ଦ୍ରଲାଲ ପ୍ରଭୃତି ବଙ୍ଗୀୟ ସଙ୍ଗୀତ-ରଚୟିତାମାନଙ୍କର ସଙ୍ଗୀତ ତୁଳନାରେ ଏଗୁଡ଼ିକର ସ୍ଥାନ ଅବଶ୍ୟ ବହୁ ନିମ୍ନରେ । ସେଗୁଡ଼ିକରେ ଯେଉଁ ପ୍ରାଣ, ଯେଉଁ ପୁଲକ ପ୍ରତି ଛନ୍ଦରେ ଲୀଳାୟିତ, ମଧୁସୂଦନଙ୍କ ସଙ୍ଗୀତରେ ଅବଶ୍ୟ ତାହା ସେହି ପରିମାଣରେ ସୁଲଭ ନୁହେ । ତଥାପି ଦରିଦ୍ର ଉତ୍କଳ ସାହିତ୍ୟ ପକ୍ଷରେ ଏଗୁଡ଼ିକର

ସ୍ଥାନ ଅଛି । ଏହି ଭଜନଗୁଡ଼ିକ ମଧ୍ୟରେ ପଞ୍ଚମବର୍ଗୁଡ଼ି ସ୍ୱଗରେ ମଧୁ-ସୂଦନ ଯେଉଁ ସଙ୍ଗୀତଟି ରଚନା କରିଅଛନ୍ତି, ତହିଁରେ ତାଙ୍କର ସିଦ୍ଧ-ହସ୍ତତା ବେଶି ପରିମାଣରେ ଦେଖା ଯାଉଅଛି । ଉଦାହରଣ ସ୍ୱରୂପ ନିମ୍ନ-ପଦଟିରୁ ଏହା ପ୍ରତିପାଦିତ ହୋଇ ପାରେ ।

ଧନ୍ୟ ହେ ମଙ୍ଗଳମୟ, ନିଖିଳ ଭୁବନାଶ୍ରୟ
ଭକତର ବାଞ୍ଛାକଳ୍ପତରୁ,
ପ୍ରେମାନନ୍ଦ ସୁଧାଙ୍କର ଝରୁଅଛି ନିରନ୍ତର
ତୁମ୍ଭ ଶ୍ରୀଚରଣକମଳରୁ ହେ ମହାପ୍ରଭୁ,
ଅନାଥଶରଣ ପିତା ମାତା
ଅଗତି ଜନର ପରିତ୍ରାତା
ସଂସାର-ଜଳଧି-ସେତୁ ପୁଣ୍ୟ ଶାନ୍ତି ଭକ୍ତି ହେତୁ
ଏକା ତୁମ୍ଭେ ସର୍ବସୁଖଦାତା ହେ ମହାପ୍ରଭୁ ।

ବ୍ୟଙ୍ଗକବିତା—ମଧୁସୂଦନ "ସାବାସ୍ ସାହିତ୍ୟଚର୍ଚ୍ଚା ସାବାସ୍ ସାବାସ୍" ଓ "ଭଣ୍ଡରସାୟନ କାବ୍ୟ" ନାମରେ ଯେଉଁ ଦୁଇଟି ବ୍ୟଙ୍ଗ କବିତା ଲେଖିଅଛନ୍ତି, ତାହା ତାତ୍କାଳିକ ପ୍ରସିଦ୍ଧ ଭଞ୍ଜୀୟ ଆନ୍ଦୋଳନକୁ ଲକ୍ଷ୍ୟ କରି ଲିଖିତ ହୋଇଅଛି । ସାହିତ୍ୟରେ ରୁଚି ପ୍ରତି ଭ୍ରୂକ୍ଷେପ ନ କରି ଭଞ୍ଜୀୟ କବିତା ନେଇ ଯେ ଲେଖାଲେଖିର ଆନ୍ଦୋଳନ ଚାଲିଥିଲା, ମଧୁସୂଦନ ସେହି ବୀଭତ୍ସ ବିଭ୍ରାଟ ସନ୍ଦର୍ଶନରେ ଘୃଣାରେ ଜର୍ଜରିତ ହୋଇ ପଡ଼ିଅଛନ୍ତି । ସେଥିରେ ତାଙ୍କ ପରି ସ୍ଥିରପ୍ରକୃତିର ଲୋକ ଏପରି ଚଞ୍ଚଳ ହୋଇ ପଡ଼ିଅଛନ୍ତି ଯେ, ତାଙ୍କ ଲେଖନୀରୁ ମଧ୍ୟ ଅଶ୍ଳୀଳ ଭାଷା ନିଃସୃତ ହୋଇ ପଡ଼ିଅଛି । ଏଥିରେ ତାଙ୍କର ସୁରୁଚି ପ୍ରତି ଶ୍ରଦ୍ଧା ଓ କୁରୁଚି ପ୍ରତି ବିଷମ ଘୃଣା ପ୍ରକାଶିତ ହୋଇଅଛି । ସେଥିଲାଗି ସେ ସେହି ଲେଖକମାନଙ୍କୁ ତିରସ୍କାର କରି "ଅଲଜୁକ" "ବାହାପିଆ" ପ୍ରଭୃତି କହିଅଛନ୍ତି ।

ଦୁଷ୍ଟବାଣୀ କୋଠଭଣ୍ଡାରୁ ବାଛି ଅବାଚ୍ୟ କଥା
କି ଖେଳ ଖେଳୁଛି ଲେଖକେ ଧନ୍ୟ ସୁରୁଚି ପ୍ରଥା !

ପୁନଶ୍ଚ—

ଗର୍ଜନ ତର୍ଜନ କରଣ ବହୁ ସୁରୁଚି ବାନା
କୁରୁଚି-କର୍ଦ୍ଦମା-କର୍ଦ୍ଦମେ ପଡ଼ି ଗଡ଼ୁଛି ସିନା ।

ମାତୃବଚ୍ଛଳ ସୁରୁଚିଶୂନ୍ୟ କଥା ମଧୁସୂଦନଙ୍କ ବଡ଼ ବ୍ୟଥା ଦିଏ । ବିଶେଷତଃ ସାହିତ୍ୟକ୍ଷେତ୍ରରେ ଏ ସବୁ ତାଙ୍କର ବଡ଼ ଚକ୍ଷୁଃଶୂଳ ହୋଇ ଉଠିଅଛି ।

ଲଙ୍କା ଭକ୍ତି ପ୍ରୀତି ସାରଲ୍ୟ ଫିଙ୍ଗି ଦେଇଣ ଦୂରେ
"ହପ୍ ହପ୍ ହୁର୍‌ରେ" ଗାଅ ରେ କଳଯୁଗିଆ ଶୂରେ ।

ମଧୁସୂଦନଙ୍କର ବ୍ୟଙ୍ଗକବିତା ପାଠ କଲେ ଏହା ତାଙ୍କର ଲେଖନୀ-ନିଃସୃତ ବୋଲି ମନେ ହୁଏ ନାହିଁ । କାରଣ ଏ ଦୁଇଟି ତାଙ୍କର ନିକୃଷ୍ଟ-ତମ ଭାବ—କ୍ରୋଧ ଓ ଘୃଣାର ବ୍ୟଞ୍ଜକ ।

ଅନୁବାଦ ଅନୁବାଦ ମଧ୍ୟରେ ମଧୁସୂଦନଙ୍କର "ନିର୍ଜନ ଦ୍ୱୀପରେ ନିର୍ବାସିତର ବିଳାପ" "ଅଯୋଧ୍ୟାପ୍ରତ୍ୟାଗମନ" "ଉତ୍ତରରାମ ଚରିତ" ଓ "ପ୍ରଣୟର ଅଦ୍ଭୁତ ପରିଣାମ" ପ୍ରଧାନ । ତନ୍ମଧ୍ୟରେ "ନିର୍ଜନ ଦ୍ୱୀପରେ ନିର୍ବାସିତର ବିଳାପ" ଓ "ଅଯୋଧ୍ୟା ପ୍ରତ୍ୟାଗମନ" ନାମକ ଦୁଇଟି କବିତା ପାଠ କଲେ ମନେ ହୁଏ, ଏହା ଯେପରି ମୌଳିକ ଏବଂ ଅନ୍ୟ ଭାଷାରେ ଅନୂଦିତ ହେବାର ଯୋଗ୍ୟ । ଭାଷା ଉପରେ ପ୍ରଭୁତ୍ୱ ନ ଥିଲେ ଅନୁବାଦ ଉତ୍କୃଷ୍ଟ ହୋଇ ନ ପାରେ । ଅନୁବାଦକ ହିସାବରେ ମଧୁସୂଦନଙ୍କୁ ମେଘଦୂତର ଅନୁବାଦକ ରାଧାନାଥଙ୍କ ଅପେକ୍ଷା କୌଣସି ଅଂଶରେ ନିକୃଷ୍ଟ ବୋଲିହେବ ନ ପାରେ । ଦୃଷ୍ଟାନ୍ତଦ୍ୱାରା ଏହା ପ୍ରମାଣିତ କରିବା ପାଇଁ ଏଠାରେ ଆମ୍ଭମାନଙ୍କର ସ୍ଥାନାଭାବ ।

କିନ୍ତୁ "ଉତ୍ତରରାମଚରିତ" ଏମାନଙ୍କର ସମକକ୍ଷ ନୁହେ । ଉକ୍ତ ତିନୋଟି ଅନୁବାଦ ତୁଳନାରେ ଉତ୍ତରରାମଚରିତର ଅନୁବାଦ ନିକୃଷ୍ଟ ପରି ମନେ ହୁଏ । ମହାକବି ୰ ଭବଭୂତିଙ୍କର ମୌଳିକ ଗ୍ରନ୍ଥରେ ଯେଉଁ ଭାବପ୍ରେରଣା ପ୍ରତି ଛନ୍ଦରେ ପରିଲକ୍ଷିତ ହୁଏ, ଅନୁବାଦରେ ତାହା ସଂରକ୍ଷିତ ହୋଇ ପାରି ନାହିଁ ।

ରାଧାନାଥଙ୍କ ପରି ମଧୁସୂଦନ ମଧ୍ୟ ଗଦ୍ୟ ଲେଖିବାରେ ଅଧିକ ମନ ବଳାଇ ନାହାନ୍ତି । କିନ୍ତୁ ତାଙ୍କର ପାଠ୍ୟପୁସ୍ତକାଦିରେ ଯେ କେତେ ଗୋଟି ଗଦ୍ୟ ପ୍ରବନ୍ଧ ପ୍ରକାଶିତ ହୋଇଅଛି, ସେଥିରୁ ଅନୁମିତ ହୁଏ, ସେ ଗଦ୍ୟ ଲେଖିବାକୁ ଅଧିକ ମନ ବଳାଇଥିଲେ ଏ ଦିଗରେ ରାଧାନାଥଙ୍କୁ ମଧ୍ୟ ଅତିକ୍ରମ କରି ଯାଇଥାନ୍ତେ ।



## ସପ୍ତବିଂଶ ପରିଚ୍ଛେଦ ।

### ଉତ୍କଳରେ ମଧୁସୂଦନଙ୍କର ସ୍ଥାନ ।

ଆମ୍ଭେମାନେ ଯଥା ତଥା ମଧୁସୂଦନଙ୍କର ଗ୍ରନ୍ଥପରିଚୟ ପାଠକ-ମାନଙ୍କ ସମକ୍ଷରେ ଉପସ୍ଥାପିତ କରିଅଛୁଁ । ବର୍ତ୍ତମାନ ଉତ୍କଳରେ ତାଙ୍କର ସ୍ଥାନ ନିର୍ଦ୍ଦେଶ କରି ଏ ପୁଣ୍ୟମୟ ଜୀବନବୃତ୍ତାନ୍ତ ସାଙ୍ଗ କରିବୁଁ । ଆଧୁନିକ ଉତ୍କଳ-ସାହିତ୍ୟ ପ୍ରତି ଦୃଷ୍ଟି ଫେରାଇଲେ ସର୍ବପ୍ରଥମେ ରାଧାନାଥ ଓ ମଧୁସୂଦନଙ୍କ ନାମ ପ୍ରତ୍ୟେକ ଶିକ୍ଷିତ ବ୍ୟକ୍ତି ଉଚ୍ଚାରଣ କରିଥାନ୍ତି । ଗୋଟିଏ କଥାରେ କହିବାକୁ ଗଲେ ରାଧାନାଥ ସାହିତ୍ୟ ଓ ଭାଷାର ସଂସ୍କାରକ, ମଧୁସୂଦନ ସାହିତ୍ୟର ରୁଚିସଂସ୍କାରକ । ରାଧାନାଥ ଉତ୍କଳସାହିତ୍ୟକୁ ନୂତନ ଧାରାରେ ଢାଳିଅଛନ୍ତି, ମଧୁସୂଦନ ସେଥିରେ ଉତ୍କୃଷ୍ଟ ରୁଚିର ପ୍ରବର୍ତ୍ତନ କରିଅଛନ୍ତି । କବି ହିସାବରେ ରାଧାନାଥ

ମଧୁସୂଦନଙ୍କ ଅପେକ୍ଷା ଅନେକ ବଡ଼, କିନ୍ତୁ ରୁଚି ହିସାବରେ ମଧୁସୂଦନ ରାଧାନାଥଙ୍କ ଅପେକ୍ଷା ସେହି ପରିମାଣରେ ଶ୍ରେଷ୍ଠତର । ରାଧାନାଥ ଖାଣ୍ଟି ଆର୍ଟିଷ୍ଟ—ସେ ରୁଚି ଅରୁଚି, ନୀତି ଅନୀତିର ଊର୍ଦ୍ଧ୍ୱରେ । କାବ୍ୟହିଁ ତାଙ୍କର ସର୍ବଶ୍ରେଷ୍ଠ ଜୀବନ । ସେଥିଲାଗି ସେ ପିତା କନ୍ୟା ମଧ୍ୟରେ ଭ୍ରାତା ଭଗିନୀ ମଧ୍ୟରେ ପ୍ରଣୟ ଅଙ୍କନ କରିବାକୁ ପଶ୍ଚାତ୍ପଦ ହୋଇ ନାହାନ୍ତି ଏବଂ ନିରୀହ କୌଶଲ୍ୟା ଓ ନନ୍ଦକେଶ୍ୱରୀଙ୍କ ପ୍ରତି ନିଷ୍ଠୁର ହେବାକୁ ଅନ୍ୟାୟ ଜ୍ଞାନ କରି ନାହାନ୍ତି । ଜଗତର ନିକୃଷ୍ଟ ଘଟନାକୁ ନିଜ କାବ୍ୟରେ ସ୍ଥାନ ଦେଇ ତାଙ୍କର ଘୋର ବିଷାଦବାଦର (Pessimism) ପ୍ରମାଣ ଦେଖାଇଅଛନ୍ତି । ମାନବସମାଜର ଯେତେ-ଦୂର ଅଧୋଗତି ହୋଇ ପାରେ, ରାଧାନାଥଙ୍କ ଦୃଷ୍ଟି ସେ ଦିଗରେ, କିନ୍ତୁ ଜଗତର ଯେ ଚରମ ଉନ୍ନତି ସାଧିତ ହୋଇ ପାରେ, ମଧୁସୂଦନଙ୍କର ଧ୍ୟାନନେତ୍ର ସେ ଦିଗରେ ଉତ୍କ୍ଷିପ୍ତ । ଅର୍ଥାତ୍ ସଂସାର ଯାହା, ରାଧାନାଥ ତାହା ସହଜଭାବରେ ଗ୍ରହଣ କରିଅଛନ୍ତି, କିନ୍ତୁ ସଂସାର ଯାହା ହେବା ଉଚିତ, ମଧୁସୂଦନ ତାହାର ସାଧନା କରିଅଛନ୍ତି । ସେଥିଲାଗି ରାଧାନାଥ କବି ଓ ମଧୁସୂଦନ ସାଧକ । ମଧୁସୂଦନ ସବୁଠାରେ ନୀତିର ଦିକ୍ ଧରି ଚାଲିଅଛନ୍ତି, କୌଣସି ସ୍ଥଳରେ ତାଙ୍କୁ ଏ ପାଖ ସେ ପାଖ ହେବାକୁ ଦେଖାଯାଇ ନାହିଁ, ଏହି ନୀତିର ଧରାବନ୍ଧା ନିୟମକୁ ପଦେ ପଦେ ମାନି ସେ ଚାଲିଅଛନ୍ତି ଏବଂ କବିତା ଉପରେ ଏହାକୁ ସ୍ଥାନ ଦେଇଅଛନ୍ତି । କିନ୍ତୁ ରାଧାନାଥ ନୀତି ଅନୀତି, ନ୍ୟାୟ ଅନ୍ୟାୟ ସକଳର ଊର୍ଦ୍ଧ୍ୱରେ କବିତାର ସ୍ଥାନ ନିର୍ଦ୍ଦେଶ କରିଅଛନ୍ତି । ନୀତିର ଊର୍ଦ୍ଧ୍ୱରେ (unmoral) କବିତାର ସ୍ଥାନ ଦେବାହିଁ ଏହାର ଚରମ ଉତ୍କର୍ଷ ।

ରାଧାନାଥ ଓ ମଧୁସୂଦନଙ୍କୁ ଇଂରେଜ କବି ଶେଲି (Shelly) ଓ ୱାର୍ଡ଼ସୱାର୍ଥଙ୍କ (Wordsworth) ସହିତ ତୁଳନା କରାଯାଇ ପାରେ । ଶେଲିଙ୍କ ପରି ରାଧାନାଥ ଅନୁଭୂତିର କବି । ଯେଉଁ କବି ଅନୁଭୂତିପ୍ରଧାନ, ସେ ଜୀବନଟାକୁ ବସ୍ତୋଗାନ୍ତିକ ନାଟକରୂପରେ ଦର୍ଶନ କରନ୍ତି । ସେମାନେ

ଆପଣାକୁ ଜଗତରେ ନିକୃଷ୍ଟତମ ଦୁଃଖୀ ବୋଲି ଜ୍ଞାନ କରନ୍ତି ଏବଂ ଅନ୍ୟମାନଙ୍କୁ ସୁଖୀ ବୋଲି ମନେ କରନ୍ତି,

"ହସି ଖେଳି ସେହି ଗମନ୍ତି ସମସ୍ତ,
ଜୀବନ ମଣନ୍ତି ମହା ସୁଖମୟ ।
× × ×
ମୋ ଜୀବନ ଗଢ଼ା ଭିନ୍ନ ଉପାଦାନେ ।"

(ଚିଲିକା)

ଶେଲି ମଧ ଗାଇଅଛନ୍ତି—

Smiling they live, and call life pleasure,
But mine is dealt with another measure.

ଏମାନେ ଦୁଃଖର ମାତ୍ରାକୁ ଏତେ ଅଧିକଭାବରେ ଅନୁଭବ କରନ୍ତି ଯେ, ସେଥିରୁ ମୁକ୍ତ ହେବାପାଇଁ ଉପାୟ ଖୋଜି ପାରନ୍ତି ନାହିଁ । ବିଶ୍ୱର ନିବିଡ଼ ବେଦନା ସହିତ ସମବେଦନା ଅନୁଭବ କରି କ୍ରନ୍ଦନ କରନ୍ତି ।

ଚିର ଦାହାମୟ ଏ ଛାର ଜୀବନ,
ଜୀବନ ନୁହଇ ଜୀବନ୍ତ ମରଣ ।

କିନ୍ତୁ ବାଲ୍ମୀକି ରାଧାନାଥଙ୍କ ପରି ମଧୁସୂଦନ ପ୍ରତି ମୁହୂର୍ତ୍ତରେ ଏହି ସ୍ୱାଭାବିକ ଜଡ଼ତା ଓ ବିଷାଦବାଦରୁ ମୁକ୍ତି ଲଭିବାକୁ ଚେଷ୍ଟାକରିଅଛନ୍ତି । ଏମାନେ ସହଜରେ ଏ ବିଷାଦବାଦକୁ ସ୍ୱୀକାର କରିବାକୁ ଯାଇ ନାହାନ୍ତି । ସଂସାର ଯେ ଏକ ବିରାଟ ପୁରୁଷଙ୍କର ନିୟମରେ ନିୟନ୍ତ୍ରିତ, ସେହି ନିୟମ ଲଂଘନରେ ଦୁଃଖ ଓ ସେହି ନିୟମ ମାନି ଚଳିବାରେ ଯେ ପ୍ରକୃଷ୍ଟ ଜୀବନ, ଏମାନଙ୍କ ସମକ୍ଷରେ ଏହାହିଁ ସହଜ ସତ୍ୟରୂପରେ ପ୍ରତୀୟମାନ ହୋଇଅଛି । ଶେଲି, ରାଧାନାଥଙ୍କ ପରି ଏମାନେ ଜଗତରେ ବିଶୃଙ୍ଖଳତା

ଦେଖିବାକୁ ପାଇ ନାହାନ୍ତି । ସକଳ ସ୍ଥଳରେ ଏମାନେ ସୌନ୍ଦର୍ଯ୍ୟ ଓ ସାମଞ୍ଜସ୍ୟ ଦେଖିବାକୁ ପାଇଅଛନ୍ତି । ସେଥିଲାଗି ଆନନ୍ଦରେ ଗାନ କରିଅଛନ୍ତି,

'ମଧୁମୟ ସୃଷ୍ଟି ସୁଧାମୟ ସୃଷ୍ଟି,
ଏ ସୃଷ୍ଟି ଆନନ୍ଦମୟ ହେ ।'

ଏପରି ଭାଷା ବ୍ୟକ୍ତ କରିବାକୁ ଜଗତରେ ଅଳ୍ପ ସୌଭାଗ୍ୟସମ୍ପନ୍ନ କବିଙ୍କର ଅଧିକାର ନାହିଁ । ସତୀତ୍ୱର ଗୌରବରେ ସେମାନେ ଗୌରବାନ୍ୱିତ । କିନ୍ତୁ ସଂସାର ସହିତ ଏମାନଙ୍କର ଯୋଗ ଶେଲି, ରାଧାନାଥଙ୍କ ପରି ନୁହେ । ଶେଲି, ରାଧାନାଥ ଘନିଷ୍ଠ ଭାବରେ ସଂସାରର ସୁଖ ଦୁଃଖ ସହିତ ଜଡ଼ିତ । ଏହାର ସୁଖରେ ସେମାନେ ସୁଖୀ ଏବଂ ଦୁଃଖରେ ଦୁଃଖୀ । ଏମାନଙ୍କ ପାଇଁ ସଂସାର ହାସ୍ୟ କରେ, କିନ୍ତୁ ମଧୁସୂଦନ ବାହ୍ୟସ୍ୱାର୍ଥ ସାଧାରଣର ଦୂରବର୍ତ୍ତୀ । ସୁତରାଂ ଏମାନଙ୍କୁ ଜଗତ ଭକ୍ତିବିନମ୍ର ଚିତ୍ତରେ ନମସ୍କାର କରେ । ଏମାନଙ୍କର ନିକଟବର୍ତ୍ତୀ ହେବାକୁ ତାହାର ଭରସା ହୁଏ ନାହିଁ । ଅଥଚ ରାଧାନାଥ, ଶେଲିଙ୍କୁ ସଂସାର ନିତାନ୍ତ ଆପଣାର ଜନ ବୋଲି ଜ୍ଞାନ କରେ ।

ପ୍ରକୃତିର ସୌନ୍ଦର୍ଯ୍ୟରେ ଶେଲି, ରାଧାନାଥ ଯେପରି ମୁଗ୍ଧ ଓ ଆତ୍ମବିସ୍ମୃତ ହୋଇ ପାରନ୍ତି । ୱାର୍ଡସବାର୍ଥ, ମଧୁସୂଦନ ସେପରି ନୁହନ୍ତି । ଶେଷୋକ୍ତ କବି ଦୁଇଜଣ ପ୍ରକୃତି ମଧ୍ୟରେ ପୁରୁଷର ଅଙ୍ଗୁଳି ନିର୍ଦ୍ଦେଶ ଲକ୍ଷ୍ୟ କରିଅଛନ୍ତି । ପ୍ରକୃତିହିଁ ସେମାନଙ୍କ ପକ୍ଷରେ ଶ୍ରେଷ୍ଠ ପରିଣତି ନୁହେ । ଏହା ଗୋଟିଏ ଉନ୍ନତତର ପରିଣତିପାଇଁ ଉପାୟ ମାତ୍ର । ସେଥିଲାଗି ଚିଲିକାର ଶୋଭା ସନ୍ଦର୍ଶନରେ "ଅସ୍ମିତା ବିସ୍ମୃତ୍ୟେ ନିମଗ୍ନ" ହୋଇ ପୁନଶ୍ଚ "ବିଷମ ସଂସାରକୁ ବାହୁଡ଼ିବାର" ଦୁଃଖରେ ରାଧାନାଥ ଯେପରି ଅଭିଭୂତ ହୋଇଅଛନ୍ତି, ମଧୁସୂଦନଙ୍କୁ କୌଣସି ସ୍ଥଳରେ ସେପରି ଦୁଃଖ ଲଭିବାକୁ ହୋଇ ନାହିଁ । ଜୀବନରେ

ଆନନ୍ଦ ଅଛି, ଆରାମ ଅଛି, କିନ୍ତୁ ଆମ୍ଭମାନଙ୍କର ସୀମାବଦ୍ଧ ଓ ଅପୂର୍ଣ୍ଣ ଜୀବନହିଁ ତାହାର ଅନ୍ତରାୟ ହୋଇ ରହିଅଛି । ମନୁଷ୍ୟ ସାଧନାର ବଳରେ ଏହି ଆନନ୍ଦର ଅଧିକାରୀ ହୋଇ ପାରେ । ଏହା ମଧୁସୂଦନଙ୍କର ବିଶ୍ୱାସ । କିନ୍ତୁ ରାଧାନାଥ ଏ ବିଷୟରେ ହତାଶ ହୋଇ ପଡ଼ିଅଛନ୍ତି । ମନୁଷ୍ୟର ଏପରି ଅନେକ ଅପୂର୍ଣ୍ଣତା ରହିଅଛି, ଯାହା ଅତିକ୍ରମ କରିବା ଅସମ୍ଭବ । ସେଥିଲାଗି ସେ ମାନବଜୀବନକୁ ଚିର ହାହାମୟ କରି ଦେଖିଅଛନ୍ତି ।

କିନ୍ତୁ ବର୍ଣ୍ଣନା, ଶବ୍ଦବିନ୍ୟାସ, ଛନ୍ଦ, ଉପମା ଇତ୍ୟାଦି କବିତ୍ୱର ସକଳ ଗୁଣରେ ରାଧାନାଥ ଭୂଷିତ ଏବଂ ଏ ସବୁ ଦିଗରେ ମଧୁସୂଦନଙ୍କଠାରୁ ବହୁ ଊର୍ଦ୍ଧ୍ୱରେ । ମଧୁସୂଦନ କବିଭାବରେ ବଡ଼ ନୁହନ୍ତି, କିନ୍ତୁ ମନୁଷ୍ୟ ହିସାବରେ, ଭକ୍ତ ହିସାବରେ ବଡ଼ । ସମାଜରେ, ଧର୍ମରେ, ଶିକ୍ଷାରେ, ସାହିତ୍ୟରେ ସର୍ବତ୍ର ମଧୁସୂଦନଙ୍କର ବ୍ୟକ୍ତିତ୍ୱ ଫୁଟି ଉଠିଅଛି । ଇଂରେଜୀ ସାହିତ୍ୟରେ କବି ୱାର୍ଡ଼ସ୍ୱାର୍ଥ ଶେଲି, ସେକ୍ସପିୟରଙ୍କ ଊର୍ଦ୍ଧ୍ୱରେ ମଧ୍ୟ ଯେଉଁ ଗୁଣରୁ ପୂଜା ପାନ୍ତି, ଯେଉଁ ଗୁଣରୁ ଇଂରେଜ ଅନ୍ତର ତାଙ୍କର ପୁଣ୍ୟ-ସ୍ମୃତି ଭକ୍ତିଦ୍‌ଗତ ଚିତ୍ତରେ ଅନ୍ତରରେ ପୋଷଣ କରେ, ସେହି ଗୁଣରୁ ମଧୁସୂଦନ ଭବିଷ୍ୟତ ଉତ୍କଳର ପୂଜ୍ୟ ହୋଇ ରହିବେ, ଏହା ଆମ୍ଭମାନଙ୍କର ବିଶ୍ୱାସ । ବ୍ରାହ୍ମଧର୍ମାବଲମ୍ବୀ ହେଲେହେଁ ଯେଉଁ ମଧୁସୂଦନ ନିଜର ସଂଯତ ସ୍ୱଭାବ ଓ ନିରାମିଷ ଭୋଜନବଶତଃ ସକଳ ସମାଜ ଓ ସକଳ ଶ୍ରେଣୀରେ ସାଦରରେ ଗୃହୀତ ହେଉଥିଲେ, ଯାହାଙ୍କର ଜ୍ୟେଷ୍ଠପୁତ୍ରଙ୍କ ବିବାହୋତ୍ସବରେ ବ୍ରାହ୍ମଣ, ବୈଦ୍ୟ, କାୟସ୍ଥ, କରଣ, ମହାନାୟକ, ଓଡ଼ିଆ, ବଙ୍ଗାଳି ସମସ୍ତେ ଆନନ୍ଦରେ ଯୋଗ ଦେଇ ଏକାସନରେ ବସି ଭୋଜନାଦି କ୍ରିୟା ସମ୍ପନ୍ନ କରିଥିଲେ, ଯେଉଁ ମଧୁସୂଦନ ସକଳ ବୈପରୀତ୍ୟ, ସକଳ ବୈଷମ୍ୟ ଓ ଭେଦାଭେଦ ମଧ୍ୟରେ ଏକର ସମନ୍ୱୟ ସନ୍ଦର୍ଶନ କରୁଥିଲେ, ତାଙ୍କ ପ୍ରତି ଉତ୍କଳବାସୀର ଶ୍ରଦ୍ଧା ଓ ଭକ୍ତି ଯେ ଚିରଦିନ ଅକ୍ଷୁଣ୍ଣ ରହିବ, ଏ କଥା କହିବା ବାହୁଲ୍ୟ ମାତ୍ର ।

"ଋଷିପ୍ରାଣେ ଦେବାବତରଣ", ଓ "ହିମାଚଳେ ଉଦନ୍ତ ଉତ୍ସବ"ର ରଚୟିତା ମଧୁସୂଦନ ଅଦ୍ୟାପି ବିଶ୍ୱସାହିତ୍ୟରେ ପରିଚିତ ହୋଇ ନାହାନ୍ତି, ଏହା ଉତ୍କଳର ଦୁର୍ଭାଗ୍ୟ । ଦିନେ ହେଲେ କେହି ଚନ୍ଦ୍ରୟ ଗ୍ରାହକ ତାଙ୍କର ନାମ ଜଗତରେ ପ୍ରଚୁର କରିବ, ଏ ବିଷୟରେ ସନ୍ଦେହ କରିବାର କୌଣସି କାରଣ ନାହିଁ ।

ଉତ୍କଳର ଭାଗ୍ୟ ଫେରିଲେ ମଧୁସୂଦନଙ୍କର ଏ ଅଭାବ ଭୂମିରେ ଅନୁଭୂତ ହେବ ନାହିଁ । ଉତ୍କଳର କୁଞ୍ଜେ କୁଞ୍ଜେ ପୁନଶ୍ଚ ବ୍ରାହ୍ମମନ୍ତ୍ର ଧ୍ୱନିତ ହୋଇ ଉଠିବ—

"ଶୃଣ୍ୱନ୍ତୁ ବିଶ୍ୱେ ଅମୃତସ୍ୟ ପୁତ୍ରା
ଆଯେ ଧାମାନି ଦିବ୍ୟାନି ତସ୍ଥୁଃ ।
ବେଦାହମେତଂ ପୁରୁଷଂ ମହାନ୍ତ—
ମାଦିତ୍ୟବର୍ଣ୍ଣଂ ତମସଃ ପୁରସ୍ତାତ୍ ।
ତମେବ ବିଦିତ୍ୱାତିମୃତ୍ୟୁମେତି
ନାନ୍ୟଃ ପନ୍ଥା ବିଦ୍ୟତେଽୟନାୟ ।



# ପରିଶିଷ୍ଟ ।

[ମଧୁସୂଦନଙ୍କ ପରଲୋକଗମନ ପରେ "ଉତ୍କଳ ସାହିତ୍ୟ" ପତ୍ରିକାର ଗୋଟିଏ ସଂଖ୍ୟା "ମଧୁସୂଦନ-ସଂଖ୍ୟା" ଆକାରରେ ପ୍ରକାଶିତ ହୋଇଥିଲା। ସେ ସଂଖ୍ୟାଟି ଉତ୍କଳର ନାନା ଶ୍ରେଣୀର ପ୍ରସିଦ୍ଧ ସାହିତ୍ୟିକ-ଗଣଙ୍କର ଅନେକଗୁଡ଼ିଏ ପଦ୍ୟ ଓ ଗଦ୍ୟ ରଚନାରେ ପୂର୍ଣ୍ଣ ହୋଇଥିଲା। ଆମ୍ଭେମାନେ ସେଥିରୁ ସମ୍ପାଦକଙ୍କ ଲେଖାର କିୟଦଂଶ ଓ କେତୋଟି ମାତ୍ର କବିତା ଏଠାରେ ଉଦ୍ଧାର କରି ଦେଉଅଛୁଁ ।]

( ୧ )

ଉତ୍କଳଗଗନର ଉଜ୍ଜ୍ୱଳ ଜ୍ୟୋତିଷ ଆଜି ଅସ୍ତମିତ ! ଜ୍ଞାନୀ, କର୍ମୀ, ଭକ୍ତ, ପ୍ରେମିକ, ସାଧକ ମଧୁସୂଦନ ଆଜି ଆମ୍ଭମାନଙ୍କୁ ଛାଡ଼ି କେଉଁ ଅଦୃଶ୍ୟ ରାଜ୍ୟକୁ ଚାଲିଗଲେ । ପୁଣ୍ୟାତ୍ମା ପ୍ରଶାନ୍ତଚିତ୍ତରେ ପ୍ରଫୁଲ୍ଲ-ବଦନରେ ସଂସାରର ସମସ୍ତ ଜାଲାଜଞ୍ଜାଳ ପଶ୍ଚାତରେ ରଖି ଅକ୍ଷୟ ଅମୃତଧାମକୁ ପ୍ରସ୍ଥାନ କଲେ । ଉତ୍କଳ ବଡ଼ ଦୀନ, ବଡ଼ ଭାଗ୍ୟହୀନ, ଘୋର ଶାପଗ୍ରସ୍ତ ! ତାହାର ବକ୍ଷ ଶୂନ୍ୟ କରି ଗୋଟି ଗୋଟି ହୋଇ ସୁସନ୍ତାନମାନେ ଅକାଳରେ ଚାଲି ଯାଉଅଛନ୍ତି, ସେ ଶୂନ୍ୟକୁ ଚାହିଁ ବସି-ଅଛି ! ହୃଦୟଦ୍ୱାର ମୁକ୍ତ କରି ଦୁଃଖ ପ୍ରକାଶ କରିବାର ଶକ୍ତି ଯେପରି ଲୁପ୍ତ ହୋଇଅଛି—ଆଘାତ ଉପରେ ଆଘାତ ସହି ସେ ଆଜି ଜଡ଼ପ୍ରାୟ ହୋଇଅଛି—ଚକ୍ଷୁରୁ ଲୋତକଧାର ଶୁଖି ଯାଇଅଛି ! କାହିଁ, ଆକୁଳ କ୍ରନ୍ଦନଧ୍ୱନିରେ ତ ଦଶଦିଗ କମ୍ପିତ ହେଉ ନାହିଁ ? ଶୋକା-ଶ୍ରୁରେ ତ ବକ୍ଷ ଭାସି ଯାଉ ନାହିଁ ? ଉତ୍ତପ୍ତ ଶ୍ୱାସବାୟୁରେ ତ ବାୟୁମଣ୍ଡଳ ଉଷ୍ଣ ହେଉ ନାହିଁ ? ଅଭାଗା ଉତ୍କଳ ଆଜି ଯେଉଁ ଅମୂଲ୍ୟ ନିଧି ହରାଇଲା, ତାହାର ଆଉ ତୁଳନା କାହିଁ ? ଜ୍ଞାନ, ପ୍ରେମ, କର୍ମର ତ୍ରିଧାରାର ଏପରି ଅପୂର୍ବ ମିଳନ ଏ ଉତ୍କଳଖଣ୍ଡରେ ଆଉ କାହା ଜୀବନରେ ଦେଖିବୁଁ ? ତେଜସ୍ୱିତା ଓ କୋମଳତାର ଏପରି ସୁନ୍ଦର

ସାମଞ୍ଜସ୍ୟ ଆଉ କିଏ ଦେଖାଇବ ? ସଂସାର ଓ ଧର୍ମ ଉଭୟର ପ୍ରୀତି-ବନ୍ଧନ ଆଉ କେଉଁଠାରେ ମିଳିବ ? ଶିଶୁର ସରଳତା, ଯୁବକର ଉତ୍ସାହ, ବୃଦ୍ଧର ଜ୍ଞାନଗରିମାର ଏପରି ସୁନ୍ଦର ସମାବେଶ ଜୀବନରେ କିଏ ପ୍ରଦର୍ଶନ କରିବ ? ପାପ ପ୍ରତି ତୀବ୍ର ଘୃଣା ଓ ପାପୀ ପ୍ରତି ମହା କରୁଣା ଆଉ କାହା ଜୀବନରେ ଏପରି ସୁସ୍ପଷ୍ଟରୂପେ ଦେଖାଯିବ ? ସ୍ୱାଦେଶିକତା ସଙ୍ଗରେ ସାର୍ବଜନୀନତାର ବିରୋଧ ଏପରି ସୁନ୍ଦରଭାବରେ କିଏ ଭଞ୍ଜନ କରିବ ? ଏପରି ନିଷ୍ଠାସହକାରେ ପ୍ରାଣ ବ୍ରହ୍ମପଦରେ ଏବଂ ହସ୍ତ ବିଭୁଙ୍କ ପ୍ରିୟକାର୍ଯ୍ୟରେ କିଏ ସମର୍ପଣ କରିବ ? ନବଯୁଗର ଜାଗରଣବାଣୀ କିଏ ଆଉ ସେପରି ଉଦାତ୍ତସ୍ୱରରେ ଉଚ୍ଚାରଣ କରିବ ? ବ୍ରହ୍ମଙ୍କ ବିଜୟନିଶାଣ କିଏ ଆଉ ସେପରି ଦୃଢ଼ମୁଷ୍ଟିରେ ଧାରଣ କରି ଅଚଳ ଅଟଳଭାବରେ ଦଣ୍ଡାୟମାନ ହେବ ? ସକଳପ୍ରକାର ଦୈନ୍ୟ ତାପ ଭିତରେ କିଏ ଆଉ ସେପରି ଅଭୟ ଆଶ୍ୱାସବାଣୀ ଶୁଣାଇବ ? ଉତ୍କଳର ଗୌରବରେ କାହା ବକ୍ଷ ଆଉ ସେପରି ସ୍ଫୀତ ହେବ ? ଉତ୍କଳର ଦୁଃଖ ସ୍ମରଣ କରି କିଏ ଆଉ ସେପରି ବ୍ୟାକୁଳ ହେବ ? ଉତ୍କଳର ସାମାନ୍ୟ ସୌଭାଗ୍ୟ ଦେଖି—କୌଣସିଠାରେ ସାମାନ୍ୟ ଟିକିଏ ଜୀବନର ସ୍ପନ୍ଦନ ଦେଖି କିଏ ଆଉ ସେପରି ଆନନ୍ଦବିହ୍ୱଳ ହେବ ? ସାନ ବଡ଼ ସମସ୍ତଙ୍କୁ କିଏ ଆଉ ସେପରି ଭାଇ ବୋଲି ପ୍ରେମରେ ଆଲିଙ୍ଗନ କରିବ ? ସଂସାରର କଳୁଷିତ ବାୟୁକୁ ସ୍ୱୀୟ ପୁଣ୍ୟ ଜୀବନର ପ୍ରଭାବରେ କିଏ ଆଉ ସେପରି ନିର୍ମଳ କରି ଦେବ ? ହା ଉତ୍କଳର ପ୍ରିୟସନ୍ତାନ ପ୍ରିୟଭାଷୀ ପ୍ରିୟଭାଷୀ ପ୍ରିୟଦର୍ଶନ ମଧୁସୂଦନ ! ଆଜି ତୁମ୍ଭ ଅଭାବରେ ଉତ୍କଳର କି ଦଶା ଘଟିଲି, ତାହା କିଏ ବୁଝିବ ? କିଏ ବା ଏ ଦଶା ମେଣ୍ଟାଇବ ? ହା ହତଭାଗ୍ୟ ଉତ୍କଳ ! ତୁ ଆଜି ଥରେ ସମଗ୍ର ହୃଦୟଦ୍ୱାର ଖୋଲି ଦେ । ସମଗ୍ର ଶକ୍ତି ପ୍ରୟୋଗ କରି ଥରେ ଆର୍ତ୍ତଧ୍ୱନି ଉଚ୍ଚାରଣ କର । ସେ ଧ୍ୱନି ଦଶଦିଗ ବିକମ୍ପିତ କରି ବିଶ୍ୱପତିଙ୍କ କୃପାସିଂହାସନ ସ୍ପର୍ଶ କରୁ । କେଜାଣି ବା ତାଙ୍କର କୃପାରେ ଏକ ମଧୁସୂଦନ ଶତ ଶତ ମଧୁସୂଦନ

—ସହସ୍ର ସହସ୍ର ମଧୁସୂଦନରୂପରେ ତୋର ସଂସାରକୁ ପୂର୍ଣ୍ଣ କରବେ —ତୋର ଦୁଃଖ ଦୈନ୍ୟ ଦୂର ହେବ—ଜଡ଼ତା ଅବସାଦ ଅପସାରିତ ହେବ—ସ୍ୱାର୍ଥ ମୋହ କଳୁଷରାଶି ବିନଷ୍ଟ ହେବ—ତୋର ବକ୍ଷରେ ପ୍ରେମ-ମନ୍ଦାକିନୀ ପ୍ରବାହିତ ହେବ—ତୋର ଆକାଶରେ ସମୁଜ୍ଜ୍ୱଳ ଜ୍ଞାନ-ଜ୍ୟୋତି ବିଭାସିତ ହେବ—ପୁଣ୍ୟର ସୌରଭମୟ ସୁବସନ୍ତ-ବାୟୁରେ ଦଶଦିଗ ଆମୋଦିତ ହେବ । ହା ଭଗବନ୍ ! ସେ ଦିନ କେବେ ଆସିବ ? ସେ ଦିନ କି ଆସିବ ନାହିଁ ? ତେବେ କଣ ମଧୁସୂଦନଙ୍କ ଜୀବନ ବ୍ୟର୍ଥ ? ମଧୁସୂଦନଙ୍କ ତପସ୍ୟା ନିଷ୍ଫଳ ? ମଧୁସୂଦନଙ୍କ କାତର ପ୍ରାର୍ଥନା କେବଳ ପ୍ରଳାପ ? ମଧୁସୂଦନଙ୍କ ଅଙ୍ଗାର ବାଣୀ କେବଳ ଛଳନା ? କିଏ ବୁଝିବ ତୁମ୍ଭର ମହିମା ? କି ସୂତ୍ରରେ ତୁମ୍ଭେ କେଉଁ ମଙ୍ଗଳ ଅନୁଷ୍ଠାନ କର, କିଏ ନିରୂପଣ କରିବ ? "ଅନନ୍ତ ଦୟା ତୁମ୍ଭର ଅନନ୍ତ ଶକତି !"



( ୨ )

( ଆଦ୍ୟ ମଗୁଣିରବାଣୀ—କହ ହନୁ ମୋର
କାନ୍ତର କୁଶଳ, ଲକ୍ଷ୍ମଣର ସର୍ବକୁଶଳ । )

୧

କାହିଁ ଗଲ ଆହେ ଶ୍ରୀ ମଧୁସୂଦନ
ଚେତନ କର୍ମଭୂମି ଧରଣୀ,
ତୁମ୍ଭ ବିଚ୍ଛେଦରେ ଦୁଃଖକାତର
କାନ୍ଦନ୍ତି ଉତ୍କଳ-ଜନନୀ ।
କାଳ ରେ ! କି ଦାରୁଣ ତୋର ଏ ବିଧି !

କହ କହ କାଳ          ଲୁଣ୍ଠିଲୁ କାହିଁ
ଅମୂଲ୍ୟ ସୁନ୍ଦର ସେ ନିଧି ?
କାଳ ରେ ! କି ଦାରୁଣ ତୋର ଏ ବିଧି !

୨

ଉତ୍କଳଗଗନୁଁ          ଖସି ପଡ଼ିଲା ରେ
ଉଜ୍ଜ୍ୱଳ ଜ୍ୟୋତିଷ୍କ ସୁନ୍ଦର,
ଉତ୍କଳ ଗଳାର          ରତନମାଳାରୁ
ହଜିଲା ମାଣିକ୍ୟ ମଧୁର,
ଆହା ରେ ! ଉତ୍କଳନନ୍ଦନ-କାନନୁଁ
ପୂଜା-ପାରିଜାତ          ଝଡ଼ିଲା, ନିଭିଲା
ରତ୍ନଦୀପ ବାଣୀଭୁବନୁଁ ।

୩

ଉତ୍କଳବାଣୀଙ୍କ          ବାଜେଣୀ ବୀଣାରୁ
ଝଡ଼ିଗଲା ତାର ସୁସ୍ୱର,
ଭାରତ-ମାନସେ          ଉତ୍କଳ ପଦ୍ମିନୀ
ହେଲେ ମଧୁହୀନା ନିକର,
ହେ ମଧୁ ! ମଧୁହୀନ ଏବେ ଜୀବନ,
ମଧୁହୀନ ହେଲା          କଟକ ନଗର,
ମଧୁହୀନ ବିଶ୍ୱଭୁବନ ।

୪

ଜଣକ ବିହୁନେ          କେତେ କେତେ ସ୍ଥାନ
ଶୂନ୍ୟ ହୋଇଗଲା ଏ ଦେଶେ ।
କେତେ କାଳ ଆହା          ଶୂନ୍ୟ ଥିବ ତାହା
ପୂର୍ତ୍ତି ତା କରିବ କିଏ ସେ !
ବିଭୁ ହେ, ବିଚିତ୍ର ତୁମ୍ଭର ବିଧାନ !

ତବ ଶୁଭ ଇଚ୍ଛା— ବଳେ ଯଥାକାଳେ
ପଠାଇଲ ସ୍ୱର୍ଗେଁ ଆହ୍ୱାନ ।

*

ତବ ବ୍ରହ୍ମନିଷ୍ଠ ଏକେଶ୍ୱରବାଦୀ
ନିରାକାର ବ୍ରହ୍ମୋପାସକ,
ବିଜ୍ଞାନ-ଭକ୍ତି ନି- ଧର୍ମ-ପ୍ରଚାରକ
ସମାଜର ସୁସଂସ୍କାରକ,
ଋଷି ହେ, ପୁରାଣ ବ୍ରହ୍ମତତ୍ତ୍ୱଦର୍ଶୀ,
ଉତ୍କଳର ବ୍ରାହ୍ମ- ନକ୍ଷତ୍ରମଣ୍ଡଳି—
ମଧ୍ୟେ ଶାରଦସୁକାଶଶୀ ।

୬

ପ୍ରାଚ୍ୟ ଜ୍ଞାନ ଭକ୍ତି ପ୍ରତୀଚ୍ୟ କର୍ମର
ଶୁଭ ସମାବେଶ ସୁନ୍ଦର,
ସୁକଠୋର ନ୍ୟାୟ ସୁକୋମଳ ଦୟା
ଶୁଭ ପରିଣୟେ ମଧୁର,
ଉଦାର ଅସଂକୀର୍ଣ୍ଣ ବିଶ୍ୱଜନୀନ
ନିଖିଳ ମାନବ- ମଣ୍ଡଳୀ ମଧ୍ୟରେ
ଅମ୍ଳାନ ପରଜ୍ଞାନବିଧାନ ।

୭

ଭକ୍ତିପ୍ରସ୍ରବଣ ଥିଲା ମହାପ୍ରାଣ,
ପବିତ୍ର ବ୍ରହ୍ମପୂଜାବେଳେ
ଦରଦରଧାରେ ପ୍ରେମାଶ୍ରୁ ପ୍ରବାହ
ବହଇ ଶୁଭ୍ର ଗଣ୍ଡସ୍ଥଳେ,
ଭକ୍ତ ହେ ! ଥିଲ ବ୍ରହ୍ମନିଷ୍ଠ ବୈରାଗୀ,
ନିର୍ଲିପ୍ତ ସଂସାରୀ ଦାତା ମିତାଚାରୀ
ଜନପ୍ରେମୀ ସ୍ୱାର୍ଥ-ତ୍ୟାଗୀ ।

୮

ପିତୃମାତୃଭକ୍ତ ସଂଯତଚରିତ
ସୋଦରସନ୍ତାନବତ୍ସଳ,
ବନ୍ଧୁଜନପ୍ରିୟ ପରଉପକାରୀ
ସ୍ୱଦେଶପ୍ରେମିକ ସରଳ,
ଗୁଣୀ ହେ, ଦାନ କରୁଥିଲ ଗୋପନେ,
କାହା ପ୍ରାଣେ କେବେ ନ ଦେଇଣ ବ୍ୟଥା
ତୋଷୁଥିଲ ମଧୁବଚନେ ।

୯

ଆଦର୍ଶ ଶିକ୍ଷକ ତେଜସ୍ୱୀ ନିର୍ଭୀକ
ସ୍ନେହଶୀଳ କୃପାକରୁଣ,
ବଜ୍ରଦୃଢ଼ହୃଦ କୁସୁମକୋମଳ
ଶ୍ରୀମକାନ୍ତ ମଧୁମିଳନ,
ଜ୍ଞାନୀ ହେ ! ଗଭୀର ପାଣ୍ଡିତ୍ୟ-ଆଧାର,
ସାହିତ୍ୟ ଗଣିତ ଭାଷା ଧର୍ମତତ୍ତ୍ୱ
ଥାଉ କେତେ ଜ୍ଞାନ-ଭଣ୍ଡାର !

୧୦

ଜ୍ଞାନବୁଦ୍ଧିବଳେ କ୍ରମଶଃ ଉଠିଲେ
ଶିକ୍ଷାଶୀର୍ଷସ୍ଥାନ ମଣ୍ଡିଲ,
ଜ୍ଞାନାର୍ଜନ-ତୃଷ୍ଣା- ସ୍ୱକର୍ତ୍ତବ୍ୟ-ନିଷ୍ଠା-
ଆଦର୍ଶ ଦେଖାଇ ଚାଲିଲ,
କର୍ମୀ ହେ, କରୁଣାକୋମଳ ଧୈର୍ଯ୍ୟରେ
ଜ୍ଞାନଚର୍ଚ୍ଚା-ସ୍ରୋତ କଲ ପ୍ରବାହିତ
ନିଖିଳ-ଉତ୍କଳ-ସଂସାରେ

୧୧

ବୀଣାପାଣି-ବର-     ପୁତ୍ର ଭକ୍ତ କବି
ପବିତ୍ର ଗମ୍ଭୀର ରଚନା
ଉତ୍କଳୀୟ ଛନ୍ଦେ     ପ୍ରବନ୍ଧ ସଙ୍ଗୀତେ
କଲ୍ପ ନବଯୁଗ ସୂଚନା,
କବି ହେ, ତପସ୍ୱିନୀ ସମ କଳ୍ପନା
ସରଳ ପବିତ୍ର     ସଂଯତ ସାହିତ୍ୟ
କଲ ବାଣୀ-ଅର୍ଘ୍ୟ ରଚନା ।

୧୨

ଉତ୍କଳର ଗ୍ରାମେ     ଗ୍ରାମେ ତବ ନାମ
ଘୋଷିତ ହୁଅଇ ହେ କବି,
ପ୍ରତି ବିଦ୍ୟାଳୟେ     କୋମଳ ହୃଦୟେ
ରଞ୍ଜିତ ତବ ଜ୍ଞାନରବି,
ଗୁରୁ ହେ, ସାହିତ୍ୟକ୍ଷେତ୍ରେ ମହାରଥୀ,
ତବ ସମ ସୁତ     ଅଙ୍କେ ଧରିଛି ନା
ମାତୃଭୂମି ସେ ପୁତ୍ରବତୀ !

୧୩

ରାଧାନାଥ ସଙ୍ଗେ     ହେ ମଧୁସୂଦନ,
ଚିରସଖ୍ୟ ଚିରମିଳନ
ଯୌବନେ ବାର୍ଦ୍ଧକ୍ୟ     ଗୃହେ କର୍ମକ୍ଷେତ୍ରେ
ଯେସନ ନର ନାରାୟଣ,
ପ୍ରାଣାନ୍ତେ ଏକଇ ବେନିଙ୍କ ସମାଧି,
ବେନିଏ ଏକଇ     ଲଭିଲ ବିରାମ
ଏକଇ କର୍ମଯୋଗ ସାଧି ।

୧୪

କେତେଥର କେତେ ମୃତ୍ୟୁଶଯ୍ୟାପାଶେ
କରୁଥିଲ ବନ୍ଧୁ ପ୍ରାର୍ଥନା,
ପ୍ରାଣସ୍ପର୍ଶୀ ବାଣୀ ଲଭୁଥିଲେ ଶୁଣି
ମୁମୂର୍ଷ ଅଭୟ ସାନ୍ତ୍ୱନା,
ବିଶ୍ୱାସୀ ! ଅଭୟ ବ୍ରହ୍ମପାଦପଦ୍ମେ
ସାରା ଜୀବନର ସଞ୍ଚିତ ପୁଣ୍ୟରେ
ଆଶ୍ରୟ ଲଭ ଦିବ୍ୟ ସଦ୍ମେ ।

୧୫

ଭବପରପାରେ ବ୍ରହ୍ମର୍ଷିମଣ୍ଡଳେ
ପାଇ ସ୍ନେହପ୍ରେମାଲିଙ୍ଗନ,
ଦିବ୍ୟଧାମେ ଦେବ, ସୁରସ୍ରଷ୍ଟା ମଧ୍ୟେ
ପାଇଅଛ ଦିବ୍ୟ ଆସନ,
ଦେବ ହେ ! ପବିତ୍ର ମଧୁର ଜୀବନ
ନିଖିଳ ଉତ୍କଳ ମାନବମଣ୍ଡଳ
କରୁଁ ସର୍ବେ ଅନୁକରଣ ।

୧୬

ସେ ସୁନ୍ଦର ମୂର୍ତ୍ତି ସେ ସୌମ୍ୟବଦନ
ମଧୁର କୋମଳ ବଚନ
ସହାନୁଭୂତିରେ ସଦା ପୂର୍ଣ୍ଣ ପ୍ରାଣ
ନ କରି ପାରେଁ ବିସ୍ମରଣ,
ହେ ଦେବ ! ନ ଦେଇ ପାରିବ ବିଦାୟ,
ସମ୍ପଦେ ବିପଦେ ସ୍ମରେ ତବ ପଦେ
ହୁଅ ହେ ମୋ ଚିର ସହାୟ ।

୧୭

ହେ ବରେଣ୍ୟ ଦେବ, ଶ୍ରୀଚରଣେ ତବ
ହୁଏଁ ମୁଁ ଭୂମିଷ୍ଠ ପ୍ରଣତ,
ଯାବତ ଜୀବନ ଆଦର୍ଶ ସ୍ୱରୂପେ
ବିରାଜ ମୋ ପ୍ରାଣେ ସତତ,
ହେ ଦେବ, ଉତ୍କଳର ଇତିହାସରେ
'ଶ୍ରୀମଧୁସୂଦନ ଭକ୍ତକବି' ନାମ
ରହିଲା ସୁବର୍ଣ୍ଣ ଅକ୍ଷରେ ।

"ନନ୍ଦକିଶୋର"

( ୩ )

ଉତ୍କଳର ପ୍ରିୟପୁତ୍ର ହେ ମଧୁସୂଦନ,
ମର ତନୁ ତେଜି ଗଲ ଅମରଭୁବନ ।
ରୋଗଯନ୍ତ୍ରଣାରେ ଲବେ ନ ହୋଇ କାତର
ସାଧୁଥିଲ ଉତ୍କଳର ହିତ ନିରନ୍ତର ।
ଭ୍ରମାଇ ଉତ୍କଳେ ମନ ଅପଧନ ଧ୍ୟାନ
ଉତ୍କଳର ଘରେ ଘରେ ବାଣ୍ଟିଅଛ ଜ୍ଞାନ ।
ଉତ୍କଳର ଦୁଃଖଭରେ ନ ହୋଇ ଅଧୀର,
ଅସ୍ଥି ସାର ଅବୟବ ହୋଇଥିଲ ବୀର ।
ଶରୀରବଳରୁ ଜ୍ଞାନବଳର ଉତ୍କର୍ଷ
ପ୍ରଦର୍ଶନପାଇଁ ଥିଲ ଉତ୍ତମ ଆଦର୍ଶ ।
ନିଜର ପ୍ରତିଭାଦୀପ ଜାଳିଲ ଉତ୍କଳେ
ଢାଳିଲ ଅନେକ ଧନ ବିବିଧ କୌଶଳେ ।
ଜନମିଲେ ଜନେ ଅଛି ଅବଶ୍ୟ ମରଣ,
ଅମର ସେ ଯାକୁ ଲୋକେ କରନ୍ତି ସ୍ମରଣ ।

କେତେ ଲୋକ ଦେଖିଛନ୍ତି ତୁମ୍ଭର ଶରୀର,
ନାମ ତୁମ୍ଭ ସଙ୍ଖ୍ୟାତୀତ ହୃଦେ ଚିର ସ୍ଥିର ।
ଏ ସମସ୍ତ କଥା ଜାଣୁଥିଲେହେଁ ହୃଦୟ
ଦୁଃଖଭରେ ଆଜ ହୋଇ ଯାଉଛି ଅଥୟ ।
ଦେଖୁ ତ ନ ଥିଲୁ ତୁମ୍ଭ ପବିତ୍ର ମୂରତି,
କିପାଁ ଦୁଃଖେ ହୃଦ ମୋର ହୋଉଛି କାତର ।
ଗୃହଘରେ ଶୁଭୁଅଛି ହାହାକାର ରବ,
ଉତ୍କଳର ଗୃହମୁଖ ଦିଶୁଛି ନିଷ୍ପ୍ରଭ ।
ଲକ୍ଷ ଲକ୍ଷ ଲୋକ ଅଜ୍ଞ ବହୁଦୂରେ ଥାଇ
ନେହକାର ହେଜୁଛନ୍ତି ତୁମ୍ଭ ଗୁଣ ଗାଇ ।
ବାଳକବାଳିକାବୃଦ୍ଧ ହୃଦେ ଦୁଃଖ ପୋଷି
କାନ୍ଦୁଛନ୍ତି ବିଦ୍ୟାଳୟେ ତୁମ୍ଭ ଗୁଣ ଘୋଷି ।
ଗ୍ରାମେ ଗ୍ରାମେ ଶୋକରବେ ଶିକ୍ଷକ ସକଳ
ଗାଉଛନ୍ତି ଗୁଣ କରି ଜୀବନ ବିକଳ ।
ସମ୍ବାଦପତ୍ର ଶୋକ କରୁଛି ପ୍ରଚୁର
ସୁଗୁରୁସମ୍ମିଳନାଦେ ବନ୍ଧୁ ଦୁଃଖଭର ।
ପ୍ରିୟ ସୁହୃଦ୍‌ବର ତୁମ୍ଭେ ରାଧାନାଥଙ୍କର,
ମଣୁଥିଲ ତାଙ୍କ ପାଖ ଅତି ସୁଖକର !
ସ୍ୱରଗେ ଲଭିବାପାଇଁ ସେହି ବନ୍ଧୁବର
ସତ୍ୱର ତେଜିଲ ପରା ମର କଳେବର ?
ତୁମ୍ଭପାଇଁ ଫିଟିଅଛି ସ୍ୱର୍ଗର କବାଟ,
ସରଳ ସୁଗମ ହୋଇଅଛି ପୁଣି ବାଟ ।
କବିତା ସକଳ ତୁମ୍ଭ ଦେବକନ୍ୟାବେଶେ
ଘେନିଯିବେ ସମାଦର କରି ସ୍ୱର୍ଗଦେଶେ ।
ଦେଇଛ ତାହାଙ୍କୁ କବି ଯେତେ ଅଳଙ୍କାର,
ସେ ଭୂଷା ଜ୍ୟୋତିରେ ନିଶ୍ଚେ ହେବ ଚମତ୍କାର ।

ଦେଇଅଛ ଜଗତକୁ ଯେତେ ଉପଦେଶ,
ସେ ସବୁ ଧରିବେ ତହିଁ ବିଦ୍ୟାଧର ବେଶ ।
କରିବାକୁ ତବ ଚିତ୍ତ ପ୍ରୀତି ଅକର୍ଷଣ
ନନ୍ଦନ-କୁସୁମ ଶିରେ କରିବେ ବର୍ଷଣ ।
ନିଜେ ସୁରପତି ଆସି ଧରି ତୁମ୍ଭ ହାତ
ବସାଇବେ ତହିଁ ଯହିଁ ଥିବେ ସୁଧାନାଥ ।
ଜ୍ୟୋତିର୍ମୟ ରୂପ ଧରି ଗଗନମଣ୍ଡଳେ
ବିତରଣ କରୁଥିବ ଜ୍ୟୋତି ଏ ଉତ୍କଳେ ।

ଶ୍ରୀ ଗଙ୍ଗାଧର ମେହେର ।

---

( ୪ )

କେତେ ତପସ୍ୟାର ଫଳେ ଉତ୍କଳଜନନୀ
ଲଭିଥିଲେ ଏକମାତ୍ର ପୁତ୍ର ଗୁଣମଣି ।
ଉତ୍କଳରେ ଯାହା ନାମ ଖ୍ୟାତ ଗ୍ରାମେ ଗ୍ରାମେ,
ସେ ମଧୁସୂଦନ ବର୍ତ୍ତମାନ ସ୍ୱର୍ଗଧାମେ ।
ଚାଳିଶ ବରଷ କାଳ ତାହାଙ୍କୁ ମୁଁ ଜାଣେ,
କରିଛି କଷ୍ଟିତ ଗୁଣ ଅନୁଭବ ପ୍ରାଣେ ।
ଧନେ ହେଲେ ମଧୁ କହୁ ନାହିଁ ମିଥ୍ୟା କଥା,
କେତେବେଳେ କାହା ମନେ ଦେଇ ନାହିଁ ବ୍ୟଥା ।
ପର ଉପକାର ପାଇଁ ସତ୍ୟହିଁ ଜୀବନ—
ବାକ୍ୟର ଦୃଷ୍ଟାନ୍ତ ତହିଁ ଶ୍ରୀମଧୁସୂଦନ ।
ନ୍ୟାୟର କାଠିନ୍ୟ ପ୍ରେମ ସ୍ନିଗ୍ଧ ମଧୁରିମା—
ସାରଲ୍ୟ ସୌଜନ୍ୟ ଲଭିଥିଲେ ଶେଷ ସୀମା ।
ଉତ୍କଳଆକାଶେ ପୂର୍ଣ୍ଣଚନ୍ଦ୍ର ଥିଲା ଉଇଁ,
କଳଙ୍କକାଳିମା ତାକୁ ନ ଥିଲା ତ ଛୁଇଁ ।

ଏକପତ୍ନୀବ୍ରତେ କର୍ମୀ ସନ୍ତାନବାତ୍ସଲ୍ୟେ,
ସର୍ବତ୍ୟାଗୀ ହେବା ପର ଉପକାର ସ୍ଥଳେ,
ପ୍ରଗାଢ଼ ଶାସ୍ତ୍ରୀୟ ଜ୍ଞାନେ ପରସେବା ବ୍ରତେ,
ଦେଶ ଉପକାରେ ଲାଗି ହେବା ସନ୍ତତେ,
ଏକାନ୍ତ ଈଶ୍ୱରନିଷ୍ଠା ଧର୍ମ ଆଚରଣେ,
ସେ ମଧୁ ସମାନ ଆଉ ଦେଖି ନାହିଁ ଜଣେ ।

ଶରୀର ଗଠିତ ସତ୍ୟ ମାନବ ଆକାରେ,
ସମସ୍ତ ଦେବତା ଧର୍ମ ଥିଲା ତାହାଠାରେ ।
ଯାବତଜୀବନବ୍ୟାପୀ ଅର୍ଥ ଉପାର୍ଜନ
ପରହିତବ୍ରତେ କରିଛନ୍ତି ସମର୍ପଣ ।
ଅତିଥିସେବାରେ ମଧୁବଂଶ ପ୍ରତି ଜଣେ
ଆନନ୍ଦରେ ଯତ୍ନ କରିଥାନ୍ତି ପ୍ରାଣପଣେ ।

ମଧୁ ଧର୍ମପତ୍ନୀ ପତିପରାୟଣା ସତୀ,
ଦେବପୁତ୍ରକନ୍ୟା ତୁଲ୍ୟ ସନ୍ତାନ ସନ୍ତତି ।
ଉତ୍କଳେ ସମସ୍ତ ବ୍ରାହ୍ମସମାଜ ମଧ୍ୟରେ
ସେ ମଧୁସୂଦନ ଥିଲେ କେନ୍ଦ୍ର ସ୍ୱରୂପରେ ।

ମଧୁର ଆବାସ ଗୃହ ମହର୍ଷି ଆଶ୍ରମ,
ପ୍ରକୃତରେ ଥିଲେ ମଧୁ ମହାଋଷିସମ ।
ଜନ୍ମିବେ ଉତ୍କଳେ ସାଧୁ ଦମ୍ଭାଳୁ ବିଦ୍ୱାନ,
ପରସେବାବ୍ରତୀ ଦାତା ଧାର୍ମିକପ୍ରଧାନ ।

ସର୍ବ ସାଧୁଗୁଣ ସମାବେଶ ଏକାଧାରେ
କଦାଚିତ ଜଗତରେ ଆସେ ଦେଖିବାରେ ।
ମଧୁର ସ୍ୱଭାବ ଯେତେକ କବିର କଳ୍ପନା,
ଅଭିନବ ମାନବ ଲୋକେ ଦେବାକୁ ତୁଳନା।

ଉତ୍କଳର ଇତିହାସେ ସୁବର୍ଣ୍ଣ ଅକ୍ଷରେ
ଜ୍ୱଳିତ ରହିବ ମଧୁ ନାମ ନକ୍ଷତ୍ରରେ ।
ମଧୁ ସ୍ଥାନ ପୂର୍ଣ୍ଣ ହେବା କେବେ ସମ୍ଭାବନା—
କେତେ ଯୁଗ ଯୁଗାନ୍ତରେ ଈଶ୍ୱରଙ୍କୁ ଜଣା ।
ଦରିଦ୍ର ଉତ୍କଳ ଭାଷା ମଧୁଠାରେ ଋଣୀ,
ଏକ କଥା, ଥିଲେ ମଧୁ ସର୍ବ ଗୁଣେ ଗୁଣୀ ।
ମୋହର ହୃଦୟବନ୍ଧୁ ଶ୍ରୀ ମଧୁସୂଦନ,
ତାହା ବିନା ମତେ ଏବେ ଅସାର ଜୀବନ ।
ଦୟାମୟ ଜଗଦୀଶ ହେ ଭୂତଭାବନ !
ମଧୁ ପରିବାରେ ଶାନ୍ତି କରନ୍ତୁ ସ୍ଥାପନ ।

ଶ୍ରୀ ଫକୀରମୋହନ ସେନାପତି ।



( ୫ )

ଦେଶସାଧୁସୁତ ମଧୁସୂଦନ,
ମାତୃଭାଷାପ୍ରିୟ କୁଳ-ନନ୍ଦନ,
ଧର୍ମପ୍ରାଣ ଧୀର ଉଦାରମତି,
ସତ୍ୟ-ଉପାସକ ନିର୍ଭୀକ ଯତି,
ସତେ ଅହା ଗଲ ଚଳି !
ତୁମ୍ଭ ବିନା ଅହେ ଉତ୍କଳଚନ୍ଦ୍ରମା,
ସ୍ୱଦେଶ ଦିଶୁଛି ଖାଲି ।

କେଉଁ ଶୁଭଯୋଗେ ଲଭି ଜନମ
ସାଧିଲ ଜୀବନେ ପୁଣ୍ୟ କରମ !
ସତ୍ୟ ନ୍ୟାୟ ସାମ୍ୟ ମୈତ୍ରୀ ପ୍ରଚୁର
କରିଛ ଜୀବନ ନିତ୍ୟ ଅଙ୍କୁର,

ସେ କଥା ନିତ ସୁମରି
ତବ ନାମେ ଦେବ,          ଦେଉଥିବୁଁ ସବେ
ଭକତି-କୁସୁମାଞ୍ଜଳି ।

ନବ୍ୟ ପ୍ରାଚୀନରୁ ବାଛି ମଙ୍ଗଳ
ଧର୍ମଜୀବନର କଲ ସମ୍ବଳ;
ଗଙ୍ଗା ଯମୁନାର ପୁଣ୍ୟ ସଙ୍ଗମ
ପରି ରଞ୍ଜିଥିଲା ତୁମ୍ଭ ଜୀବନ;
ଶୁଭ ପଥ ଅନୁସରି
ଯହିଁ ଯାହା ଶିବ          ସୁନ୍ଦର ଲଭିଛ
ନେଇଛ ହୃଦୟ ଭରି ।

କେତେ ପୁଣ୍ୟେ ଥିଲ ଜୀବନ ସାଜି
ନିତି ନିତି ଧର୍ମଜୀବନ ମାଜି !
ଭୀମ କାନ୍ତ ନାନା ଗୁଣନିଚୟେ
ଯୋଗ୍ୟ ମଣି ନେଇଥିଲେ ଆଶ୍ରୟ !
ଯାଇଛି ପାଶେ ଯେ ଥରେ,
ଦେଖିଛି ନୟନେ          ଗାମ୍ଭୀର୍ଯ୍ୟ ମାଧୁର୍ଯ୍ୟ
ମିଳନେ କି ଫଳ ଫଳେ !

ଅନ୍ୟାୟେ ଅସତ୍ୟେ ଭୀମ ପ୍ରବଳ,
ଉପାସନା ବେଳେ ଶିଶୁ ସରଳ,
ବିପନ୍ନ ଉଦ୍ଧାରେ ସଦା ଜାଗ୍ରତ,
ଜୀବନର ପଦେ ପଦେ ସଂଯତ,
ଅତିଥିସେବାତତ୍ପର,
ସର୍ବାମେଳସୁଖ—          ସତତପ୍ରୟାସୀ,
ଆଦର୍ଶ ପିତା ସୋଦର ।

ଶିକ୍ଷାବିଭାଗର ଅମୂଲ୍ୟ ମଣି,
ବିଦ୍ୟା ବିନସ୍ତୁର ଅନନ୍ତ ଖଣି,
ନୀତିପ୍ରସ୍ତୁବକ, ନୀତିପାଳକ,
ନୀତିପଥଭ୍ରଷ୍ଟ ଜନରକ୍ଷକ,
ଗ୍ରାମେ ଗ୍ରାମଗୁରୁ ମୁଖେ
ତୁମ୍ଭ ସଦାଗୁର          ଘୋଷା ହେଉଥିବ
କାଳେ କାଳେ ମହାସୁଖେ ।

ଉତ୍କଳଭାରତୀସେବକ କବି,
ସାହିତ୍ୟସୁନୀତି-ପ୍ରଚାର-ରବି,
ସୁନ୍ଦର କବିତା ସନ୍ଦର୍ଭ ଦାନେ
ଧନ୍ୟ କରିଅଛ ଦେଶସନ୍ତାନେ,
କି ମଧୁର ପଦାବଳୀ
ବାଳ ବୃଦ୍ଧ ଯୁବା          ଏକାଧାରେ ସର୍ବେ
ଲଭିବାକୁ କୁତୂହଳୀ !

ସୁନୀତି ସଦ୍‌ଭାବ ସାହିତ୍ୟ ବିଞ୍ଚି
ସ୍ୱଦେଶେ ସୌଭାଗ୍ୟ ଦେଇଛ ସିଞ୍ଚି;
ସମୟେ ସୁକର ଫଳିବ ଫଳ ,
ସ୍ୱଦେଶସାହିତ୍ୟ ହେବ ସବଳ;
ସେକାଳେ ତୁମ୍ଭର ନାମେ
ଦୂରଦର୍ଶିରୂପେ          ସମର୍ପିବେ ଦେବ,
ଅଞ୍ଜଳି ଦେଶସନ୍ତାନେ ।

ଛନ୍ଦବନ୍ଧା 'ଛନ୍ଦମାଳା' ତୁମ୍ଭର
ଅପୂର୍ବ ସଙ୍ଗୀତ ତାନଲହରୀ,

ସରଳ ମଧୁର ଭବ୍ୟରଚନ,
କାଳେ କାଳେ ଶିଶୁକଣ୍ଠଭୂଷଣ
ରହିଥିବ ଏ ଉତ୍କଳେ;
ଝଙ୍କୃତ ସଙ୍ଗେ ଝଙ୍କୃତ ଗୀତ
ଚିରପ୍ରିୟ ଶିଶୁଦଳେ ।

'ଜୀବନଚିନ୍ତା'ର ବୈରାଗ୍ୟ ଛବି,
ଚିରସତ୍ୟରୂପେ ରହିବ କବି,
କେତେ ଭ୍ରାନ୍ତ କଣ୍ଠେ କହିବ କଥା,
ସୁପଥେ ଆଣିବ ଉଦ୍ଭ୍ରାନ୍ତ ମଥା;
ତବ ଜୀବନର ଛାୟା
ପଡ଼ିଅଛି ଯହିଁ ସେଥିରୁ କି କେବେ
ଛାଡ଼ିବ ସ୍ୱଦେଶମାୟା !

'ଯୁଗ ଅଭିଷେକ' 'ଆଶା' ବନ୍ଦନା
କରିବାରେ ଅଛି କାର ସାଧନା !
'ପତିତା'ର ଦୁଃଖେ କାତର ହୋଇ
ଢାଳିବ କେ ଅଶ୍ରୁ ନୟନ ଧୋଇ !
ସହିଲ ସେ ସବୁ ଆଜି,
ଭୁଲିଗଲ ଋଷି, 'ଦେବାବତରଣ'
ଦେଶସ୍ୱପ୍ନ ଗଲା ଭାଜି ।

ଏହି ଶୀତ ଅନ୍ତେ ଆସେ ବସନ୍ତ
ସୌରଭେ ଭରିବ ଦିଗ-ଦିଗନ୍ତ,
"ସୌନ୍ଦର୍ଯ୍ୟତରଙ୍ଗେ ଭାସିବ ମହୀ,
ଭୁବନ ଆନନ୍ଦ ଜୋଡ଼ିବ କହି",

କିଏ ବସ ଶୋଭା ନିରେଖି
ବାହାରର ମଧୁ    ଅନ୍ତରେ ଲୋଡ଼ିବ
'ବସନ୍ତ ଭାବନା' ଲେଖି ?

ରାମବନବାସେ ରାଣୀବିୟୋଗେ
ଶ୍ରୀରାମ ସୂତ୍ରଳ ବୈଦେହୀ ଖେଦେ
ତାନ ମାନ ଧରି ରାଗିଣୀ ବାନ୍ଧି
ତୁମ୍ଭ ପରି କିଏ ଜାଣଇ କାନ୍ଦି ?
ବିଶ୍ୱକଣ୍ଠେ କଣ୍ଠ ଦେଇ
ସବୁବେଳେ ହୃଦ    ସଙ୍ଗୀତ ଧରିଛ
ତୁଚ୍ଛ ସ୍ୱାର୍ଥ ଭୁଲି ଯାଇ ।!

ସଂସାରର 'ଶୋଭା' ସଂସାର 'ଧ୍ୱନି'
ଥିଲି ତୁମ୍ଭ ପ୍ରତି ଅମୃତଖଣି,
ନିଜେ ଦେଖି ଶୁଣି ଜଗତେ ଗାଇ
ଶୋଭାର ସଂସାର ଦେଲ ଦେଖାଇ;
ତେଜି ଏବେ ଭବଖେଳ
'ଅନାଦି ପରମ    ଧ୍ୱନି' ଅନୁସରି
କାହିଁ ଖେଳ ପ୍ରେମଖେଳ ?

ନ ଥିଲା ଜୀବନେ ଭୋଗବାସନା,
ସଦା ଶାଶ୍ୱତରେ ଥିଲା ସାଧନା,
ନିର୍ମଳ ପବିତ୍ର ସାଧୁ ଜୀବନେ
ଧାତାଙ୍କର ଦେଖୁଥିଲ ନୟନେ,
ହେ ସବୁର ଗୁରୁ ଆସି
ସ୍ୱଦେଶସାହିତ୍ୟେ    ଫୁଟାଇଛ ଦେବ,
ଶୁଭ୍ର ପାରିଜାତରାଶି ।

ଶୁଭ୍ର ପାରିଜାତ ସ୍ୱର୍ଗର ଫୁଲ,
ଏ ମର୍ତ୍ତ୍ୟମଣ୍ଡଳେ କାହିଁ ତା ତୁଲ ?
କି ରୂପବିଭବେ କିବା ସୌରଭେ
ତବଦାନ ତୁଲ୍ୟ ହେବ ଗରବେ;
ଯାଉ ଯେତେ ଧନ ବହି,
ତବ ପୁଣ୍ୟବାଣୀ—     ମଧୁଦାନ ଜୟ
ଗାଇବ ଉତ୍କଳମହୀ ।

'ମଧୁ ଜନ୍ମତିଥି' ମଧୁ ପଞ୍ଚମୀ
କାଲି ତ ଆସିବ ଏହି ଧରଣୀ,
ସାହିତ୍ୟକନ୍ଦଳେ ନିଜ ଭବନେ
ଫୁଲ କର କିଏ ଆନନ୍ଦ ମନେ
ହେ ବିନମ୍ରଅବତାର,
ବଚନେ ଭୋଜନେ     ତୋଷି ନାନାମତେ
ଲଭିବ ସୁଖ ଅପାର ?

ଭକ୍ତି ପବିତ୍ରତା ପୁଣ୍ୟର ଜୟ
କେ ଲେଖିବ ବହି ଭରି ହୃଦୟ !
ନୀତିଧର୍ମସଙ୍ଗେ ସାହିତ୍ୟ ରଞ୍ଜି
ତୁମ୍ଭ ପରି କିଏ ଜାଣଇ ଖଞ୍ଜି !
ଚାଲିଗଲ ଉତ୍କଳବର !
ନିତ ନବରୂପେ     କେ ଆଉ ଗଢିବ
ସାହିତ୍ୟେ ସ୍ୱର୍ଗର ଛବି !

ଚାଲିଗଲ ଋଷି କବି ପଣ୍ଡିତ,
ଭାବିବ କେ ବସି ସାହିତ୍ୟହିତ ?

'ସାହିତ୍ୟସମାଜେ' ନବଜୀବନ
ଆଣିବାକୁ କଏ କଟି ଯତନ
ହୋଇବ ବ୍ୟାକୁଳମତି ?
ତୁମ୍ଭ ସଙ୍ଗେ ଦେବ, ଦରିଦ୍ର ସାହିତ୍ୟ
ହସାଇଲା ଦଳପତି !

ଆଉ ସ୍ୱାର୍ଥଚିନ୍ତା କ୍ଷୁଦ୍ର ଗଣନା,
ଦୂରେ ଅଛ ଏବେ ହେ ମହାମନା,
ନର ସଂସାରର ମଳିନ ଧୂଳି
ନ ଦେବି ମୁଁ ତବ ଶ୍ରୀଅଙ୍ଗେ ବୋଳି;
କ୍ଷୁଦ୍ର ଆତ୍ମତୃପ୍ତି ପାଇଁ
ସ୍ୱାର୍ଥାନ୍ଧ ସଂସାର ସମ୍ବାଦ ଦେବାକୁ
ମନ ମୋର ବଳୁ ନାହିଁ ।

ସାଧୁଭକ୍ତ ପରି ସଂସାରେ ରହି
ସଂସାରତାପରେ ନ ହୋଇ ଦହି
ପଦ ଭବେ, ଊର୍ଦ୍ଧ୍ୱେ ରଖି ନୟନ
ଲଭୁଥିଲ ନିତି ସତ୍ୟଦର୍ଶନ;
ହସି ହସି ଗଲ ଚାଲି,
ତୁମ୍ଭରି ଅନ୍ତିମ ଶୟନର ଚିହ୍ନ
ସବୁଦିନେ ଥିବୁଁ ଭୁଲି ।

ସଂସାରକୁ ଆସି ସଂସାର କର୍ମ
ପୁଣ୍ୟଭାବେ ସାରି ମଣିଲ ଧର୍ମ;
ସଂସାର ମଙ୍ଗଳେ ନିଜ ମଙ୍ଗଳ
ବୁଝି ନରଜନ୍ମ କଲ ସଫଳ;

ଧନ୍ୟ ଧନ୍ୟ ତୁମ୍ଭେ ଭବେ !
ତୁମ୍ଭ ପରି ସାଧୁ କୋଟିକେ ଗୋଟିଏ
ସ୍ୱଦେଶକୋଳେ ଜନ୍ମିବେ !

ଛାଡ଼ି ଏବେ ଏହି ମର୍ତ୍ତ୍ୟଧରଣୀ
ଧରିଲଣି ଦେବପୁରସରଣୀ,
ଦେବଦତ୍ତଙ୍କ ବସି ଦେବଗହଣେ
ଭୋଗୁଛ ଅନନ୍ତ ସୁଖ ଜୀବନେ;
ସେ ସୁଖେ ରହି ତନ୍ମୟ,
ଭବେ ଭୋଗ ତେଜି ଯୋଗ ଅଚରିଛ
ସ୍ୱର୍ଗ ହୋଇ ସୁଖମୟ ।

ଯୋଗୀ ଋଷି କବି ଯେ ଯେତେ ବସି
ଯାପୁଛନ୍ତି ଦିନ ଆନନ୍ଦେ ହସି,
ସେହି ପୁଣ୍ୟମୟ ଚିନ୍ମୟଧାମେ
ଚିରଶାନ୍ତି ଏବେ ଲଭ ହେ ପ୍ରାଣେ,
ଗାଅ ସଙ୍ଗୀତ ଉଦାର,
ସ୍ୱର୍ଗପୁରୁ ଆସି ସେ ପୁଣ୍ୟ ସଙ୍ଗୀତ
ପରଶୁ ନର ସଂସାର ।

ସ୍ୱଦେଶ ଶ୍ରବଣେ ସେ ଗୀତ ଲାଗି
ଜାଗନ୍ତୁ ବିବେକ ଜ୍ଞାନ ହେ ଜାଗ,
ଯାଉ ଦୂରେ ଭ୍ରମ ଭ୍ରାନ୍ତି ବିଷାଦ,
ଆସୁ ଦେଶପ୍ରାଣେ ସ୍ୱର୍ଗପ୍ରସାଦ,
ଯାଉ ସବୁ ମୋହମାୟା,
ସ୍ୱଦେଶଜୀବନେ ବେଗେ ପଡ଼ୁ ଆସୁ
ତବ ପୁଣ୍ୟପ୍ରାଣ ଛାୟା ।

ସତ୍ୟ ଶୁଭପଥେ ସ୍ୱଦେଶ ଜନେ
ଅଶୋକ ଅଭଙ୍ଗ ମନ୍ତ୍ର ଜୀବନେ
ଯି ଜୀବନର ପୁଣ୍ୟ ପ୍ରବାହେ
ଭସି ଭସି ନିତ ନବ ଉତ୍ସାହେ
ଯାଅନ୍ତୁ ମହାମଙ୍ଗଳ,
ବିଶ୍ୱ-ବିଧାତାଙ୍କ ଶୁଭ ଅଶୀର୍ବାଦ
ହେଉ ଉତ୍କଳେ ସଫଳ ।

ଶ୍ରୀ ପଦ୍ମଚରଣ ପଟ୍ଟନାୟକ ।




Printed by V. Ker, U. S. Press, Cuttack.